ଅନ୍ତର୍ଭାରତୀୟ ପୁସ୍ତକମାଳା

# ବାମାଚରଣ ଗଳ୍ପ ସମ୍ଭାର

ସଂପାଦକ

ଶତ୍ରୁଘ୍ନ ପାଣ୍ଡବ




ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ପ୍ରଚ୍ଛଦ: ପରେଶ ଚୌଧୁରୀଙ୍କ ଚିତ୍ର ଉପରେ ଆଧାରିତ ।

ISBN 81-237-2537-X

1998 (ଶକାବ୍ଦ 1920)



Bamacharana Galpa Sambhara *(Oriya)*

ଟ. 55.00

ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ,
ଏ-5, ଗ୍ରୀନ୍ ପାର୍କ, ନୂଆଦିଲ୍ଲୀ-110 016 କର୍ତ୍ତୃକ ପ୍ରକାଶିତ ।

# ସୂଚୀପତ୍ର

# ଭୂମିକା

ବାମାଚରଣ ଗଳ୍ପ ସମ୍ଭାର ବିଶିଷ୍ଟ ଗାଳ୍ପିକ ବାମାଚରଣ ମିତ୍ର (1915-1975)ଙ୍କ ନିର୍ବାଚିତ ଗଳ୍ପଗୁଡ଼ିକର ସମାହାର । ଜଣେ ଗଭୀର ମନନଧର୍ମୀ ଓ ଜୀବନ-ସ୍ପୃହାଗି ସ୍ରଷ୍ଟା ଭାବେ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଗଳ୍ପ ସାହିତ୍ୟକୁ ବାମାଚରଣ ମିତ୍ରଙ୍କ ଅବଦାନ ଏକାନ୍ତ ଉଲ୍ଲେଖନୀୟ । ସ୍ୱକୀୟ ଗଳ୍ପଧାରାର ଉତ୍ତରଣ କାଳରେ ତାଙ୍କର ଦେହାନ୍ତ ଓଡ଼ିଆ ସାହିତ୍ୟ ପାଇଁ ଥିଲା ଏକ ବେଦନାପ୍ରଦ ଦୁଃସଂବାଦ । ଅନ୍ୟୂନ ଚଉଠ ଶତକର ନିରଳସ ସାଧନାରେ ସେ ଓଡ଼ିଆ ଗଳ୍ପ ଜଗତକୁ ଅପୂର୍ବ ବିଷୟ ବିନ୍ୟାସ, ରସବନ୍ତ ବିଦଗ୍ଧ ଶୈଳୀ ଓ ମହତ୍ତମ ଭାବ-ବିଭୂତିରେ ସମୃଦ୍ଧ କରିଯାଇଛନ୍ତି । ପ୍ରଖର ହୃଦୟବତ୍ତା ଓ ସୂକ୍ଷ୍ମ ମାର୍ମିକ ଆବେଦନରେ ରସାପ୍ଲୁତ ବାମାଚରଣଙ୍କ ଗଳ୍ପ ସକଳ ପାଠକ ପ୍ରାଣରେ ଆନନ୍ଦ ବିଷାଦର ରସଘନ ଅଭିବ୍ୟକ୍ତି ଦେବା ସଂଗେ ସଂଗେ ତା'ର ଅନ୍ତର୍ଜଗତକୁ ତତ୍ତ୍ୱ, ଦର୍ଶନ ଓ ମାନବିକ କରୁଣାରେ ସିକ୍ତ କରିଥାନ୍ତି । ଗଭୀର ଏକ ଆତ୍ମୀୟତାବୋଧ ନେଇ ତାହା ବ୍ୟକ୍ତି ଓ ବିଶ୍ୱକୁ ଯୋଡ଼ିଥାଏ । ତାଙ୍କ ଗଳ୍ପଗୁଡ଼ିକରେ କେବଳ ବ୍ୟକ୍ତିର ଅସହାୟତା, ତୃଷ୍ଣା ଓ ଅବିମୃଶ୍ୟକାରିତାର ସ୍ୱରୂପ ପ୍ରଦର୍ଶିତ ହୋଇନାହିଁ; ବରଂ ଏଗୁଡ଼ିକ ଏକ ମାର୍ଜିତ ରୁଚି ଓ ବିଚାରବୋଧ ସହ ତା'ର ଆତ୍ମସତ୍ତାକୁ ଆଲୋକଦୀପ୍ତ ଓ ମହତ୍ତର କରିବାର ପ୍ରଚୋଦନା ଦେଇଥାନ୍ତି ।

ବ୍ୟକ୍ତିଗତ ଜୀବନରେ ଅତ୍ୟନ୍ତ ନିଷ୍କପଟ, ନୀତିନିଷ୍ଠ ଓ ସ୍ୱାଭିମାନୀ ବାମାଚରଣ ଉଚ୍ଚ ପ୍ରଶାସନିକ ପଦବୀରେ ଥାଇ ମଧ ଜୀବନ ସଂଗ୍ରାମରେ ନାନାବିଧ ସମସ୍ୟା ସଂକଟ ମଧ୍ୟରେ ଗତିକରିଥିଲେ । ଜୀବନର ଅନ୍ତିମ ପର୍ଯ୍ୟାୟରେ ରୋଗଗ୍ରସ୍ତ ହୋଇ ଶଯ୍ୟାଗତ ହେବା ସତ୍ତ୍ୱେ ବିଶ୍ୱ ସାହିତ୍ୟ, ଦର୍ଶନ ତଥା ଜ୍ଞାନବିଷୟକ ଅନୁସନ୍ଧିତ୍ସା ବାମାଚରଣଙ୍କ ସୁକୁମାର ଓ ଉନ୍ମୁଖପ୍ରବଣ ଶିଳ୍ପୀ ସତ୍ତାକୁ ଶେଷ ପର୍ଯ୍ୟନ୍ତ କର୍ମଚଞ୍ଚଳ ଓ ସୃଷ୍ଟିଶୀଳ କରି ରଖିଥିଲା । ଗାଳ୍ପିକଙ୍କ ସହ ଘନିଷ୍ଠ ଭାବେ ସଂପୃକ୍ତ ସହୃଦୟ ବନ୍ଧୁମାନଙ୍କର ସ୍ମୃତିଚାରଣରୁ ତାଙ୍କ ବ୍ୟକ୍ତିତ୍ୱର ଆକଳନ କରିବା ସମ୍ଭବ ହୁଏ । ବିଶିଷ୍ଟ ଗାଳ୍ପିକ ମହାପାତ୍ର ନୀଳମଣି ସାହୁଙ୍କ ଭାଷାରେ -"ତାଙ୍କ ଜ୍ଞାନର ପରିସର ଯେପରି ବ୍ୟାପକ ଥିଲା, ସେହିପରି ଥିଲା ଗଭୀର । ସବୁ ପ୍ରକାର ଜ୍ଞାନର ସେ ଅଧିକାରୀ ଥିଲେ । କ୍ରିକେଟ ଖେଳର ତଥ୍ୟଠାରୁ ଦ୍ୱନ୍ଦ୍ୱାତ୍ମକ ଜଡ଼ବାଦ ପର୍ଯ୍ୟନ୍ତ -କ୍ଲାସିକାଲ୍ ମ୍ୟୁଜିକ ଠାରୁ ଚୟନବୀଙ୍କ ଇତିହାସ ପର୍ଯ୍ୟନ୍ତ-ସରଭାନ୍ଟିସଙ୍କର 'ଡନ୍‌କୁଇକସେଡ'ଠାରୁ ଆରମ୍ଭ କରି ଶ୍ରୀଅରବିନ୍ଦଙ୍କ 'ଲାଇଫ୍ ଡିଭାଇନ୍' ପର୍ଯ୍ୟନ୍ତ ସବୁଥିରେ ସେ ସମାନ ଆଗ୍ରହ ସହ ପ୍ରବେଶ କରିଥିଲେ ।"(୵ ବାମାଚରଣ ମିତ୍ର ବିଶେଷାଙ୍କ - 'ଇସ୍ତାହାର' - ଜାନୁୟାରୀ - ମାର୍ଚ୍ଚ 1987) ଯୁବାବସ୍ଥାରେ ଜଣେ ବିଖ୍ୟାତ ଖେଳୁଆଡ଼ ଓ ସନ୍ତରଣକାରୀ ଥିଲେ ମଧ ପଚାଶବର୍ଷ ବୟସ ବେଳକୁ ତାଙ୍କର ସ୍ୱାସ୍ଥ୍ୟଗତ ଅବନତି ଘଟିଥିଲା ।

ଆମର ସାମାଜିକ, ସାଂସ୍କୃତିକ ଓ ଆଧାତ୍ମିକ ଉତ୍‌ଥାନ ନିମନ୍ତେ ମାର୍କସ, ଗାନ୍ଧୀ ଓ ବିବେକାନନ୍ଦଙ୍କ ଆଦର୍ଶ ଓ ଆଭିମୁଖ୍ୟ ପ୍ରତି ବାମାଚରଣ ଥିଲେ ଆସ୍ଥାଶୀଳ । ଚିନ୍ତା ଚେତନାରେ ସେ ଥିଲେ

ମହାଭାରତୀୟ ଏବଂ ବ୍ୟକ୍ତିଗତ ଜୀବନରେ ଏକ ବୈରାଗୀ ବୈଷ୍ଣବ । ବିଭିନ୍ନ ଧର୍ମ ପ୍ରତି ଥିଲା ତାଙ୍କର ଏକ ଉଦାର ଦୃଷ୍ଟିଭଙ୍ଗୀ ଏବଂ ତଥାକଥିତ ଧର୍ମ ଧାରଣାର ଊର୍ଦ୍ଧ୍ୱରେ ସେ ନିଜକୁ ରଖିପାରିଥିଲେ । ପ୍ରଶାସନିକ ଚାକିରୀରେ ସ୍ଥାନାନ୍ତର ହେବା ସତ୍ତ୍ୱେ ତାଙ୍କର ଭୁବନେଶ୍ୱର ରହଣି କାଳରେ ସାହିତ୍ୟ ଓ ସଂସ୍କୃତି ବିଷୟକ ଏକ ଅନ୍ତରଙ୍ଗ ଚର୍ଚ୍ଚାର ବଳୟ ବିଶିଷ୍ଟ ସାହିତ୍ୟିକ ଗୋପୀନାଥ ମହାନ୍ତିଙ୍କୁ କେନ୍ଦ୍ରକରି ଗଢ଼ିଉଠିଥିଲା । ଏହି ବଳୟରେ ସେ, ମହାପାତ୍ର ନୀଳମଣି ସାହୁ, ଅଖିଳ ମୋହନ ପଟ୍ଟନାୟକ, ଶାନ୍ତନୁ ଆଚାର୍ଯ୍ୟ, କୃଷ୍ଣପ୍ରସାଦ ମିଶ୍ର, ଚନ୍ଦ୍ରଶେଖର ରଥ, ହରିହର ଦାଶ ପ୍ରମୁଖ ସାହିତ୍ୟିକମାନେ ସାମିଲ ହୋଇ ନିରନ୍ତର ଆଲୋଚନାରେ ବ୍ୟାପୃତ ରହୁଥିଲେ ।

ଗୋଟିଏ ଶତାବ୍ଦୀ (୧୮୯୮-୧୯୯୮)ର ଗଳ୍ପ ରଚନାର ସୁସମୃଦ୍ଧ ପରମ୍ପରାକୁ ନେଇ ସଂପ୍ରତି ଓଡ଼ିଆ ଗଳ୍ପ ତା'ର ଜନ୍ମ ଶତବାର୍ଷିକୀ ପାଳନ କରୁଛି । ସମୟର ପ୍ରବାହ ସହ ଗତିଶୀଳ ଓଡ଼ିଆ ଗଳ୍ପଧାରା ବହୁ ବାଙ୍କ ବୁଲାଣି ଦେଇ ଜୀବନ ଓ ଜଗତର ବହୁ ରସ ରହସ୍ୟ, ବୈଚିତ୍ର୍ୟକୁ ବର୍ଣ୍ଣାଢ଼୍ୟ ଭାବେ ରୂପ ଦେଇଛି । ବହୁ ପରୀକ୍ଷା ପ୍ରୟୋଗ ଅଭିଷିକ୍ତ ତା'ର ଶିଳ୍ପବିଧି ଓ ବିଷୟ ବିନ୍ୟାସ । ଏହି ସମୟଖଣ୍ଡର ମଧ୍ୟ ପର୍ଯ୍ୟାୟକୁ ସ୍ୱାଧୀନୋତ୍ତର କାଳ ବୋଲି ଗ୍ରହଣ କରାଯିବ । ଗଳ୍ପକାର ବାମାଚରଣ ପ୍ରାକ୍ ସ୍ୱାଧୀନତା କାଳରୁ ଲେଖାଲେଖି ଆରମ୍ଭ କଲେ ବି ସ୍ୱାଧୀନତା ପରବର୍ତ୍ତୀ ଅନ୍ୟୂନ ଚଉଠ ଶତକ ତାଙ୍କ ସାରସ୍ୱତ ସାଧନା ଓ ଉତ୍କର୍ଷର କାଳ । ଏହି ପର୍ଯ୍ୟାୟଟି ବାସ୍ତବରେ ଓଡ଼ିଶାର ଖ୍ୟାତିମାନ କଥାଶିଳ୍ପୀଙ୍କ ସାଧନା ଓ ସିଦ୍ଧିର ଉଜ୍ଜ୍ୱଳ ଅଧ୍ୟାୟ ଭାବେ ଚିହ୍ନିତ । ଗୋପୀନାଥ ମହାନ୍ତି, ରାଜକିଶୋର ପଟ୍ଟନାୟକ, ସଚ୍ଚିଦାନନ୍ଦ ରାଉତରାୟ, ସୁରେନ୍ଦ୍ର ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, ରାଜକିଶୋର ରାୟ ଆଦି ଗଳ୍ପକାରମାନଙ୍କ କଥା-ପ୍ରତିଭାର ଉନ୍ମେଷ-ବିକାଶ କାଳରେ ଏହି ପ୍ରବାହରେ ସାମିଲ ହୁଅନ୍ତି ବାମାଚରଣ ମିତ୍ର, ମହାପାତ୍ର ନୀଳମଣି ସାହୁ, ମନୋଜ ଦାସ, କିଶୋରୀଚରଣ ଦାସ, ଅଖିଳ ମୋହନ ପଟ୍ଟନାୟକ, ଚଉଧୁରୀ ହେମକାନ୍ତ ମିଶ୍ର, ଅଚ୍ୟୁତାନନ୍ଦ ପତି ପ୍ରମୁଖ । ଅବଲୀଳାକ୍ରମେ ଏଥିରେ ବହୁ ଶକ୍ତିଶାଳୀ ସ୍ରଷ୍ଟାଙ୍କର ସଂଯୋଗ ଘଟେ । ସ୍ୱତନ୍ତ୍ରୋତ୍ତର ଓଡ଼ିଶା, ଯୁଦ୍ଧୋତ୍ତର ବିଶ୍ୱ ଏବଂ ସ୍ୱାଧୀନ ଭାରତବର୍ଷ ମୁଖ୍ୟତଃ ଏମାନଙ୍କର କଥା-ଭୂମି । ଏମାନେ ସଭିଏଁ ପ୍ରଶିକ୍ଷିତ ଏବଂ ପ୍ରାଚ୍ୟ ପାଶ୍ଚାତ୍ୟ ଗଳ୍ପଧାରା ଓ ପରମ୍ପରା ସଚେତନ, ପୁଣି ବହୁ ଶାସ୍ତ୍ର ନିପୁଣ, ବିଜ୍ଞାନ-ଦର୍ଶନ-ମନସ୍ତତ୍ତ୍ୱ ସଂପର୍କୀୟ ନବତମ ଜ୍ଞାନ ଏବଂ ପରିବର୍ତ୍ତିତ ସମାଜ-ଆର୍ଥନୀତିକ ବ୍ୟବସ୍ଥା ତଥା ଆନ୍ତର୍ଜାତିକ ପ୍ରେକ୍ଷାପଟ ସହ ପରିଚିତ ସ୍ୱକୀୟ ଶୈଳୀ ଓ କଳାପ୍ରବଣତାର ଜଣେ ଜଣେ ଯତ୍ନଶୀଳ ସ୍ରଷ୍ଟା ।

1950 ମସିହାରେ ପ୍ରକାଶିତ 'କୀର୍ତ୍ତିଯଶସ୍ୟ' ବାମାଚରଣଙ୍କ ପ୍ରଥମ ପ୍ରକାଶିତ ପୁସ୍ତକ । ପ୍ରାରମ୍ଭରେ ପାଶ୍ଚାତ୍ୟ ଲେଖକଙ୍କର ଅନୁସରଣରେ 'କୀର୍ତ୍ତିଯଶସ୍ୟ' ଓ 'ନରରକ୍ତଞ୍ଚାଣ' ପରି ଅପରାଧମୂଳକ କାହାଣୀ ରଚନା କଲେ ମଧ୍ୟ କ୍ରମଶଃ ମୌଳିକ ଗଳ୍ପରଚନା କ୍ଷେତ୍ରରେ ସେ ଅପୂର୍ବ ସିଦ୍ଧହସ୍ତତା ପ୍ରଦର୍ଶନ କରିଥିଲେ । ଭାଷାର ଅକୃତ୍ରିମ ପରିପକ୍ୱତା ଏବଂ ଭାବର ବ୍ୟାପ୍ତି ଓ ବିବିଧତା ବାମାଚରଣଙ୍କୁ ବେଳହୁଁ ଏକ ପୋଖତ ବା ଅଭିଜ୍ଞ ଶିଳ୍ପୀର ମର୍ଯ୍ୟାଦା ଦେଇଥାଏ । ଗଳ୍ପ ଲେଖାର ପ୍ରାରମ୍ଭକାଳରୁ କିଛି କିଛି ବର୍ଷ ବ୍ୟବଧାନରେ ବାମାଚରଣଙ୍କର 'ସ୍ୱପ୍ନସିଦ୍ଧ', 'ଅସୀମ', 'ବଟ ମହାପୁରୁଷ', 'ମହାପୁରୁଷ ବାଗ' ଆଦି ଗଳ୍ପ ସଂକଳନମାନ ପ୍ରକାଶ ପାଇଥିଲା । ଗଳ୍ପ ସହିତ ପ୍ରବନ୍ଧ ଓ ରମ୍ୟରଚନା ପ୍ରତି ଗାଳ୍ପିକଙ୍କର ରହିଥିଲା ଅନୁରୂପ ଅନୁରକ୍ତି । ବିଭିନ୍ନ ଦର୍ଶନ, ତତ୍ତ୍ୱ ଏବଂ ତଦ୍‌ସହିତ ନିଜସ୍ୱ ଅନୁଶୀଳନ ଓ ବକ୍ତବ୍ୟ ଗଳ୍ପକ୍ଷେତ୍ରରେ

ପୂର୍ଣ୍ଣତଃ ପ୍ରକାଶ ପାଇଁ ବାଟ ନପାଇ ରମ୍ୟରଚନାରେ ପ୍ରକାଶ-ଧନ୍ୟ ହୋଇଛି । ତାଙ୍କ ଗଳ୍ପ କ୍ଷେତ୍ରରେ କେବେ କେବେ ରମ୍ୟରଚନାର ପ୍ରବେଶ ଘଟିଛି ତ କେବେ ରମ୍ୟରଚନା ମଧ୍ୟରେ ଗଳ୍ପକାରିତା ପରିଲକ୍ଷିତ ହୁଏ । ତାଙ୍କର କେତେକ ଗଳ୍ପକୁ ରଚନାମୂଳକ ଗଳ୍ପ ବୋଲି ଆଖ୍ୟାୟିତ କରାଯାଇପାରେ ।

ଜୀବନର ପରିଣତ ପର୍ଯ୍ୟାୟରେ ନିଜର ସମସ୍ତ ଗଳ୍ପକୁ ସୁନିର୍ବାଚିତ ଭାବେ ଏକତ୍ର ସ୍ଥାନିତ କରିବା ମନୋଭାବ ରଖିଥିବା ହେତୁ ସେ 'ମିତ୍ରକଳ୍ପ', 'ମିତ୍ରଗଳ୍ପ' ଓ 'ମିତ୍ରସ୍ୱଳ୍ପ' ଗ୍ରନ୍ଥର ପରିକଳ୍ପନା କରିଥିଲେ । ବାମାଚରଣଙ୍କ ଦେହାନ୍ତ (1975 ମସିହା ଫେବୃୟାରୀ 21 ତାରିଖ) ପରେ ପ୍ରଥମ ଦୁଇଟି ଗ୍ରନ୍ଥ 1979ରେ ଏବଂ ଶେଷଟି 1981 ମସିହାରେ ତିନିଗୋଟି ବିଶିଷ୍ଟ ପ୍ରକାଶନ ସଂସ୍ଥା ଦ୍ୱାରା ପ୍ରକାଶିତ ହୋଇଥିଲା । ଏଥି ସହିତ ଦୁଇଟି ଭିନ୍ନ ସ୍ୱାଦର ଗ୍ରନ୍ଥ 'ଜୀବନ, ସାହିତ୍ୟ ଓ କଳା' (ପ୍ରବନ୍ଧ ସଂକଳନ) ଏବଂ 'ଚନ୍ଦ୍ର ଓ ଚମ୍ପା' (ଉପନ୍ୟାସ) ବାମାଚରଣଙ୍କ ପ୍ରତିଭାର ଉଜ୍ଜ୍ୱଳ ନିଦର୍ଶନ । ବିଗତ ତିନି ଚାରି ଦଶନ୍ଧି ଧରି ବାମାଚରଣ ଅନ୍ୟ କଥାକାରଙ୍କ ପରି ବିଶେଷ ଭାବେ ଚର୍ଚ୍ଚା ପରିସରକୁ ଆସିନାହାନ୍ତି । ତଥାପି ତାଙ୍କର ବିଭିନ୍ନ ଧାରାଶ୍ରୟୀ ଅନ୍ୟୁନ ଦଶରୁ ଊର୍ଦ୍ଧ୍ୱ ଗଳ୍ପ ଏବଂ 'ଚନ୍ଦ୍ର ଓ ଚମ୍ପା' ଉପନ୍ୟାସ ବିଭିନ୍ନ ସମୟରେ ବିଦ୍ୟାଳୟ, ମହାବିଦ୍ୟାଳୟ ତଥା ବିଶ୍ୱବିଦ୍ୟାଳୟର ପାଠ୍ୟ ସଂକଳନରେ ରହି ଚର୍ଚ୍ଚିତ ହୋଇଛି । ଅନେକ ସମୟରେ ସହାୟକ ଗ୍ରନ୍ଥ ଭାବେ 'ଜୀବନ, ସାହିତ୍ୟ ଓ କଳା' ବିଦଗ୍ଧ ପାଠକ ଓ ସମାଲୋଚକଙ୍କ ନିକଟରେ ପାଇଛି ଅକୁଣ୍ଠ ଆଦୃତି । 'ମାନସ' ପତ୍ରିକାର ଏକ ବିଶେଷ ସଂଖ୍ୟା (ଫେବୃୟାରୀ 1976) ଏବଂ 'ଇସ୍ତାହାର' ପତ୍ରିକାର '୵ବାମାଚରଣ ମିତ୍ର ବିଶେଷାଙ୍କ' (ଜାନୁୟାରୀ-ମାର୍ଚ୍ଚ : 1987) ବ୍ୟତୀତ ବାମାଚରଣଙ୍କ ଗଳ୍ପ ଓ ରମ୍ୟରଚନା ସଂପର୍କରେ ଗୋଟେ ଅଧେ ସନ୍ଦର୍ଭ ପ୍ରସ୍ତୁତି ହୋଇଛି ଓ କାଁ ଭାଁ ସମୀକ୍ଷା ଏ ଯାବତ୍ ପ୍ରକାଶିତ ହୋଇଛି । ନିଜର ସ୍ୱକୀୟତା ଓ ଅନନ୍ୟତା ସତ୍ତ୍ୱେ ବାମାଚରଣ ତଥାପି ରହିଛନ୍ତି ଅନାଲୋଚିତ ।

ଗଳ୍ପର ବର୍ଣ୍ଣନା ପାଟବ ଓ ଭାଷା ବିନ୍ୟାସ କ୍ଷେତ୍ରରେ ବାମାଚରଣ ଓଡ଼ିଆ ଗଳ୍ପର ପ୍ରଚଳିତ ପରମ୍ପରାକୁ ଗ୍ରହଣ କରିଛନ୍ତି । ଯଦିଓ ସମସାମୟିକ କୌଣସି ଘଟଣା ବା ଅନୁଭୂତିକୁ ସାଧାରଣତଃ ତାଙ୍କ ଗଳ୍ପର ବିଷୟବସ୍ତୁ ଭାବେ ସେ ନେଇଥାନ୍ତି; ତା' ଭିତରେ ଜୀବନ ଓ ଜଗତ ପ୍ରତି ଏକ ବ୍ୟାପକ ଅନ୍ତରଙ୍ଗ ଦୃଷ୍ଟି ପରିଲକ୍ଷିତ ହୁଏ ଏବଂ ଗଳ୍ପର ଆବେଦନ ଏକ ଗଭୀର ଓ ମହତ୍ତମ ବାର୍ତ୍ତା ପ୍ରଦାନ କରୁଥାଏ । ଗଳ୍ପ ମଧ୍ୟରୁ ବାମାଚରଣଙ୍କର ତତ୍ତ୍ୱନିଷ୍ଠ ମନନ, ବିଶ୍ୱର ବହୁ ଉଚ୍ଚକୋଟୀର ସାହିତ୍ୟକୃତି ଓ ଦର୍ଶନ ସଂପର୍କୀୟ ଅବଗାହନ, ବେଦ ଉପନିଷଦଠୁଁ ସାଂପ୍ରତିକ ଜଗତର ବୈଜ୍ଞାନିକ ଓ ଦାର୍ଶନିକ ଭାବସତ୍ୟର ଅନୁଶୀଳନ ଆଦିର ପରିଚୟ ପର୍ଯ୍ୟାପ୍ତ ଭାବରେ ମିଳିଥାଏ । କିନ୍ତୁ ସେ ସବୁ ଗଳ୍ପରେ ପ୍ରତିଫଳିତ ମୌଳିକ ଦୃଷ୍ଟି ଓ ଚଟକତାକୁ ବ୍ୟାହତ କରିନାହିଁ । ଏହା ଅଧିକନ୍ତୁ ତାଙ୍କର ଦୃଷ୍ଟିଭଙ୍ଗୀକୁ ବିଜ୍ଞାନସମ୍ମତ, ଦର୍ଶନକୁ ତତ୍ତ୍ୱନିଷ୍ଠ ଏବଂ ସୌନ୍ଦର୍ଯ୍ୟ ଦୃଷ୍ଟିକୁ ଅଧିକ ରସଗ୍ରାହୀ କରିଛି । ସ୍ୱକୀୟ ଚିନ୍ତନ, ମନନ ଦ୍ୱାରା ସେ ସତେକି ନିଜର ଏକ ଦର୍ଶନ ବା ମାର୍ଗ ପ୍ରସ୍ତୁତ କରିଥିବା ମନେହେବ । ଏପରି ଅବଗାହନ ଓ ମନନଶୀଳତା ସହ ଗଳ୍ପରେ ତତ୍ତ୍ୱ ଓ ରସର ସମ୍ମିଶ୍ରଣ, ବୌଦ୍ଧିକତା ଓ ହୃଦୟାବେଗର ସମନ୍ୱୟ, ପାରମ୍ପରିକ ମୂଲ୍ୟବୋଧ ଓ ସାଂପ୍ରତିକ ଅଭିରୁଚିର ସମ୍ମେଳନ ତାଙ୍କ ସମସାମୟିକ କ୍ୱଚିତ କଥାଶିଳ୍ପୀଙ୍କ ଠାରେ ପରିଲକ୍ଷିତ ହୁଏ । ଅତି ସାଧାରଣ ତୁଚ୍ଛାଦିତୁଚ୍ଛ ଘଟଣା ଏବଂ ତଦ୍‌ଜନିତ କ୍ରିୟା-ପ୍ରକ୍ରିୟା ଓ ଅନୁଭୂତିଠୁଁ ଆରମ୍ଭ କରି ଜ୍ଞାନବିଜ୍ଞାନର ସଦ୍ୟତମ ସିଦ୍ଧାନ୍ତର ପ୍ରୟୋଗ ଓ ପ୍ରାସଙ୍ଗିକତା ପର୍ଯ୍ୟନ୍ତ ତଥ୍ୟକୁ ନେଇ ସେ ଗଳ୍ପର ନିର୍ମାଣ କରିଥାନ୍ତି । ଆଞ୍ଚଳିକ ଘଟଣା ନେଇ ଗଳ୍ପର

କଥାବସ୍ତୁର ସୂତ୍ରପାତ ଘଟିଥିଲେ ମଧ୍ୟ ସେଥିରେ କେବେ କେବେ ଏକ ଆନ୍ତର୍ଜାତୀୟ ପରିମଣ୍ଡଳର ପ୍ରତିଫଳନ ଏବଂ ଏକ ବୃହତ୍ତର ବିଶ୍ୱଦୃଷ୍ଟିର ପରିଚୟ ମିଳିଥାଏ । ମୌଳିକ ଜୀବନ ଦୃଷ୍ଟି, ଉପସ୍ଥାପନରେ ଏକ ଅକୃତ୍ରିମ ସ୍ୱତଃସ୍ଫୂର୍ତ୍ତତା ଓ ପ୍ରାଣବନ୍ତ ବର୍ଣ୍ଣନା-ଚାତୁର୍ଯ୍ୟ ବାମାଚରଣଙ୍କ ନିଆରା ଶକ୍ତିମତ୍ତାକୁ ସାବ୍ୟସ୍ତ କରେ । ଗଭୀର ଜୀବନବୋଧ, ମାଟି ଅନୁରକ୍ତି ଅନ୍ତରାଳରେ ଏକ ଅପାର୍ଥିବ ଓ ମହତ୍ତର କିଛି ସ୍ପନ୍ଦନ ପ୍ରତି ଆକୁଳତା ବାମାଚରଣଙ୍କ ଗଳ୍ପ ମଧ୍ୟରୁ ବାରିହୋଇଯାଏ ।

ବାମାଚରଣଙ୍କ ଗଳ୍ପର ଉପାଦାନ, କଥାବସ୍ତୁ ଓ ପରିସର ପାରିବାରିକ ପଟ୍ଟଭୂମିଠୁଁ ଚାକିରିଜୀବି ଜୀବନଧାରା ପର୍ଯ୍ୟନ୍ତ ପରିବ୍ୟାପ୍ତ । ବିଭିନ୍ନ ସମୟରେ ତାଙ୍କ ଗଳ୍ପ ପୁରୁଷଟି ଗୃହସ୍ଥ, ପିତା, ପୁତ୍ର, ଲେଖକ, ହାକିମ, ଚାକିରିଜୀବି ବା ସାଧାରଣ ମଣିଷର କା' ନେଇ ଉଭା ହୋଇଥାଏ । କେତେବେଳେ ପ୍ରଥମ ପୁରୁଷ ବା ତୃତୀୟ ପୁରୁଷୀୟ ରୀତିରେ ଏବଂ କେତେବେଳେ ଏକ ଦ୍ରଷ୍ଟାର ଆଖି ନେଇ ସେ ଘଟଣାର ପରିବେଷଣ ଓ ପର୍ଯ୍ୟବେକ୍ଷଣ କରିଥାନ୍ତି । ତାଙ୍କ ଗଳ୍ପରେ ବ୍ୟକ୍ତିର କର୍ମ, ପ୍ରବୃତ୍ତି, ଈଶ୍ୱର-ନିରୀଶ୍ୱର ଭାବ ଭାବନା ନେଇ ବିଶ୍ଳେଷଣ କେଉଁଠି ପ୍ରାଧାନ୍ୟ ପାଇଛି ତ ପୁଣି କେଉଁଠି ଯୁଦ୍ଧ, ପ୍ରେମ, ନାରୀ ସ୍ୱାଧୀନତା, ନୈତିକତା, ପାପପୁଣ୍ୟ, ପାରିବାରିକ ସଂପ୍ରୀତି ଓ ପ୍ରାଣୀ ଜଗତର ବୈଚିତ୍ର୍ୟ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ହୋଇଉଠିଛି । ବ୍ୟକ୍ତି ମଧ୍ୟରେ ଥିବା ଦିବ୍ୟ ଓ ଆସୁରିକ ଚେତନାର ସଂଘର୍ଷ, ତଥାକଥିତ ଅପରାଧୀ ବ୍ୟକ୍ତି ମଧ୍ୟରେ ଥିବା ମଣିଷପଣିଆ କଥା, ସର୍ବୋପରି ବ୍ୟକ୍ତିମଣିଷ ଭିତରେ ଥିବା ପ୍ରବୃତ୍ତିଗତ ରୂପରାଗ : ଅହଂକାର, ଛଳନା, ଆଟୋପ ଏବଂ ତା' ସହିତ ମାନବିକ କରୁଣା ଓ ହୃଦୟବତ୍ତାର କଥାକୁ ମଧ୍ୟ ଗାଳ୍ପିକ ସୁନ୍ଦରଭାବେ ରୂପାୟିତ କରିଛନ୍ତି । ମଳିନ ଓ ଅଧୋଗାମୀ, ଦ୍ୱନ୍ଦ ଓ ଦ୍ୱିଧାଗ୍ରସ୍ତ ମଣିଷ ମଧ୍ୟରେ ହୃଦୟବତ୍ତା ଓ ମଣିଷପଣିଆର ସ୍ଫୁରଣ ଆମେ ତାଙ୍କଠିଁ ଲକ୍ଷ୍ୟ କରିଥାଉ । ପାରିବାରିକ ପଟ୍ଟଭୂମି, ପାରସ୍ପରିକ ଆଳାପ-ସଂଳାପ ବଳୟିତ ଘଟଣା ଅନେକ ଗଳ୍ପର କଥାବସ୍ତୁ ହୋଇଥିଲେ ବି ଏଥିରେ ବିବିଧତା ରହିଛି । ବେଳେବେଳେ ବିଷୟବସ୍ତୁର ସ୍ଫୀତିକରଣ ଗଳ୍ପକୁ ଆହତ କରେ । ତତ୍ତ୍ୱ, ଦର୍ଶନର ପରିପ୍ରକାଶ ଟିକେ ଅଧିକ ମନେହୋଇଥାଏ । ନିହାତି ସାଧାରଣ ଚରିତ୍ରଙ୍କୁ ଛାଡ଼ିଦେଲେ ବହୁ ଚରିତ୍ରଙ୍କ ମଧ୍ୟରେ ବେଳେବେଳେ ଯେଉଁ ଧୀମତ୍ତା ଓ ପାଣ୍ଡିତ୍ୟ ପରିଦୃଷ୍ଟ ହୁଏ, ମନେହୁଏ ସେମାନଙ୍କୁ ସତେକି ଲେଖକଙ୍କ ସତ୍ତା ଆବୋରି ରହିଥାଏ । ସବୁ ସତ୍ତ୍ୱେ ବାମାଚରଣ ପାଠକଙ୍କ ହୃଦୟରେ ସହୃଦୟତାର ସ୍ଫୁରଣ ସହିତ ଆଉ କିଛି ମହତ୍ତର ସଦିଚ୍ଛା ଓ ସମ୍ଭାବନାର ପ୍ରତ୍ୟାଶା ଦେଇଥାନ୍ତି ।

ବାମାଚରଣଙ୍କ ଗଳ୍ପର ଭାବ ବିସ୍ତୃତି, ଚରିତ୍ରଚିତ୍ରଣ, ଆବେଦନ ଓ ମର୍ମକୁ ବିଚାର ବିଶ୍ଳେଷଣ କଲେ ତାଙ୍କ ଦୃଷ୍ଟିର ବହୁଧା ଦିଗନ୍ତ ଉନ୍ମୋଚିତ ହୁଏ । ପ୍ରଥମତଃ ଶିଶୁ-କିଶୋର ମନସ୍ତତ୍ତ୍ୱ ସଂପନ୍ନ ଗଳ୍ପ କଥା ନିଆଯାଉ । ଶିଶୁ ବା କିଶୋର-କିଶୋରୀଙ୍କ ଅଦ୍ଭୁତ ଖିଆଲ, ଜିଜ୍ଞାସା ସଂପନ୍ନ ମନୋଜଗତର ରୂପାୟନ ପରିପ୍ରେକ୍ଷୀରେ ବୟସ୍କମଣିଷଙ୍କ ପୃଥିବୀ ମଧ୍ୟ ଆଲୋକିତ ହୋଇଛି । ସୃଷ୍ଟି ଏବଂ ଐଶ୍ୱରୀୟ ଭାବର ରହସ୍ୟମୟତା ଫୁଟି ଉଠିଚି । ଏ ଧାରାରେ 'ସ୍ୱପ୍ନସିଦ୍ଧ' ଓ ମିମିକୁ ଆଧାର କରି ତିନୋଟି ଗଳ୍ପ ବାମାଚରଣଙ୍କର ଏକାନ୍ତ ଲୋକପ୍ରିୟ ଗଳ୍ପ । 'ମିମିର ସାହିତ୍ୟ ଶିକ୍ଷା' ମଧ୍ୟରେ ଶିଶୁର ଖିଆଲି ସ୍ୱପ୍ନ ଓ କଳ୍ପନାର ଜଗତ ଜୀବନ୍ତ ହୋଇଉଠିଛି । ଈଶ୍ୱରଙ୍କ ରୂପର ଏକ ଅନନ୍ୟ ବାଖ୍ୟା ତା' ଭିତରର ଜିଜ୍ଞାସାବୋଧକୁ ପ୍ରକାଶ କରିଛି । ତଥାକଥିତ ହିସାବି ରୀତିରେ କବି କଳ୍ପନାର ଈଶ୍ୱରଙ୍କୁ ଗ୍ରହଣ କରିବାକୁ ସେ ରାଜି ନୁହଁ । ବିଶ୍ୱର ପ୍ରତିଟି କୌତୁକପ୍ରବଣ ଶିଶୁ ମଧ୍ୟରେ ଆମେ ମିମିକୁ ଦେଖୁ । ଅନ୍ୟ ଗଳ୍ପରେ ତା'ର ଭୂଗୋଳ' ଓ 'ସଭ୍ୟତା'

ଶିକ୍ଷାର ପ୍ରଚ୍ଛନ୍ନରେ ଶିଶୁ-କିଶୋର ଜଗତର ରହସ୍ୟ ପ୍ରକାଶ ପାଇଛି । ଯାବତୀୟ ଈର୍ଷା, ଅସୂୟା, କ୍ରୋଧ ଓ ଭୟ ପ୍ରବଣତା ସତ୍ତ୍ୱେ ପ୍ରତିଟି ଶିଶୁ ଭିତରେ ଏକ ପ୍ରଗାଢ଼ ସ୍ନେହ ଓ ଆତ୍ମୀୟତା ସଦାକାଳେ ବିଦ୍ୟମାନ ରହିଛି- 'ସ୍ୱପ୍ନସିଦ୍ଧ' ଗଳ୍ପ ତା'ର ଅପୂର୍ବ ରୂପାୟନ । ଶିଶୁ ଯେ ନିଷ୍ପାପ ଚେତନା ଓ ସ୍ୱର୍ଗୀୟ ଦ୍ୟୋତନାର ଏକ ସେତୁ-ଏଇ ଭାବ ତାଙ୍କ ଗଳ୍ପମାନଙ୍କର ଅନ୍ୟତମ ପ୍ରତିପାଦ୍ୟ ।

ବ୍ୟକ୍ତି ଭିତରେ ଥିବା ଆଟୋପହୀନ ସରଳ ନିରୀହ ପଣକୁ ବାମାଚରଣ ଅତ୍ୟନ୍ତ ହୃଦ୍ୟ ଓ ନିଖୁଣ ଭାବରେ ବ୍ୟବଚ୍ଛେଦ କରିଛନ୍ତି । ପୁଣି ତା' ଭିତରର ଫମ୍ପା ଆଭିଜାତ୍ୟ, ଅସହାୟତା ଏବଂ ଉଚ୍ଚତର ଉପଲବ୍ଧି ମଧ୍ୟ ବହୁ ଗଳ୍ପରେ ପରିସ୍ଫୁଟିତ ହୋଇଛି । 'ମହାପୁରୁଷ ବାଗ' ଗଳ୍ପର ସରଳମନା ସଂଗୀତର ପୂଜାରୀ ମୋଚି ରାମାରାଓମାନେ ତେଣୁ ଭାରତବର୍ଷର ନିରୀହ ନିର୍ବୋଧ ଜନସାଧାରଣଙ୍କର ପ୍ରତୀକ ବୋଲି ପ୍ରତିଭାତ ହୁଅନ୍ତି । ବଡ଼ବଡ଼ିଆଙ୍କ ମିଥ୍ୟା ଭାଷଣରେ ପ୍ରଲୁବ୍ଧ ହୋଇ ପାଶ୍ଚାତ୍ୟ ବିଳାସ ପ୍ରମତ୍ତ ମହାପୁରୁଷ ବାଗ କ୍ଲବରେ ଅନୁପ୍ରବେଶ କରିବାର ବିଡମ୍ବିତ ପରିଣତି ତାଙ୍କୁ ଭୋଗିବାକୁ ପଡ଼ିଛି । ତଥାକଥିତ କାମନା, ଶଠତା ଓ ସ୍ୱେଚ୍ଛାଚାରରେ ମଦମତ୍ତ ଶାସନତନ୍ତ୍ରର ରାକ୍ଷସୀ ଲାଳସା ପାଖରେ ରାମାରାଓ ଓ ତାଙ୍କର ପତ୍ନୀ ସହଜାତ ଭାବେ ବଳି ପଡ଼ିଛନ୍ତି । ରାମାରାଓଙ୍କ କାରୁଣ୍ୟ ଭିତରେ ଭାରତବର୍ଷର ନିପୀଡ଼ିତ ଓ ପ୍ରତାରିତ ମାନବାତ୍ମାର କାରୁଣ୍ୟ, ସୌନ୍ଦର୍ଯ୍ୟବୋଧ ଓ ନିରୀହତାର ମୃତ୍ୟୁ ପ୍ରକଟିତ ହୋଇଛି । 'ଲଡ୍ଡୁ' ଗଳ୍ପରେ ନିମ୍ନ ମଧ୍ୟବିତ୍ତ ମଣିଷ ମଧ୍ୟରେ ଥିବା ଅଭାବ ଅନାଟନର ଭୀଷଣତା ସହିତ 'ଦିଲ୍‌ମୋହିନୀ' ଲଡ୍ଡୁଟିଏ ଖାଇବାଜନିତ ପ୍ରବୃତ୍ତିର ତାଡନା ଏତେ ସୁନ୍ଦର ଭାବେ ରୂପ ପାଇଛି ଯେ ବ୍ୟକ୍ତିର ଆସକ୍ତି ଓ ଅସହାୟତା ପାଠକ ଚିତ୍ତରେ ସଂବେଦନା ଉଦ୍ରେକ କରେ । କିନ୍ତୁ 'ପାଷାଣର ପ୍ରାଣ' ଗଳ୍ପର ନାୟକ ଯାଦବବାବୁ ଅଭାବ ଅନାଟନର କଷାଘାତରେ ନିଜ ଭିତରର ମଣିଷ ପଣିଆକୁ ବଳିପକାଇ ନାହାନ୍ତି । ଅଭାବଗ୍ରସ୍ତ ହେଲେ ବି ଅନ୍ୟକୁ ଠକିବାର ମାନସିକତାକୁ ସେ ପରିହାର କରିଛନ୍ତି । ଚେତନା ନିଷ୍ପାପ ରହିଲେ ଯେ ଚିତ୍ତ-ଲୋକରେ ମନ୍ଦିରର ପାଷାଣ ପ୍ରତିମା ଜୀବନ୍ତ ଦିଶନ୍ତି-ଯାଦବବାବୁଙ୍କର ଏ ଉପଲବ୍ଧି ବାମାଚରଣଙ୍କ ଈଶ୍ୱର ସଂପ୍ରୀତିର ପରିଚାୟକ । ଦାରିଦ୍ର୍ୟର ବି ଆପଣା ସୌକର୍ଯ୍ୟ ଓ ସ୍ୱାଭିମାନ ଥାଏ । ସେଇ ଛଳନାମୁକ୍ତ ଜୀବନଚଳଣି କୃତ୍ରିମତା କବଳିତ ହେଲେ ବିଡମ୍ବନା ସୃଷ୍ଟି ହୁଏ । ଏଇ ବିଡମ୍ବନା ଓ ମୋହଭଙ୍ଗର ଗଳ୍ପ 'ନିମନ୍ତ୍ରଣ' । ଏ ଧାରାର 'ସ୍ମୃତିରତ୍ନାକର' ଗଳ୍ପରେ ସହରୀ ଧନାଢ୍ୟପଣିଆର ପତିଆରା, ପ୍ରାଚୁର୍ଯ୍ୟ ଭିତରର ଛଳନା ଓ ହୃଦୟହୀନତାକୁ ଗାଳ୍ପିକ ସାଧାରଣ ଚରିତ୍ରଟିଏ ଜରିଆରେ ସହଜରେ ଭାଙ୍ଗି ଦେଇଛନ୍ତି । ଅକପଟ ଅକୃତ୍ରିମ ଜୀବନଧାରା, ଅନ୍ତରଙ୍ଗ ଆତ୍ମୀୟତାବୋଧ, ସର୍ବୋପରି ମାନବିକତାବୋଧର ମହିମା ପ୍ରତି ଏ ଧାରାର ଗଳ୍ପମାନଙ୍କରେ ବାମାଚରଣ ପ୍ରଯତ୍ନ କରିଛନ୍ତି ।

ଜାତି, ଧର୍ମକୁ ନେଇ ସାଂପ୍ରଦାୟିକ ସଂଘର୍ଷରୁ ସାଂପ୍ରତିକ ବିଶ୍ୱ ଓ ଭାରତବର୍ଷ ମୁକ୍ତି ପାଇନାହିଁ । ସେଠି ମନ୍ଦିର, ମସ୍‌ଜିଦ୍ ନେଇ ରକ୍ତରେ ହୋରି ଖେଳ ଚାଲେ । ଆମ କୁଶଭଦ୍ରା ନଦୀର ଏ ପାରିର କୁଶୁପୁରର ରାଧାବଲ୍ଲଭଙ୍କ ଅନୁରକ୍ତ ରାମ ପ୍ରଧାନ ଓ ଆରପାରିର ଆହମଦପୁର ଗାଁର ରହିମ୍ ଖାଁ ମାନଙ୍କ ଯୁଗ ଯୁଗର ସଂପର୍କ, ଘନିଷ୍ଠ ଆତ୍ମୀୟତା ଏଣୁ ରକ୍ତରଂଗା ହୁଏ । ସେମାନଙ୍କର ପୁଅ ନବ ଓ ଅବଦୁଲ୍ ପରସ୍ପର ହାତରେ ମୃତ୍ୟୁ ବରଣ କଲେ ବି ଆତ୍ମୀୟତାର ବଂଧନ ଏବଂ ସହାବସ୍ଥାନର ସମ୍ଭାବନା ତଥାପି ଶେଷ ହୋଇଯାଏନି । ଗାଳ୍ପିକ ପରବର୍ତ୍ତୀ ଦାୟାଦଙ୍କୁ ପ୍ରେମ ଓ ମୈତ୍ରୀରେ ବାନ୍ଧି ରଖନ୍ତି । ଏ ଧାରାରେ ଦୁଇଟି ଭାଗରେ ଲିଖିତ 'ହୋଲି' ଓ 'ଧର୍ମକ୍ଷେତ୍ରେ' ଗଳ୍ପଦ୍ୱୟ । କୁଶୁପୁର ଓ ଅହମଦପୁରକୁ ଆମେ ପୃଥିବୀର

ଦୁଇଟି ଧର୍ମ ଅଧ୍ୟୁଷିତ ଭୂମି ବୋଲି ଗ୍ରହଣ କରିପାରିବା । ପୃଥିବୀ ଯେ ସହାବସ୍ଥାନ ଓ ସହୃଦୟତାର ମହତୀ ଭୂମି- ଏ ଭାବର ପ୍ରସ୍ଫୁଟନରେ, ସଂପର୍କ ଓ ଆତ୍ମୀୟତାର ବହୁଧା ଦିଗନ୍ତ ଉନ୍ମୋଚନରେ ଏହା ବାମାଚରଣଙ୍କର ଅନବଦ୍ୟ ଶକ୍ତିଶାଳୀ ସୃଷ୍ଟି । 'ମାନବ ଓ ଦାନବ', 'ଧରିତ୍ରୀ ଓ ଧରିତ୍ରୀ' ପରି ଗଳ୍ପରେ ବାହ୍ୟ ପ୍ରକୃତି ଓ ମନୁଷ୍ୟର ଅନ୍ତଃପ୍ରକୃତିକୁ ଗାଳ୍ପିକ ସୁନ୍ଦର ଭାବରେ ଉଦ୍‌ଖାତ କରିଛନ୍ତି । ମନୁଷ୍ୟ ଭିତରର ହିଂସାପ୍ରମତ୍ତ ପାଶବିକତା ଓ କାମନାର କଦାକାର ଭୀଷଣ ସ୍ୱରୂପ ତାକୁ ଆଜି ଧ୍ୱଂସ ପଥର ଅଭିଯାତ୍ରୀ କରିଛି । କିନ୍ତୁ ତା' ଭିତରର ଅମୃତମୟ ମହତୀ ସତ୍ତା ଏବଂ ବିଶ୍ୱପ୍ରକୃତି ଯେ ତାକୁ ଉତ୍ତୀର୍ଣ୍ଣ କରାଇବ- ଏଇ ବିବେଚନା ଓ ମୁକ୍ତି ଅଭୀପ୍ସା ଏ ଗଳ୍ପଦ୍ୱୟର ଅସଲ ଅନ୍ତଃସ୍ୱର । ଆସୁରିକତାର ଉତ୍‌ପାଟନ ଓ ଦିବ୍ୟ ଭାବର ଉଦୟନରେ ବାମାଚରଣଙ୍କ ସ୍ୱର ଏକାନ୍ତ ସନ୍ନ୍ୟାସୀ ଓ ଦାର୍ଶନିକ ସୁଲଭ ମନେହୁଏ ।

ଜୀବନ ଓ ଜଗତର ବହୁବିଧ ବୈଚିତ୍ର୍ୟ ବାମାଚରଣଙ୍କ ପ୍ରଖର ଅନ୍ତଃଦୃଷ୍ଟିରେ ଆଲୋକିତ ହୋଇଛି । ମନୁଷ୍ୟ ଓ ପ୍ରାଣୀଜଗତର ଯାବତୀୟ କ୍ରିୟା-ପ୍ରକ୍ରିୟା ମଧ୍ୟରେ ଗାଳ୍ପିକ ଭିନ୍ନ ଏକ ଉପଲବ୍ଧି ଓ ଭାବସତ୍ୟର ଜଗତରେ ପହଞ୍ଚିଛନ୍ତି । 'ଜୀବନ ଓ ଜୀବିକା' ଗଳ୍ପରେ ଏକ ସାଧାରଣ ଚନାଚୂର୍ ବିକାଳିର ଜୀବନଯାପନ ମଧ୍ୟରେ ଜୀବନ ଜୀଇଁବାର ସ୍ପର୍ଦ୍ଧା, ଅର୍ଥମୟତା ଏବଂ ସୃଜନଶୀଳତାକୁ ଗାଳ୍ପିକ ପ୍ରତ୍ୟକ୍ଷ କରିଛନ୍ତି । 'ଅମୃତସ୍ୟ ପୁତ୍ରାଃ' ଗଳ୍ପରେ ଏକ ପକ୍ଷରେ ମାତୃତ୍ୱର ବୈଚିତ୍ର୍ୟ ଓ ଜୟଗାନ ଏବଂ ଅନ୍ୟପକ୍ଷରେ ହାଇଡ୍ରୋଜେନ୍ ବୋମା ପ୍ରୟୋଗରେ ନିରୀହ ମାନବ ସନ୍ତାନର ଧ୍ୱଂସଲୀଳା - ଏ ବିରୋଧାଭାସ ଏକ ବୌଦ୍ଧିକ ଚିନ୍ତାଦ୍ୟୋତକ ଆବେଦନ ଦେଇଥାଏ । 'କଷ୍ଟେ ପୁତ୍ରଃ' ଗଳ୍ପରେ ପ୍ରଦର୍ଶିତ ନିରୀହ ଅସହାୟତା ଓ କାରୁଣ୍ୟ ଜୀବନ ଜୀଇଁବାର ଆଉ ଏକ ଭିନ୍ନ ଫର୍ଦ୍ଦ ଉନ୍ମୋଚନ କରେ । 'କୁକୁଡ଼ାଚାଷ' ବା 'ଆଗନ୍ତୁକ' ଗଳ୍ପରେ ପ୍ରାଣୀଜଗତର କୁକୁଡ଼ା ଭିତରେ ଗାଳ୍ପିକ ସ୍ନେହ ବରାଭୟ ପ୍ରଦାନକାରୀ ମା' ପଣର କମନୀୟ ଜଗତକୁ ଦେଖାଇପାରନ୍ତି । ପ୍ରାଣୀ ଜଗତ ଭିତରେ ବିଶ୍ୱଜନୀନ ମାତୃସତ୍ତାର ଅସ୍ତିତ୍ୱ ଉପଲବ୍ଧ ହୁଏ । ଏ ଦୁଇଟି ଗଳ୍ପ ଭିନ୍ନ ଅନ୍ୟ କେତେକ ଗଳ୍ପରେ ଏହି ମାତୃଶକ୍ତିର ମମତ୍ୱବୋଧ ଓ ଅଭୟପ୍ରଦାନକାରୀ ରୂପକୁ ଗାଳ୍ପିକ ଆଲୋକିତ କରିଛନ୍ତି । 'ଗୋଟିଏ ମଧ୍ୟବିତ୍ତ ପରିବାରରେ ମୂଷା' ଗଳ୍ପଟିରେ ମୂଷାକୁ ନେଇ ସୃଷ୍ଟିର ଅଦ୍ଭୁତ ଲୀଳାଖେଳା, ବ୍ୟକ୍ତିର ହିଂସ୍ରତା ଓ ସ୍ନେହପ୍ରବଣତା, ଜୀବନ ଜୀଇଁବା ଓ ମୃତ୍ୟୁର ବହୁ ପ୍ରଶ୍ନ ଏକ ନାଟକୀୟ ରୀତିରେ ଉଦ୍‌ଘାଟିତ ହୋଇଛି । ଏଇ ଧାରାର ଗଳ୍ପମାନଙ୍କରେ ମୁଖ୍ୟତଃ ଜୀବନର ବିବିଧତା, ଅସୁମାରୀ ବୈଚିତ୍ର୍ୟ କଳାସଙ୍ଗତ ରୂପ ପରିଗ୍ରହଣ କରିଛି । ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷର ଗାଁ ଭିତରର ଦୃଶ୍ୟବଦଳ ଗାଳ୍ପିକଙ୍କ ସନ୍ଧାନୀ ଦୃଷ୍ଟିରୁ ବାଦ ପଡ଼ିନାହିଁ । ବଟ ମହାପୁରୁଷ ଆଖ୍ୟାୟିତ ଆମ ଧର୍ମ ଓ ବିଶ୍ୱାସର ପ୍ରତିଭୂ ବଟବୃକ୍ଷକୁ ଆଧାର କରି କ୍ଷମତା ଲଢ଼େଇ ଓ ସାଂପ୍ରଦାୟିକ ସଂଘର୍ଷର ପ୍ରାଣସ୍ପର୍ଶୀ ଚିତ୍ର 'ବଟ ମହାପୁରୁଷ' ଗଳ୍ପରେ ପରିବେଷିତ । ଖାଲି ସଂସ୍କୃତି ଓ ସହାବସ୍ଥାନର ଚେର ଯେ ଉପୁଡ଼ି ପଡୁଛି ତା' ନୁହେଁ; ଧର୍ମ ଯେ ଆଜି ସ୍ୱାର୍ଥାନ୍ୱେଷୀ ମଣିଷର ସ୍ୱର୍ଣ୍ଣକାତର ଆଧାର-ବହୁ ବର୍ଷ ତଳେ ରଚିତ ଏ ଗଳ୍ପର ପ୍ରାସଙ୍ଗିକତା ଆଜି ସଜଳ ହୋଇ ଉଠିନାହିଁ କି ? ଗାଁକୁ ନେଇ ବାମାଚରଣଙ୍କର ରହିଛି କିଛି ଭିନ୍ନ ଭାବାଶ୍ରୟୀ ଅନ୍ତରଙ୍ଗ ଗଳ୍ପ ।

ବାମାଚରଣଙ୍କ ଗଳ୍ପର ଅନ୍ୟ ଏକ ସୁଦୃଶ୍ୟ ବିଭାବ ବିମଳ ହାସ୍ୟରସ ଓ ବ୍ୟଙ୍ଗର ଅବତାରଣା । ସ୍ୱକୀୟ ଉପସ୍ଥାପନାକୁ ଅଧିକ ରମ୍ୟ, ରୋଚକ ଓ ରସଗ୍ରାହୀ କରିବା ହେଉଛି ତାଙ୍କ ହାସ୍ୟବ୍ୟଙ୍ଗର ଆଭିମୁଖ୍ୟ । ପୁନଶ୍ଚ, ଏକ ପକ୍ଷରେ ବ୍ୟକ୍ତିର ଅସହାୟତା, କାରୁଣ୍ୟ ଓ ଚଞ୍ଚଳତାର ସ୍ୱରୂପ ପ୍ରଦର୍ଶନ ଏବଂ

ଅନ୍ୟ ପକ୍ଷରେ ଆନନ୍ଦ-ଅନୁରାଗ-ଆମୋଦର ପରିପ୍ରକାଶ, ଏହି ହାସ୍ୟବ୍ୟଙ୍ଗ ଯୋଗୁଁ ଅଧିକ ପ୍ରାଣବନ୍ତ ହୋଇପାରିଛି । ଏହା ଜରିଆରେ ବାମାଚରଣଙ୍କ ବାକ୍‌ବୈଦଗଧ, ବୁଦ୍ଧିଚାତୁର୍ଯ୍ୟ, ଶ୍ଳେଷ, ଆତ୍ମବ୍ୟଙ୍ଗ, କୌତୁକ ଓ ପରିହାସପ୍ରିୟତା ରୂପ ପାଇଛି । କେବେ କେବେ ଫାଣ୍ଟାସିର ଅବତାରଣା ବାମାଚରଣଙ୍କ ଅପୂର୍ବ କଳ୍ପନା ଓ ଶକ୍ତିମତ୍ତାକୁ ସୂଚାଇଥାଏ । 'ମାନବ ଦାନବ', 'ଇଚ୍ଛାପୂରଣ', 'ବାବା ଡହରାନନ୍ଦଙ୍କ ବିବାହ ବୃତ୍ତାନ୍ତ' ଆଦି ଗଳ୍ପରେ ଏହି ପ୍ରୟୋଗ ଲକ୍ଷ୍ୟ କରିହେବ । 'ଧରିତ୍ରୀ ଓ ଧରିତ୍ରୀ' ଗଳ୍ପରେ ବର୍ଣ୍ଣନା ମଧ୍ୟରେ ଏହି ପ୍ରୟୋଗ-ଚମତ୍କାରିତାର ସୂଚନା ପ୍ରଦତ୍ତ - 'ବିଲୁଆମାନେ ଶେଷ ପ୍ରାହରିକ ରାବିଲେ, ହୁୟା ହୁୟା ! ଆଉ ଥୋକେ ଦୂରରୁ ପଚାରିଲେ, କ୍ୟା ହୁୟା, କ୍ୟା ହୁୟା... । ଆହୁରି ଦୂରରେ ଥୋକେ ଉତ୍ତର ଦେଲେ ହତ୍ୟା ହୁୟା, ହତ୍ୟା ହୁୟା... ।' ଗଳ୍ପର ଏକମୁଖୀନ ପ୍ରଭାବ ପ୍ରତି ଏକାନ୍ତ ଯତ୍ନଶୀଳ ବାମାଚରଣ ତତ୍ତ୍ୱ ଓ ତଥ୍ୟର, ପ୍ରଜ୍ଞା ଓ ଆବେଗର, ରସବୋଧ ଓ ଯୁକ୍ତିନିଷ୍ଠତାର ସମନ୍ୱୟ ଘଟାଇ ଗଳ୍ପର ଆବେଦନକୁ ବହୁପ୍ରସ୍ଥୀ ଓ ବୌଦ୍ଧିକ କରିପାରନ୍ତି । ବର୍ଣ୍ଣନାରେ କୌଣସି ତଥାକଥିତ ଅଳଙ୍କରଣ ବା ଉପମା-ଚିତ୍ରକଳ୍ପ ଚୟନ ପ୍ରତି ସେ କୌଣସି ଆଗ୍ରହ ଦେଖାଇ ନାହାନ୍ତି । ଲୋକ ପ୍ରଚଳିତ କଥିତ ଭାଷାର ବ୍ୟବହାର, ଗୀତା, ଉପନିଷଦ ବା ଲୋକ ସାହିତ୍ୟ ଆଦିର ପ୍ରସଙ୍ଗ ଓ ଉଦାହରଣକୁ ଅନେକ ଭାବେ ଉଦ୍ଧୃତି ସ୍ୱରୂପ ସେ ଉପସ୍ଥାପନ କରିଛନ୍ତି । ଗଳ୍ପ-କଳା ଦୃଷ୍ଟିରୁ ତଥାକଥିତ କୌଣସି ପରୀକ୍ଷା ପ୍ରତି ସେ ପ୍ରବଣତା ପୋଷଣ କରି ନାହାନ୍ତି । କହିବାର ଏକ ଅନ୍ତରଙ୍ଗ ବିଦଗ୍ଧ ଯାଦୁକରୀ ଭଂଗୀ, ଗଭୀର ଆତ୍ମନିମଜ୍ଜନ, ଘଟଣାର ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ତାଙ୍କ ଗଳ୍ପକୁ ଆକର୍ଷଣୀୟ କରି ଗଢ଼ି ତୋଳେ ।

ବାମାଚରଣଙ୍କ ଗଳ୍ପରେ ପ୍ରତିଫଳିତ ସବୁ ଭାବ, ଦର୍ଶନ ଅନ୍ତରାଳରେ ମନୁଷ୍ୟର ପାରସ୍ପରିକ ସଂପର୍କ, ଆତ୍ମୀୟତା ଓ ଆଚରଣଗତ ବୈଚିତ୍ର୍ୟ ପ୍ରାଧାନ୍ୟ ପାଇଛି । ସବୁଠୁଁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି, ଏହି ଆତ୍ମୀୟତାର ଜଗତ ସହିତ ମହତ୍ତର ବା ବୃହତ୍ତର କୌଣସି ସତ୍ତାର ସଂପର୍କ ବିଷୟରେ ତାଙ୍କର ଜିଜ୍ଞାସାବୋଧ । ବ୍ୟକ୍ତିଗତ ବିମଳ ଉଚ୍ଛ୍ୱାସ ସହିତ ମହାଜାଗତିକ ଘଟଣାମାନଙ୍କର ସଂପର୍କ କିମ୍ବା ମନୁଷ୍ୟର ଅପରାଧ ଓ ବିକୃତି ସହିତ ମହାଯୁଦ୍ଧ ବା ପ୍ରଳୟର ଯୋଗାଯୋଗ କଥା ସେ ଘଟଣା ପ୍ରବାହର ଅନ୍ତରାଳରେ ସୂଚାଇଥାନ୍ତି । ଏଇ ବିଶେଷତ୍ୱ ପ୍ରକଟନରେ ସେ ସ୍ୱତନ୍ତ୍ର ଓ ଅନନ୍ୟ । ଅସୀମର ସ୍ୱର ବା ରହସ୍ୟବାଦ ପ୍ରତି ଉନ୍ମୁଖତା ତାଙ୍କ ଗଳ୍ପରେ ପ୍ରତିଫଳିତ ହେବା କଥା ପୂର୍ବରୁ କୁହାଯାଇଛି । ବ୍ୟକ୍ତିସତ୍ତାର ଉତ୍ତରଣ ସହିତ ତା' ମଧ୍ୟରେ ନୀତିବୋଧ ଓ ଶ୍ରୁତିବୋଧର ପ୍ରତିଷ୍ଠା ଉପରେ ସେ ପ୍ରାଧାନ୍ୟ ଦିଅନ୍ତି । ସମଧର୍ମୀ ଗାଳ୍ପିକଙ୍କ ମଧ୍ୟରେ ଏହା ବାମାଚରଣଙ୍କ ନିଆରା ପଣ । ଏକ ଆଧ୍ୟାତ୍ମିକ ଭାରତ ଓ ସନ୍ତ୍ରାସ ମୁକ୍ତ ବିଶ୍ୱର ପରିକଳ୍ପନା ସହ ବ୍ୟକ୍ତିର ଉତ୍ତରଣ-ପ୍ରତ୍ୟାଶା ପାଇଁ ଆକୁଳତା ତାଙ୍କ ଗଳ୍ପରେ ପ୍ରତିଫଳିତ ହୋଇଛି ।

ସମକାଳୀନତା ବାମାଚରଣଙ୍କ ଗଳ୍ପର କଥାବସ୍ତୁର ଆଧାର ହେଲେ ମଧ୍ୟ ସମୟୋତୀର୍ଣ୍ଣ ଆବେଦନ ଦେବାରେ ତାଙ୍କର ବହୁ ଗଳ୍ପ ସଫଳ । ସାମାଜିକ ପ୍ରତିବଦ୍ଧତା ପ୍ରତି ଉନ୍ମୁଖ ଗାଳ୍ପିକ ମନୁଷ୍ୟର ଶୋଧନ ପ୍ରତ୍ୟାଶୀ । ବ୍ୟକ୍ତି ମହତ୍ତମ ଓ ଆଲୋକଦୀପ୍ତ ସୋପାନକୁ ଉନ୍ନୀତ ହେବା, ସଂସ୍କୃତିବନ୍ତ ଓ ପୂର୍ଣ୍ଣତମ ହେବା ଅଭୀପ୍‌ସା ଗାଳ୍ପିକ ଅନେକତ୍ର ପୋଷଣ କରିଛନ୍ତି । ଉପକୂଳବର୍ତ୍ତୀ ଓଡ଼ିଶାର ସମାଜ-ରାଜନୀତିକ ପୃଷ୍ଠଭୂମି ଉପରେ ତାଙ୍କର ଗଳ୍ପଗୁଡ଼ିକ ସଂପୁଟିତ ହେଲେ ବି ବିଷୟବିନ୍ୟାସ, ଆବେଦନ ଦୃଷ୍ଟିରୁ ବାମାଚରଣଙ୍କୁ ଏକ ଭାରତୀୟ ପୃଷ୍ଠଭୂମିର ଗାଳ୍ପିକ ବୋଲି ଗ୍ରହଣ କରିବାକୁ ହେବ । ମାନବିକ କରୁଣା ଓ ଜୀବନ ପ୍ରତି ଗଭୀର ସଂପ୍ରୀତି ବୋଧରେ ଉର୍ଜ୍ଜସ୍ୱଳ ବାମାଚରଣ ମିତ୍ରଙ୍କ ଗଳ୍ପ ଆଞ୍ଚଳିକ ରଂଗବାସ୍ନା ଓ ସ୍ଥାନକାଳପାତ୍ର ଉର୍ଦ୍ଧ୍ୱରେ ରହେ ।

ଏହି ନିର୍ବାଚିତ ସଂକଳନଟି ପ୍ରସ୍ତୁତ କଲାବେଳେ ବାମାଚରଣଙ୍କ ଗଳ୍ପମାନଙ୍କରେ ପ୍ରତିଫଳିତ ଭାବସମୂହର ବିଶେଷତା, ବୈଚିତ୍ର୍ୟ ଏବଂ କଳାକୁଶଳତା ପ୍ରତି ମୁଁ ବିଶେଷ ଭାବେ ଦୃଷ୍ଟିଦେଇଛି । ଗୋଟିଏ ପୃଷ୍ଠଭୂମି ଓ ଭାବଧାରାକୁ ନେଇ ରଚିତ ଏକାଧିକ ସଫଳ ଗଳ୍ପରୁ ମୁଁ ଅନ୍ତତଃ ପକ୍ଷେ ଗୋଟିଏ ଗଳ୍ପକୁ ଗ୍ରହଣ କରିଛି । ବାମାଚରଣଙ୍କ କଥା-ପ୍ରତିଭାର ପରିଚିତି ନିମନ୍ତେ ଏପରି ଏକ ସଂକଳନ ପ୍ରସ୍ତୁତି ନିମିତ୍ତ ନ୍ୟାସନାଲ୍ ବୁକ ଟ୍ରଷ୍ଟ ଏବଂ ଏହାର ପ୍ରସ୍ତାବନା କରିଥିବା ବିଚାରକମଣ୍ଡଳୀ ନିଶ୍ଚିତ ଭାବେ ଧନ୍ୟବାଦାର୍ହ । ସଂପ୍ରତି ପ୍ରକାଶନ-ଦୁଷ୍ପ୍ରାପ୍ୟ ବାମାଚରଣଙ୍କ ଅମୂଲ୍ୟ ଓ ଅତ୍ୟନ୍ତ ଲୋକପ୍ରିୟ ଗଳ୍ପମାନଙ୍କର ଏକତ୍ର ସମାହାର- ଏ ନିର୍ବାଚିତ ଗଳ୍ପସମ୍ଭାର ତାଙ୍କ ଗଳ୍ପ ସହ ସୁପରିଚିତ ତଥା ନୂଆପୀଢ଼ିର ଗାଳ୍ପିକ ତଥା ଗଳ୍ପ-ଅନୁରାଗୀ ପାଠକ-ପାଠିକାଙ୍କ ଶ୍ରଦ୍ଧା ଓ ସଂପ୍ରୀତି ଲାଭ କରିବ ବୋଲି ମୁଁ ଆଶାବାନ୍ ।

**ଶତ୍ରୁଘ୍ନ ପାଣ୍ଡବ**

# ମିମିର ସାହିତ୍ୟ ଶିକ୍ଷା

ଜୀବନବାବୁଙ୍କ ମନରେ ଭାରି କଷ୍ଟ । ତାଙ୍କର ଏକମାତ୍ର ସନ୍ତାନ, କନ୍ୟା ମିମି ହୋଇଛି ଭାରି ବୋକା । ପଢ଼ାରେ ତାର ମନ ନାହିଁ, ବହି ଧରି ବସିଲେ ଢୁଳାଏ । କିଛି ପ୍ରଶ୍ନ ପଚାରିଲେ ବୋକାଙ୍କ ଭଳି ଚାହିଁ ରହିଥାଏ ।

ଅଧଘଣ୍ଟାଏ ଧରି ବକର ବକର ହୋଇ ଜୀବନବାବୁ ପ୍ରାଣପଣେ ଚେଷ୍ଟା କରୁଛନ୍ତି ବୁଝାଇବାକୁ - ''ଏ ହୃଦୟ ମୋର ଢ଼ାଳି ଦେଲି ଆଜି ତୁମରି ପାଦେ ହେ ନାଥ ।'' ମିମି ପାଟିଟାକୁ ମେଲା କରି ବଡ଼ ବଡ଼ ଆଖିରେ ସବୁ ଯେମିତି ଗିଳିଯାଉଛି, ସବୁ ଯେମିତି ବୁଝିପକାଉଛି ଏମିତି ଭାବରେ ଚାହିଁ ରହିଛି । ମଝିରେ ମଝିରେ ତାର କୁଞ୍ଚୁକୁଞ୍ଚିଆ ବାଳଗୁଡିକ ପବନରେ ଉଡି ଆସି ଆଖି ଉପରେ ପଡିବାରୁ ମିମି ବିରକ୍ତ ହୋଇ ସେଗୁଡିକ ଉପରକୁ ଠେଲିଦେଇ ପୁଣି ସେମିତି ଚାହିଁରହୁଛି, ସତେ ଯେପରି ବାଳଗୁଡିକ ତାର ବୁଝିବାରେ ବ୍ୟାଘାତ ଜନ୍ମାଇବାରୁ ସେ ଭାରି ବିରକ୍ତ । ମିମିର ଭାବ ଦେଖି ଜୀବନବାବୁ ଅଧିକ ଉତ୍ସାହରେ ବୁଝାଇ ଚାଲିଛନ୍ତି । କିଛି ସମୟ ପରେ ମିମିର ବିସ୍ତାରିତ ବଡ ବଡ ଆଖି ଯୋଡିକ କ୍ରମେ ଛୋଟ ହୋଇଆସିଲା । ପ୍ରାଣପଣେ ସେ ଉପର ପତାକୁ ଟେକି ରଖିବାକୁ ଚେଷ୍ଟାକରୁଚି । ଘଣ୍ଟାଏ ଧରି ଉକ୍ତ ପଦ୍ଦକ୍ତିଟିକୁ ବୁଝାଇବା ପରେ ଜୀବନବାବୁ ମନରେ ସନ୍ତୋଷ ଲାଭକଲେ ଯେ ମିମିକୁ ତାହାର ସରଳାର୍ଥ ଓ ଭାବାର୍ଥ ହୃଦୟଙ୍ଗମ କରାଇ ପାରିଚନ୍ତି । ସନ୍ତୋଷର ହସ ହସି ସେ ଏଥର ପଚାରିଲେ-ବୁଝିଲୁ ମା ?

ମିମି ପୁଣି ଥରେ ମୁଣ୍ଡବାଳ ଟେକିଦେଇ ବାଁ ଆଡୁ ଡାହାଣକୁ ମୁଣ୍ଡକୁ ଯଥା ସମ୍ଭବ ନୁଆଇଁ ମୁହଁରେ ହସ ଫୁଟାଇ ଜଣାଇଲା, ସେ ସବୁ ସମ୍ପୂର୍ଣରୂପେ ହୃଦୟଙ୍ଗମ କରିପାରିଚି; କିନ୍ତୁ ଆଖିରେ ତାର ଭୟ ଫୁଟି ଉଠିଲା । ଘୁମନ୍ତ ଆଖିଯୋଡିକ ଭୟରେ ବଡ ବଡ ହୋଇଗଲା ।

ଜୀବନବାବୁ ରାଗିଯାଇ କହିଲେ, ''ବୁଝିଚୁ ତ ବୋକାଙ୍କ ଭଳି ଚାହିଁ ରହିଚୁ କିଆଁ ? ବୁଝା କଅଣ ବୁଝିଲୁ, ବୁଝା !''

ମିମି ଦୁଇ ଚାରି ଢ଼ୋକ ଛେପ ଗିଳି ଆରମ୍ଭ କଲା,''ନାଥ ବୋଇଲେ ସ୍ୱାମୀ କି ଭଗବାନ୍, ଯିଏ ଆମକୁ ସୁରୁଷ୍ଟି କରିଛନ୍ତି । ସିଏ ଭାରି ଭଲଲୋକ, କାହାରିକୁ କିଛି କହନ୍ତି ନାହିଁ, କାହାରି ଉପରେ ରାଗନ୍ତି ନାହିଁ,ଭା-ଆ-ଆ-ରି ଭଲ ଲୋକ ଜଣେ ।''

''ଛେନାଟା ବୁଝିଚୁ, ବଦମାସ୍ କାହାଁକା । ଘଣ୍ଟାଏ ଧରି ବକର ବକର ହେଲି । ଶେଷରେ କହିଲୁ ଭଗବାନ୍ ଜଣେ ଲୋକ ! ସୃଷ୍ଟି ମୁହଁରେ ପଶୁ ନାହିଁ, କହୁଛି 'ସୁରୁଷ୍ଟି ।' ଆହୁରି ପିଲା ହୋଇଯା ମ ! ଆଠ ବର୍ଷର ଝୁଅ ହେଲାଣି, ପଞ୍ଚମ ଶ୍ରେଣୀରେ ବର୍ଷେ ଫେଲ୍ ହେଲାଣି...ଲାଜ ନାହିଁ ଟିକେ...''

ମିମି ଭୟରେ ପଛକୁ ଘୁଞ୍ଚିଯାଇ କହିଲା,''ନା, ନା, ଭଗବାନ୍ ଜଣେ....ଭଗବାନ୍ ଜଣେ..''

''କଅଣ ଭଗବାନ୍ ଜଣେ ?'' ଜୀବନ ବାବୁ ସଗର୍ଜନେ ପଚାରିଲେ ।

ଦୋହରାଇ ତେହେରାଇ ମିମି ମନେ ମନେ ନିଜେ ନିଜକୁ ପଚାରିଲା, ଭଗବାନ୍ କଅଣ ? ବାପା କଅଣ କହିଲେଟି ? ଭଗବାନ୍ କଅଣ ? ଏହି ସମୟରେ ମିମିର ଗେଲବସର ଝିଅ ଶଙ୍କି ଦୌଡି ଆସି ମିମିର କୋଳକୁ ଚଢ଼ିଯାଇ କହିଲା-ମ୍ୟାଉଁ, ମ୍ୟାଉଁ ।

ମିମିର ପାଟିରେ ପଶିଗଲା, ଭଗବାନ୍ ଜଣେ ମ୍ୟାଉଁ ।

ଜୀବନ ବାବୁଙ୍କର ଭୟଙ୍କର କ୍ରୋଧ ଜାତହେଲା । ସେ ଶଙ୍କିର ବେକକୁ ଧରି ଛାଟି ଦେଇ, ରୋଷେଇଶାଳ ଆଡକୁ ଚାହିଁ ପାଟି କରି କହିଲେ, ''ପଚାଶ ଥର କହିଲିଣି ଯେ ଘରେ ବିରାଡି ଫିରାଡି ରଖନା, ପଢ଼ାରେ ଗୋଳମାଳ ହବ...ଦିନରାତି ସେଇ ବିରାଡି ସାଙ୍ଗରେ ଖେଳ ! ଇସ୍କୁଲରୁ ଆସି ଘରେ ପାଦ ଦେବା ମାତ୍ରକେ ବହିପତ୍ର ଫୋପାଡିଦେଇ ଆଗେ ଖୋଜା ହେବ ଶଙ୍କି କାହିଁ ! ହ୍ୟାପ, ମାତ୍ର ଗୁଣେ ଦୁହିତା ହୋଇଚି ! ମଲୁ ନାହିଁ, ଦେଖିଲୁ ଶଶଧର ବାବୁଙ୍କ ଝିଅକୁ, କେମିତି ପାଟି କରି ପଢୁଚି । ଦେଖିଲୁ ଲିଙ୍ଗରାଜ ବାବୁଙ୍କ ଝିଅକୁ, କେମିତି କ୍ଲାସରେ ପ୍ରଥମ ହେଉଚି । ମୋରି କପାଳକୁ ତୁ ଆସିଲୁ । ଏ ବଂଶରେ କେହି ଗୋଟାଏ ହେବେନାହିଁ, କେହି ଗୋଟାଏ ନାଁ ରଖିବେ ନାହିଁ । କପାଳ, କପାଳ ! ହ୍ୟାପ୍, ଆର ପରୀକ୍ଷାରେ ଖାତାସବୁ ଚିରି ଡଙ୍ଗା କରି ଭସେଇ ଦେଇ ଚାଲିଆସିଲା । ମଲୁ ନାହିଁ ଯା' ତୁ...''

ଗତ କ୍ଲାସଉଠା ପରୀକ୍ଷାରେ ପରୀକ୍ଷାଦେବାକୁ ମିମି ଇସ୍କୁଲରେ ବସିଚି, ଏହି ସମୟରେ ଘୋର ବର୍ଷା ହେଲା । ପାଣି ଇସ୍କୁଲର ବାରନ୍ଦା ଟପି ଘରର ଦୁଆର ମୁହଁ ପର୍ଯ୍ୟନ୍ତ ଚାଲିଆସିଲା । ମିମିର ମନ ଆଉ ଠିକ୍ ରହିଲାନାହିଁ । ପରୀକ୍ଷା ଦେଉଚି ସେ ଏ କଥା ଏକଦମ୍ ଭୁଲିଗଲା । ସେ ଧୀରେ ଧୀରେ ପରୀକ୍ଷା ଘରୁ ବାହାରି ଚାଲିଆସିଲା । ପରୀକ୍ଷା ଖାତା ପତର ପତର କରି ଚିରି ଡଙ୍ଗାକରି ଭସେଇଦେଲା । ଡଙ୍ଗାଗୁଡିକ ଥରି ଥରି ଭାସିଗଲେ । ମିମି ମହା ତୃପ୍ତିର ସହିତ ଡଙ୍ଗାଗୁଡିକୁ ଚାହିଁ ବର୍ଷାରେ ଭିଜି ଘରକୁ ଫେରିଆସିଲା । ଘରକୁ ଆସି ତାର ମନେପଡିଲା ବାପାଙ୍କ କଥା । ବାପାଙ୍କ ଭୟରେ ତାର ଜର ଆସିଲା । ସେ ଜର ଛାଡିବାକୁ ଲାଗିଲା ଅନେକ ଦିନ । ମିମି ସେଥର ଫେଲ୍ ହେଲା ସତ; କିନ୍ତୁ ତାର ଜର ଯୋଗୁଁ ସେଥର ସେ ତ୍ରାହି ପାଇଗଲା । ପରେ ଜୀବନ ବାବୁ ସବୁ ଜାଣିପାରି ଭାରି ରାଗିଯାଇ ବାଡେଇଥିଲେ । ଆଜି ସେଇ କଥା ମନେପଡିଯିବାରୁ ତାଙ୍କର ରାଗ ଦ୍ୱିଗୁଣିତ ହେଲା । ଠାଏ କରି ଗୋଟାଏ ଚଟକଣି ଲଗେଇ ଦେଇ ସେ କହିଲେ,'' ତୁ ନ ବୁଝାଇଲେ ତୋତେ ଛାଡୁନାହିଁ ମୁଁ । ଯେତେ ରାତି ହଉ । ଆଜି ତୋର ଦିନେ କି ମୋର ଦିନେ । ଖାଇବା ଆଜି ବନ୍ଦ । ବୁଝା, ବୁଝା, ବୁଝା ମ, କାନ୍ଦଣା ଥାଉ ।''

ରୋଷେଇଶାଳୁ ପାଟି ଶୁଭିଲା, ''ତୁମେ ଝିଅକୁ ପାଠ ପଢ଼େଇବ ନାହିଁ ଆଉ । ଯେତେବେଳେ ପଢ଼େଇ ବସିଲ ମାଡ ଛଡା ଆଉ କିଛି ନାହିଁ । ଆମେ କଅଣ ଝିଅକୁ ଖାଇବାକୁ ପିନ୍ଧିବାକୁ ଦେଉଚୁ ଯେ ତାଠୁଁ ଏତେ ଆଶା କରିବା ? ପଢ଼େଇ ତ ଜାଣ ନାହିଁ....''

ଜୀବନ ବାବୁ ଉତ୍‌କ୍ଷିପ୍ତ ହୋଇ କହିଲେ, ''କଅଣ ହେଲା, ମୁଁ ପଢ଼େଇ ଜାଣେ ନାହିଁ ?

ଘଣ୍ଟାଏ ଧରି ଟିକିନିଖି ବୁଝେଇଲି । ସବୁ ବୁଝିଯିବାଭଳି ମୁଣ୍ଡ ଟୁଙ୍ଗାରିଲା । ମୁଁ ଜାଣେ ନାହିଁ ନା, ମାତୃଗୁଣେ ଦୁହିତା ହୋଇଚି ମ ! ଶ୍ୟ, ଗେହ୍ଲା କରି କରି ଝୁଅଟାର ମୁଣ୍ଡ ଖାଇସାରିଲଣି ତମେ ।

ରୋଷେଇଶାଳୁ ପୁଣି ଦୃଢ଼କଣ୍ଠରେ ଡାକରା ଆସିଲା, "ହଉ ଥାଉ ଆଜି ସେତିକି । ଆ ମିମି, ଖାଇବୁ ଆ ।"

ମିମି ଆଣ୍ଠୁ ଟେକୁଥିଲା ଉଠିବାକୁ । ଜୀବନ ବାବୁ ଗର୍ଜନ କରି ଉଠିଲେ, "ଖବର୍‌ଦାର, ସେତକ ନ ବୁଝାଇ ତୁ ଆଜି ଯାଇପାରିବୁ ନାହିଁ । ବୁଝା, ଭଗବାନ୍ କଅଣ ? ଏତେ ବୁଝାଇଲି ମୁଁ, ବୁଝା ।"

ସରଳାର୍ଥ ବୁଝାଇବାରେ ଭଗବାନ୍ ଆସି ସବୁ ପ୍ରଥମରୁ ଅଡୁଆ ପୂରାଇଦେବାରୁ ମିମି ଲୁହ ପୋଛି ଭଗବାନ୍‌ଙ୍କୁ ଗାଳିଦେଇ ମନେ ମନେ କହିଲା, ଭଲ ଲୋକ ନା ପୋଡାମୁହାଁଟା, ମୋତେ ବାପାଙ୍କଠୁଁ ଏତେ ମାଡ ଖୋଇଲାଣି । ଏତେ ଅଡୁଆକୁ ନ ଯାଇ ଭଗବାନ୍ କଥାଟାକୁ ବାଦ ଦେଇ ସେ ବୁଝାଇବାକୁ ଯାଉଥିଲା; କିନ୍ତୁ ମନେ ମନେ ପୋଡାମୁହାଁ ଗାଳି ଦେବା ପରେ ତାର ମନେପଡିଗଲା ପୁରୀମନ୍ଦିରରେ ଜଗନ୍ନାଥଙ୍କ କଥା । ଜଗନ୍ନାଥଙ୍କୁ ଦେଖି ସେ ଆଇକୁ କାନେ କାନେ ପଚାରିଥିଲା, "ଆଇ ମ, ଜଗନ୍ନାଥଙ୍କ ମୁହଁ କଅଣ ପୋଡା ?" ନାତୁଣୀର ପ୍ରଶ୍ନରେ ଆଇ ଆଖିରେ ଲୁହ ଝରିପଡିଥିଲା । ସେ ନାତୁଣୀକୁ ଚୁମ୍ବନ ପରେ ଚୁମ୍ବନ ଦେଇ କହିଥିଲେ, "ହଁ, ସେ ପୋଡାମୁହାଁ ଭଗବାନ୍ ।" ସେଇକଥା ମନେ ପଡିଯିବାରୁ ମିମି ଯେପରି ଅନ୍ଧକାର ମଧ୍ୟରେ ଆଲୋକ ପାଇଲା । ଆଖି ତାର ଉଜ୍ଜ୍ୱଳ ହୋଇଉଠିଲା । ଜଗନ୍ନାଥ ଯେପରି ତାର ଆଖି ଆଗରେ ଉଭାହେଲେ । ସେ ଭଲକରି ଥରେ ସେ ଚେହେରା ଦେଖି ନେଇ କହିଲା, "ଭଗବାନ୍ ହେଉଛନ୍ତି ଜଗନ୍ନାଥ," କିନ୍ତୁ ଆଇ କଥା ମନେ ପଡିଯିବାରୁ ମିମିର ଆଖିଯୋଡିକ ଛଳ ଛଳ ହୋଇଗଲା । ସେ ସବୁ ଭୁଲିଯାଇ କହିଲା, "ବାପା ମ, ବାପା, ଆଇ ମୋତେ ଲେଖିଚି ଗାଁରେ ରହି ତାର ମୋ କଥା ମନେପଡି ମନ ଭାରି ଖରାପ ହେଉଚି । ତାକୁ ନେଇ ଆସ ମ ବାପା !"

"ରଖ୍ ତୋ ଆଇ । ହୁଁ, ଭଗବାନ୍ ହେଉଛନ୍ତି ଜଗନ୍ନାଥ । ତାପରେ କଅଣ ହେଲା ?"

ଆଇ-ବିରହବିଧୂରିତ ମନକୁ ପୁଣି ସରଳାର୍ଥକୁ ଫେରାଇ ଆଣିବାକୁ ମିମିର କିଛି ସମୟ ଚାଲିଗଲା । ଉଦ୍‌ଗତ ଅଶ୍ରୁରୋଧ କରି ମିମି କହିଲା, " କବି ଏଠାରେ କହୁଛନ୍ତି, କହୁଛନ୍ତି...କହୁଛନ୍ତି ଯେ... ଆଇ ମ, ଆଇ ଲୋ...!" ମିମି ଏଥର ଆଉ ସମ୍ଭାଳି ନ ପାରି ଭେଁ କରି କାନ୍ଦିପକାଇଲା ।

ଜୀବନବାବୁ ଦୁମ୍ ଦୁମ୍ କରି ତା ପିଠିରେ ଦି'ଟା ନଦି ଦେଇ କହିଲେ, "ଧେତ୍, ମୋ କପାଳରେ , ଦେଖ ଯାକୁ । ଏତେ ବୁଝାଇଲି ଘଣ୍ଟାଏ ଧରି, ସବୁ କୁଆଡେ ଭୁଲିଗଲୁ ? ଇସ୍କୁଲ ମାଷ୍ଟ୍ରେ କାଲି କହୁଥିଲେ ଯେ ମିମି କ୍ଲାସରେ ମୋଟେ ମନ ଦେଉନାହିଁ । ଯେତେ ଅଦ୍ଭୁତ ଉତ୍ତର ଦେଉଛି । ହଇ ଲୋ ହେଏ, ବିପରୀତ ଶବ୍ଦମାନେ କଅଣ ? ବିପରୀତ ଶବ୍ଦମାନେ କଅଣ ବା ? କହୁଛି ନା ସକେଇ ହଉଛି ବେହିୟା । ଲାଜ ନାହିଁ, କାନ୍ଦୁଚି ପୁଣି ! ଛିଃ, ଛିଃ, ମୋ ଝୁଅ ହେଇ ତୁ ଏଇୟା କହିଲୁ ! 'ସୁଖ'ର ବିପରୀତ ଶବ୍ଦ 'ଖସୁ' ! କାନ୍ଦଣା ରଖି କହ ମୁଁ କଅଣ ବୁଝାଇଲି । କବି କହୁଛନ୍ତି ଯେ... ହୁଁ..."

ମିମି ଲୁହ ପୋଛୁ ପୋଛୁ ପୁଣି କହିବାକୁ ଚେଷ୍ଟା କଲା, "କବି କହୁଛନ୍ତି ଯେ..."

ଏତିକି କହିବା ପରେ ସେ ମନେ ମନେ ପୁଣି ନିଜେ ନିଜକୁ ପଚାରିଲା- କବି କିଏ ମ ? ସେ କାହିଁକି କଅଣ କହିବାକୁ ଗଲେଟି ? ସବୁ ତାର ପୁଣି ଗୋଳମାଳ ହୋଇଗଲା । ଆର ପାଖ ଘରେ ଶଙ୍କି ମ୍ୟାଉଁ ମ୍ୟାଉଁ କରି ଉଚ୍ଛନ୍ନ ଭାବରେ ଡାକିଲାଣି । ଇୟାଡେ କବି କିଏ ଆଉ ସେ କଅଣ କହିଲେ ଓ କାହିଁକି କହିବାକୁ ଗଲେ ମିମିର ମନେପଡୁନାହିଁ । ମନେ ମନେ ମିମି ଶଙ୍କିକୁ ତାନେ ଗାଳି ଦେବାକୁ ଲାଗିଲା, ପୋଡାମୁହିଁ, ପଢ଼ା ସବୁ, ଦଉଚି ତତେ ଟାଙ୍କେ ଛେଚି । ପଢ଼ା କଅଣ ସରିବ ଆଜି ସତେ ? ହେ ମହାପ୍ରଭୁ, ହେ ଜଗନ୍ନାଥ, ଏ କବି ପୋଡାମୁହାଁ କଅଣ କହିଚି ମନେପକେଇଦିଅ ।

ଏହି ସମୟରେ ବାହାରେ କିଏ ଡାକିଲା-ବାବୁ ଅଛନ୍ତି ? ଜୀବନ ବାବୁ ଚିଡି ଉଠି ଉତ୍ତର ଦେଲେ,'' ନାଇଁ ବାବୁ ନାହାନ୍ତି ।'' ବାହାରୁ ଉତ୍ତର ଆସିଲା, ''ବଡ ବାବୁ ଡାକୁଚନ୍ତି, ଶୀଘ୍ର ଆସନ୍ତୁ କଚେରୀ- କଅଣ ଜରୁରି କାମ ଅଛି ।''

ଜୀବନ ବାବୁ ବିରକ୍ତ ହୋଇ କମିଜ ପିନ୍ଧୁ ପିନ୍ଧୁ କହିଲେ,''ମୁଁ ଯାଉଚି, ଅଧଘଣ୍ଟା ଭିତରେ ଫେରିବି । ମୁଁ ଯାହା ବୁଝାଇଥିଲି ତାହା ଲେଖିଥିବୁ, ଆଉ ଦ୍ୱିତୀୟ ଉଦାହରଣମାଳାର ପାଞ୍ଚ ନମ୍ବର ଅଙ୍କଟି କଷି ରଖିଥିବୁ । ଯଦି ନ ହେଇଚି ଏତିକି ତ ଦେଖିବୁ ମୁଁ ତୋର କି ଅବସ୍ଥା କରିବି ।''

ଜୀବନ ବାବୁ ତରତର ହୋଇ ଚାଲିଗଲେ । କଚେରୀରେ ବନ୍ଧ୍ୱି ସଂକ୍ରାନ୍ତ ଜରୁରି କାମ କରୁ କରୁ ତାଙ୍କର ଘଣ୍ଟାଏ ଲାଗିଗଲା । ଘରର ଦାଣ୍ଡ ଦୁଆର ମୁହଁପାଖରେ ଧୀରେ ପାଦରୁ ଜୋତା କାଢ଼ି, ହାତରେ ଧରି, ଝରକାବାଟେ ଉଙ୍କି ମାରି ଦେଖିଲେ ମିମି ଶୋଇଛି ନା ପାଠ ପଢୁଚି । ଝରକା ବାଟେ ଯାହା ଦେଖିଲେ, ସେଥିରୁ ସେ କିଛି ବୁଝିପାରିଲେ ନାହିଁ । ତାଙ୍କର ବଡ ଭାଇ ଓ ସାନ ଭାଇ ଦୁହେଁ ଖାତା ଉପରେ ଲଇଁ ପଡି କଅଣ ଲେଖିଚାଲିଛନ୍ତି । ଅନେକ ଲେଖିସାରିଲେଣି । ଅନେକ କାଗଜ ଚିରା ହୋଇ ତଳେ ପଡିଚି । ମିମି ଦୁଇଗୋଡ ଲମ୍ବେଇ ଦେଇ ଶଙ୍କିକୁ କୋଳରେ ବସାଇ ତାକୁ ଥାପୁଡାଇ ଥାପୁଡାଇ ଗୀତ ଗାଉଚି, 'ଧୋରେ ବାୟା ଧୋ, ଯେଉଁ କିଆରୀରେ ଗହଳ ମାଣ୍ଡିଆ ସେଇ କିଆରୀରେ ଶୋ ।'

ଘର ଭିତରକୁ ପଶି ଆସି ଜୀବନ ବାବୁ ପଚାରିଲେ- ମିମି ତୋର ଏଇ ପଢ଼ା ହଉଚି ?

ମିମି ଚମକିପଡି ବାପାକୁ ଚାହିଁ ଶଙ୍କିକୁ ଛାଡିଦେଲା । ଭୟରେ ମୁହଁ ତାର ଏତେ ଟିକିଏ ହୋଇଗଲା, କଳାକାଠ ପଡିଗଲା ।

''ଇୟେ କଅଣ ହେଉଚି ଭାଇ ?'' ଜୀବନ ବାବୁ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

''ଅଙ୍କ କଷୁଚୁ ଆମେ । ଛି, ଛି, ଏଇ ଟିକେ ପିଲାକୁ ଏମିତିକା ଅଙ୍କ ? 'ସରଳ ଗଣିତ' ଇୟା ନା ? ଲେଖକ ନିଜର ପାଣ୍ଡିତ୍ୟ ଦେଖେଇଚି ନା ପିଲାର ବୁଦ୍ଧି କେତେ ବିବେଚନା କରିଚି ଟିକିଏ ? ଦେଇତ ଗଲୁ ଅଙ୍କ, କଲୁ ତୁ ନିଜେ ଏକୁ ?''

ଜୀବନ ବାବୁ ଅଙ୍କ ଖଣ୍ଡକ ପଢ଼ିଲେ...ମୁଁ ମୋ ଘରୁ ତେଲାଙ୍ଗର ଗୋଟିଏ ସଭାକୁ ପାଦରେ ଚାଲି ଯିବି । ସଭାରେ ଠିକ୍ ସନ୍ଧ୍ୟା ୭ଟା ବେଳେ ପହଞ୍ଚିବାର କଥା । ମୁଁ ଯଦି ଘଣ୍ଟାକୁ ୩ ମାଇଲ ବେଗରେ ଯାଏଁ ତେବେ ଠିକ୍ ସମୟର ଅଧ ଘଣ୍ଟାଏ ଆଗରୁ ପହଞ୍ଚିବି । ଯଦି ଘଣ୍ଟାକୁ ୨ ମାଇଲ ବେଗରେ ଯାଏ ତେବେ ଠିକ୍ ସମୟର ଘଣ୍ଟାକ ପରେ ପହଞ୍ଚିବି । ତେବେ ମୋ ଘରୁ ସଭାସ୍ଥାନ କେତେ ଦୂର ? ଅଙ୍କଟି ପଢ଼ି ଜୀବନ ବାବୁ ବଙ୍କେଇ ତେଢ଼େଇ ଦୁଇ ତିନି ଥର ଅଙ୍କଟିକୁ ଚାହିଁଲେ । କେମିତି

ଭାବରେ ଆରମ୍ଭ କରିବେ କିଛି ବୁଝି ପାରିଲେ ନାହିଁ ।

ବଡଭାଇ କହିଲେ, ''ଆରେ ଅଙ୍କତ କଷିବା ଦୂରେ ଥାଉ, ମିମି ଆଗେ ପଚାରି ବସିଲା ସଭା କଅଣ ? ସେଠାକୁ ନ ଗଲେ କଅଣ ଚଳନ୍ତା ନାହିଁ ? ବୁଝା, ସଭା କଅଣ ବୁଝା । କୌଣସି ମତେ ସଭା କଅଣ ବୁଝାଇଲୁ ଆମେ । ମିମି ପୁଣି ପଚାରିଲା, ହଉ ହେଲା, ଟିକିଏ ଆଗରୁ ବା ପରେ ପହଞ୍ଚିଲେ ଦୋଷ କଅଣ ଯେ ଏଣୁ ଭାଲେଣି କାହିଁକି ? ଏ ସବୁ ଗୋଳମାଳିଆ ପ୍ରଶ୍ନର ଉତ୍ତର ଦେଉଁ ଦେଉଁ ତ ଗଲା ଅଧଘଣ୍ଟାଏ । ତାପରେ ଅଙ୍କ ଧରି ତ ଆମେ ଦୁହେଁ ବସିଚୁ । ମିମିର ଦେଢ଼ ଖଣ୍ଡ ଖାତା ଶେଷ ହେବାକୁ ବସିଚି ।

ସମସ୍ତେ ହସିଲେ । ଜୀବନ ବାବୁ କହିଲେ, ''ହଉ ଥାଉ, ଅଙ୍କ ଥାଉ । ମିମି, ଏ ମିମି, ସାହିତ୍ୟ ହେଇଚି ?''

''ନା, ମୁଁ ଅଙ୍କ କରୁଥିଲି । ବଡବାପା ଓ ସାନବାପା ମୋତେ ଖାଇବାକୁ ଡାକିଲେ । ମୁଁ କହିଲି-ପଢ଼ା ନ ସାରି ଯିବିନାହିଁ-ପଢ଼ା ନ କଲେ ଭଗବାନ୍ ରାଗିବେ । ସେଇଠୁ ସେମାନେ ଅଙ୍କ ଦେଖି କଷିବାକୁ ବସିଲେ, ମୁଁ.....''

''ତୁ ଶଙ୍କିକୁ ଶୋଇଦେବାକୁ ବସିଲୁ ! ଯାଃ, ତୋ ଦେଲ ହବ ନାହିଁ; କିନ୍ତୁ ତୋତେ ଆଜି ନ ବୁଝାଇ ମୁଁ ଛାଡ଼ିବି ନାହିଁ । କହ, 'ଏ ହୃଦୟ ମୋର ଢ଼ାଳି ଦେଲି ଆଜି ତୁମରି ପାଦେ ହେ ନାଥ' ଏହାର ସରଳାର୍ଥ କହ ।''

ମିମି ଏଥର ସାହସ ଭରି କହିଲା, ''ନାଥ ବୋଇଲେ ଜଗନ୍ନାଥ, ଯାହାଙ୍କର ମୁହଁଟି କାଳିଆ, ବଡ଼ ବଡ଼ ଆଖି, ନେସଡ଼ା ମୁହଁ... ।''

ଜୀବନ ବାବୁ କଟମଟ କରି ଚାହିଁଲେ ମିମିକୁ । କିନ୍ତୁ ବଡ଼ଭାଇ ଥିବାରୁ ସେ ତାଙ୍କ ଭୟରେ ମିମିକୁ କିଛି କହି ପାରିଲେ ନାହିଁ ।

କିନ୍ତୁ ବାପାଙ୍କର ବଡ଼ ବଡ଼ ଆଖି ଦେଖି ମିମିର ମୁହଁଟି ଶୁଖିଗଲା । ସବୁ ଉତ୍ସାହ ତାର ମରିଗଲା ।

ବଡ଼ଭାଇ ବୁଝିପାରି କହିଲେ, ''ହଁ ଲୋ ମା, ତୁ ଠିକ୍ କହିଚୁ । ବାଃ, ବେଶ ସୁନ୍ଦର ବୁଝିଚି । ହଁ, ତା ପରେ-''

''ତା ପରେ, ସେଇ ଜଗନ୍ନାଥଙ୍କୁ ଚାହିଁ କବି ବୋଲି ଜଣେ ଲୋକ କହିଲେ, କହିଲେ....''

ହଁ, ହଁ, କହିଲେ.... ବଡ଼ଭାଇ ଉତ୍ସାହ ଦେଇ ପଚାରିଲେ । ମିମି ସାହସ ପାଇ ତାର ବଡ଼ବାପାର କାନେ କାନେ କହିଲା, ''ଜଗନ୍ନାଥଙ୍କର ପାଦ ନାହିଁ ମୁଁ ଦେଖିଚି । ଆଉ ହୃଦୟଟାକୁ କବିଟା ଢାଳିଦେଲା । ତା ବାପା ଗାଳିଦେଲେ । ଆଚ୍ଛା ବଡ଼ବାପା, ହୃଦୟ ଢାଳିଲା କେମିତି ?''

ବଡ଼ଭାଇ ମିମିକୁ କୋଳକୁ ଆଉଜାଇ ନେଇ କହିଲେ, ''ମା, ତୋ ପଢ଼ା ସେତିକି ଥାଉ ଆଜି । ତୁ ଯାହା ପଚାରିଲୁ ତୋତେ ସେ କଥା କେହି ବୁଝାଇ ଦେଇ ପାରିବେ ନାହିଁ । ହୃଦୟକୁ କେମିତି ଢ଼ାଳନ୍ତି ସେ କଥା ମୁଁ ଏପର୍ଯ୍ୟନ୍ତ ବୁଝିପାରିନାହିଁ, ତୋତେ କଅଣ ବୁଝାଇବି ! ଆଉ ସେ କବିଟା ବୁଝିଚି ବୋଲି ମୁଁ ଭାବୁନାହିଁ ।''

# ମହାପୁରୁଷ ବାଗ୍

ଘଟନାଟି ଘଟିଥିଲା ମହାପୁରୁଷ ବାଗ ଉଦ୍‌ଘାଟିତ ହେବାର କିଛିଦିନ ପରେ । ଉଦ୍‌ଘାଟନ ବେଳେ ନେତା ମହାଶୟ ଆବେଗଭରା କଣ୍ଠରେ ବକ୍ତୃତା ଦେଇଥିଲେ, ଏ ଉଦ୍ୟାନ ଜାତି-ଧର୍ମ-ଆୟ-ପଦବୀ ନିର୍ବିଶେଷରେ ସମସ୍ତଙ୍କ ପାଇଁ ଉନ୍ମୁକ୍ତ । ଏଠି ଉଚ୍ଚ-ନୀଚ ଭେଦାଭେଦ ନାହିଁ; ଅପିତ ଏଠି ମେହେନ୍ତରର ମଧ ଏକା ବେଞ୍ଚରେ ଉଚ୍ଚପଦସ୍ଥ କର୍ମଚାରୀ ସହିତ ବସିବାର ଅଧିକାର ଅଛି...ଇତ୍ୟାଦି, ଇତ୍ୟାଦି । ବକ୍ତୃତାଟାକୁ ହାତୁଡ଼ି ମାରି ସମସ୍ତଙ୍କ ମୁଣ୍ଡରେ ଢୁକାଇଦେବା ପାଇଁ ସେ ବହୁବାର ବଜ୍ରମୁଷ୍ଟିରେ ଟେବୁଲ ବାଡ଼େଇଥିଲେ ।

କିନ୍ତୁ କଥା କଥା । ବକ୍ତୃତା ବକ୍ତୃତା । ଆଦର୍ଶ ଆଦର୍ଶ । ଯେମିତି ଅଦାଲତରେ ସାକ୍ଷୀ ସମ୍ପୂର୍ଣ୍ଣ ସତ କଥା କହିବି ବୋଲି ଶପଥ ନେଇ ମଧ ମିଛ ଅନର୍ଗଳ କହିଯାଏ ଏବଂ ପଚାରିଲେ କୁହେ, ଆଜ୍ଞା, ସତ କହିଲେ କଅଣ ଦୁନିଆ ଚଳିବ ନା କେହି ବଞ୍ଚିପାରିବେ; କିମ୍ବା, ଗୋଟାଏ ପ୍ରକାର ନିୟମ ତିଆରି ହେଲେ ମଧ କୁହାଯାଏ ନିୟମ ଅକ୍ଷରେ ଅକ୍ଷରେ ପାଳିଲେ କାମ ଅଚଳ ହୋଇଯିବ -ସେମିତି ମହାପୁରୁଷ ବାଗ୍‌ର ଆଦର୍ଶ, ଆଦର୍ଶରେ ହିଁ ରହିଗଲା ।

କାର୍ଯ୍ୟତଃ ଏଠାରେ କେବଳ ସେଇମାନେ ପ୍ରବେଶ କରିବାର ଅଧିକାର ପାଇଲେ, ଯେଉଁମାନଙ୍କର ମାସିକ ଆୟ ଚାରିଅଙ୍କବିଶିଷ୍ଟ ରାଶିରୁ ଊଣା ନୁହେଁ, କିମ୍ବା ଯେଉଁମାନେ ଖୁବ୍ ଉଚ୍ଚପଦସ୍ଥ କର୍ମଚାରୀ, କିମ୍ବା ବିଧାନସଭା ଆଦିର ସଭ୍ୟ । ସେମାନଙ୍କର ପାଖାପାଖି ଲୋକେ ଯିବାକୁ ଭୟ କଲେ । ଅନ୍ୟ ପରେ କା କଥା । ତା'ଛଡ଼ା ଉଦ୍ୟାନର ମହାର୍ଘ ପରିବେଶ, ଉଦ୍ୟାନ ଭିତରେ ଥିବା ନୃତ୍ୟଶାଳା, ନୃତ୍ୟଶାଳାରେ ମହାର୍ଘ ପରିଚ୍ଛଦଧାରୀ ପାନରତ ନରନାରୀ, ପାନ ପରେ ନଗ୍ନ ଉଚ୍ଛୃଙ୍ଖଳତା, ମଖମଲ ଭଳି ଘାସ, ନାନା ବର୍ଣ୍ଣର ଝରଣା ଇତ୍ୟାଦି ପାଇଁ ସାଧାରଣ ଲୋକେ କେବଳ ଆର୍ଥିକ ଦୃଷ୍ଟିରୁ ନୁହଁ, ନୈତିକ ଦୃଷ୍ଟିରୁ ମଧ ଭୟ କଲେ ମହାପୁରୁଷ ବାଗ୍ ଭିତରକୁ ଯିବାପାଇଁ ।

କିନ୍ତୁ ଯେହେତୁ ସମ୍ମାନିତ ବ୍ୟକ୍ତିମାନେ ମହାପୁରୁଷ ବାଗ୍‌କୁ ଯାଆନ୍ତି, ତେଣୁ ସାଧାରଣ ଲୋକଙ୍କର ଧାରଣା ଜାତହେଲା, ମହାପୁରୁଷ ବାଗ୍‌କୁ ପ୍ରବେଶ କରିପାରିଲେ ସେମାନେ ସମ୍ମାନିତ ହେବେ । 'ମୁନୀନାଞ୍ଚ ମତିଭ୍ରମ' । ଅତଏବ ଯାହାର ମତିଭ୍ରମ ହୁଏ, ସେ ମୁନି-ଏହା ଅଯୌକ୍ତିକ ହେଲେ ମଧ, ଅନେକ କ୍ଷେତ୍ରରେ ଓଲଟାଟା, ସର୍ପରେ ରଜ୍ଜୁଭ୍ରମ ଭଳି, ସତ୍ୟ ବୋଲି ଧାରଣା ଜନ୍ମେ । ସେଇ ଭ୍ରମରେ ପଡ଼ି ଅନେକ ମହାପୁରୁଷ ବାଗ୍‌ରେ ପ୍ରବେଶ କରିବାର ଯୋଗ୍ୟତା ହାସଲ କରିବାପାଇଁ ସସ୍ତ୍ରୀକ ମଦ୍ୟପାନ କରିବା, ଅବାଧ ପ୍ରେମ କରିବା, ତଥାକଥିତ ବଡ଼ ବଡ଼ ଲୋକମାନଙ୍କୁ ନିମନ୍ତ୍ରଣ କରି ଖୁଆଇବା, ଅପେକ୍ଷାକୃତ ଦରିଦ୍ର ବନ୍ଧୁବାନ୍ଧବମାନଙ୍କ ସଂସର୍ଗ ତ୍ୟାଗକରିବା ଇତ୍ୟାଦି ଅଭ୍ୟାସ

କରିବାକୁ ଲାଗିଲେଣି । ମହାପୁରୁଷ ବାଗ୍‌ରେ ପ୍ରବେଶଟାଇ ହେଲା କାମ୍ୟ । ସେ ଯେକୌଣସି ପ୍ରକାରରେ ହେଉ । ତା' ସାଙ୍ଗକୁ କିଛି କିଛି ବଡ଼ ବଡ଼ କଥା ଓ ସେ କଥା କହିଲାବେଳେ ଆବେଗ ପ୍ରକାଶ କରିବାର କାଇଦା ହାସଲ କରିପାରିଲେ ତ ମଣିକାଞ୍ଚନ ସଂଯୋଗ ! ସବୁ ଅସାଧୁତା ସଫଳତାର ସହ ଘୋଡ଼େଇ ହୋଇଯିବ । ଖାଲି ଏତିକି କଷ୍ଟ କରିବାକୁ ପଡ଼ିବ ଯେ, ବକ୍ତୃତା ଦେଲା ପରେ ଜଣେ ଅତି ମଳିମୁଣ୍ଡିଆ ଦେଖି ତା କାନ୍ଧରେ ହାତ ପକାଇଦେବାକୁ ପଡ଼ିବ; କିନ୍ତୁ ସେ କଷ୍ଟ କେତେ କ୍ଷଣ ! ଫୋଟୋ ଉଠାଇବାକୁ ଯେତେ ସମୟ ଲାଗେ । ଫୋଟୋଗ୍ରାଫର ତ ପ୍ରସ୍ତୁତ ଥିବ ।

କିନ୍ତୁ ଆମ ରାମାରାଓ ସେପରି କୌଣସି ଭ୍ରମରେ ପଡ଼ିନଥିଲେ । ତାଙ୍କ ଭ୍ରମ ଜାତ ହେଲା ନିଛକ ବୋକାମିରୁ । ମହାପୁରୁଷ ବାଗ୍ ଉଦ୍‌ଘାଟନବେଳେ ନେତା ମହାଶୟ ଯେଉଁ ବକ୍ତୃତା ଦେଇଥିଲେ, ସେ ତାକୁ ଓଲଟା ବୁଝିଲେ; ଅର୍ଥାତ୍ ତାହା ଆନ୍ତରିକ ବୋଲି ଭାବିଲେ । ରାମାରାଓଙ୍କର ଦୁର୍ଭାଗ୍ୟକୁ (ସେତେବେଳେ ସେ ଅବଶ୍ୟ ସୌଭାଗ୍ୟ ମଣିଥିଲେ) ବକ୍ତୃତା ପରେ ନେତା ମହାଶୟ ତାଙ୍କ କାନ୍ଧରେ ହାତ ରଖି ହସି କଥା କହିଥିଲେ ଏବଂ ସେ ଫୋଟୋ ସବୁ ଖବରକାଗଜରେ ବାହାରିଯାଇଥିଲା । ପ୍ରାୟତଃ ଦେଖାଯାଏ ବାହାରକୁ ଯା ସତ୍ୟ ବା ମିଥ୍ୟା ବୋଲି ଦିଶେ, ପ୍ରକୃତରେ କଥାଟା ଠିକ୍ ତା'ର ଓଲଟା । ତାଙ୍କର ସହକର୍ମୀ ବନ୍ଧୁମାନେ ତାଙ୍କୁ ନେତାଙ୍କବକ୍ତୃତାରେ ନିହାତି ଜଟିଳ ସତ୍ୟଟା ବୁଝାଇବାକୁ ଯେତେ ଚେଷ୍ଟା କଲେ ମଧ ସେ ବାହାରର ସରଳ ସତ୍ୟଟାକୁ ହିଁ ଗ୍ରହଣ କଲେ ।

ରାମାରାଓ ଦେଖିବାକୁ ସୁନ୍ଦର । ସେ କବି-ପ୍ରକୃତିର । କାମ କରୁ କରୁ ନିଜ ତିଆରି ଗୀତସବୁ ଗାଇବା ତାଙ୍କର ଅଭ୍ୟାସ । ସୁନ୍ଦର ଗାଇପାରନ୍ତି ସେ । କାମରୁ ଫୁରସତ୍ ପାଇବା ମାତ୍ରକେ ସେ ଗୀତ ରଚନା କରିବାକୁ ବସିଯାଆନ୍ତି ଓ ଦଦରା ହାରମୋନିଅମ୍‌ରେ ସୁର ସଂଯୋଗ କରନ୍ତି । ଗୀତଗୁଡ଼ିକ ତେଲୁଗୁରେ । ତା'ର ଅର୍ଥ କିନ୍ତୁ ବୁଝି ନ ପାରିଲେ ମଧ ମୁଗ୍‌ଧ ହୋଇଯିବା ଭଳି ସୁର ସେସବୁ ଗୀତର । ଜଣକୁ ସେ ଗୋଟିଏ ଗୀତର ଅର୍ଥ ବୁଝାଉଥିବାର ମୁଁ ଶୁଣିଛି, ମୁଁ ସମସ୍ତଙ୍କ ଗୋଡ଼ ସେବା କରିବାର, ହେ ଜଗନ୍ନାଥ, ତୁମର ଗୋଡ଼ ନଥିବାର ସତ୍‌ତ କି ? ରାମାରାଓଙ୍କ ସ୍ତ୍ରୀ ସୁନ୍ଦରୀ । ସେ ମଧ ରାମାରାଓଙ୍କ ସହିତ ତନ୍ମୟ ହୋଇ ଗୀତ ଗାଆନ୍ତି ଚାରୁପାଣି ରାନ୍ଧୁ ରାନ୍ଧୁ ।

ମହାପୁରୁଷ ବାଗ୍ ଉଦ୍‌ଘାଟିତ ହେଲା ପରେ ରାମାରାଓ ଓ ତାଙ୍କ ସ୍ତ୍ରୀ ଦୁହିଁଙ୍କ ଇଚ୍ଛା ହେଲା ସେ ପ୍ରମୋଦୋଦ୍ୟାନକୁ ଯିବାପାଇଁ । ସମ୍ମାନିତ ହେବା ପାଇଁ ନୁହେଁ, ନେତା ମହାଶୟଙ୍କ କଥାରେ ଅନୁପ୍ରାଣିତ ହୋଇ । ଦିନେ ଶନିବାର ଉପରଓଳି ସେମାନେ ବାହାରିଲେ । ରାମାରାଓ ପିନ୍ଧିଲେ ପରିଷ୍କାର ଧୋତି ଓ ପଞ୍ଜାବି, କାନ୍ଧରେ ଚାଦର । ତାଙ୍କ ସ୍ତ୍ରୀ ପିନ୍ଧିଲେ ନାଲି ରଙ୍ଗର ଖଣ୍ଡେ ଶାଢ଼ୀ । ତାଙ୍କର ପଡ଼ୋଶୀ ଓ ବନ୍ଧୁ ରିକ୍‌ସାବାଲା ଗଙ୍ଗାୟା ସେମାନଙ୍କୁ ନେଇଗଲେ ।

ଉଦ୍ୟାନ ଫାଟକ ପାଖରେ ସେତେବେଳେ ମଟରର ଭିଡ଼ । ମଟରରୁ ବାହାରୁଥାଆନ୍ତି ମହାର୍ଘ ପେଣ୍ଟକୋଟ-ପରିହିତ ଓ ମହାର୍ଘ ଝୀନବାସ-ପରିହିତ ନରନାରୀମାନେ । ବାହାରିବା ପରେ ସମସ୍ତେ ଗୋଳେଇ ମିଶେଇ ହେଇ ଯାଉଥାଆନ୍ତି । ପୁରୁଷମାନଙ୍କର ଯୁବକସୁଲଭ ପରିପାଟୀ ଓ ନାରୀମାନଙ୍କ ଅଙ୍ଗପ୍ରସ୍ତୁତିରୁ ସେମାନଙ୍କର ବୟସ କଳନା କରିବା ଭୁଲ ହେବ । ସେମାନଙ୍କୁ ଦେଖିଲେ ଡାର୍‌ଉଇନ୍‌ଙ୍କ ମତ ପ୍ରତି ସ୍ୱତଃ ସମ୍ମାନ ଆସିଯାଏ । 'ହ୍ୟାଲ୍ଲୋ ମିସେସ୍ ପ୍ରକାଶ, ହ୍ୟାଲ୍ଲୋ, ହ୍ୟାଲ୍ଲୋ ମିଷ୍ଟର ଚକ୍ରବର୍ତ୍ତୀ, ହା' ଡୁ ଡୁ' ରେ ବାୟୁମଣ୍ଡଳ ମୁଖରିତ ହୋଇଉଠିଥାଏ । ଦୂରକୁ ଖାଲି ଶୁଭୁଥାଏ, ହାଉ

ହାଉ, ଗାଁ ହାଟ ଗୋଳମାଳ ଭଳି । ସମସ୍ତେ ଦଳ ଦଳ ହୋଇ ପ୍ରବେଶ କରୁଥାଆନ୍ତି ଉଦ୍ୟାନ ଭିତରକୁ । ଦରୱାନ ସଲାମ କରି କରି ହଇରାଣ. ହାତ ତା'ର ଦଥେଇଯିବଣି ନିଷ୍ଚୟ ।

ଏଇ ସମୟରେ ରାମାରାଓ ଓ ତାଙ୍କ ସ୍ତ୍ରୀଙ୍କୁ ନେଇ ଗଙ୍ଗାୟାର ରିକ୍ସା ଫାଟକ ପାଖରେ ଛିଡ଼ାହେଲା । ରାମାରାଓ ମଧ ଅନ୍ୟମାନଙ୍କୁ ଅନୁକରଣ କରି ସ୍ତ୍ରୀଙ୍କ ହାତ ଧରି ରିକ୍ସାରୁ ଓହ୍ଲାଇ ଦେଇ ଫାଟକ ପାଖରେ ଛିଡ଼ାହେଲେ । ଦରୱାନର ହାତ ସଲାମ କରୁ କରୁ ଅଧାରେ ସନ୍ଦିଗ୍ଧ ଭାବରେ ଅଟକିଗଲା ଓ ହଠାତ୍ ପ୍ରସାରିତ ହେଲା ବାଧା ଦେବାର ଭଙ୍ଗୀରେ । ଯିଏ ପେଣ୍ଟକୋଟ ପିନ୍ଧିନାହିଁ ସିଏ କେମିତି ଯିବ ଭିତରକୁ ।

କିନ୍ତୁ ସୌଭାଗ୍ୟବଶତଃ ଠିକ ସମୟରେ ମହାପୁରୁଷ ବାଗ୍ ଉଦ୍‌ଘାଟକ ନେତା ମହାଶୟଙ୍କ ମଟର ଗାଡ଼ି ଥମକି ଛିଡ଼ାହେଲା । ବହୁମୂଲ୍ୟ ମଟର ଆନନ୍ଦରେ ନାଚି ଉଠିଲା । ଓହ୍ଲାଇଲେ ନେତା ଓ ନେତ୍ରୀ । ସମସ୍ତେ ପେଣ୍ଟକୋଟଧାରୀ ପଦବୀ ଓ ଧନୀମାନେ ସାଙ୍ଗରେ ଗୋଡ଼େଇ ଗୋଡ଼େଇ ନେଇଗଲେ ମନ୍ତ୍ରୀଙ୍କୁ ଉଦ୍ୟାନଭିତରକୁ । ସେ ସୁଅରେ ଦରୱାନର କ୍ଷୀଣ ବାଧା ଭାସିଗଲା । ରାମାରାଓ ଓ ତାଙ୍କ ସ୍ତ୍ରୀ ମଧ ଭାସିଗଲେ ଭିତରକୁ ସେ ସୁଅରେ ପଡ଼ି । ଭୟରେ ରାମାରାଓ ଥରେ ମନ୍ତ୍ରୀଙ୍କ ସାମନାକୁ ଲାଗିଯାଇ ହସି ନମସ୍କାର କଲେ । ଇତିମଧ୍ୟରେ ସେ ଦେଖିଲେ, ତାଙ୍କ ସ୍ତ୍ରୀଙ୍କୁ ଭିଡ଼ିନେଇ ଧରି ଚାଲିଛନ୍ତି ପୁଲିସ୍ ସାହେବ ମିଷ୍ଟର ପ୍ରକାଶ । ରାମାରାଓ ତାହା ଦେଖି ମନେ ମନେ ଗର୍ବ ଅନୁଭବ କଲେହେଁ ଭୀତ ଯେ ନ ହେଲେ ତା ନୁହେଁ ।

ସନ୍ଧ୍ୟା ହୋଇଗଲାଣି । ହଠାତ୍ ଜଳିଉଠିଲା ମହାପୁରୁଷ ବାଗ୍‌ରେ ନାନା ବର୍ଣ୍ଣର ବିଜୁଳି ଆଲୁଅ ସବୁ । ଉଦ୍ୟାନର ଫୁଆରା ସବୁ ହଠାତ୍ ଆନନ୍ଦରେ ଲମ୍ଫଦେଲେ ଆକାଶକୁ । ବୃକ୍ଷମାନଙ୍କରେ ଜଳିଉଠିଲା ନାଲି ନେଳି ରଙ୍ଗର ଫୁଲସବୁ । ସେ ବୃକ୍ଷଗୁଡ଼ିକ ମଧ ଅଦ୍ଭୁତ । କିଏ ତିନି କୋଣିଆ, କିଏ ଚାରି କୋଣିଆ, କିଏ ପୁଣି ବାଘ ପରି, କିଏ ହାତୀ ପରି !

ଅଳ୍ପ ସମୟ ପରେ ମହାପୁରୁଷ ବାଗ୍‌ରୁ ନୃତ୍ୟ ଓ ଗାନଶାଳାରୁ ରକ୍ ଏଣ୍ଡ ରୋଲ୍ ବାଦ୍ୟ ବାଜିଉଠିଲା । ସମସ୍ତେ ପାଗଳ ଭଳି ଦୌଡ଼ିଲେ ନୃତ୍ୟଶାଳାକୁ । ନେତା ଓ ନେତ୍ରୀ ମଧ । ରାମାରାଓଙ୍କ ସ୍ତ୍ରୀଙ୍କୁ ଟାଣି ନେଉଥାଆନ୍ତି ମିଷ୍ଟର ପ୍ରକାଶ । ରାମାରାଓଙ୍କ ସ୍ତ୍ରୀ ବ୍ୟାକୁଳ ଭାବରେ ଖୋଜୁଥାଆନ୍ତି ତାଙ୍କ ସ୍ୱାମୀଙ୍କୁ । ଏଣେ ରାମାରାଓଙ୍କୁ ଆକ୍ରମଣ କରିଥାଆନ୍ତି ମିସେସ୍ ସାବିତ୍ରୀ ଧନପତି, ପ୍ରସିଦ୍ଧ ବ୍ୟବସାୟୀ କୋଟିପତି ମିଷ୍ଟର ଧନପତିଙ୍କ ସ୍ତ୍ରୀ । ମିସେସ୍ ଧନପତି ଭାବିଥାଆନ୍ତି ରାମାରାଓ ବିଧାନସଭାର ଜଣେ ସଭ୍ୟ, ଆଉ ମିଷ୍ଟର ପ୍ରକାଶ ଭାବିଥାଆନ୍ତି ରାମାରାଓଙ୍କ ସ୍ତ୍ରୀ ଜଣେ ନାରୀନେତ୍ରୀ ।

ମହାପୁରୁଷ ବାଗ୍‌ର ଫାଟକ ବନ୍ଦ ହୋଇଗଲାଣି ସେତେବେଳକୁ । ନୃତ୍ୟଶାଳାରେ ଆରମ୍ଭ ହୋଇଗଲାଣି ମଦ୍ୟପାନ । ସମବେତ ନର-ନାରୀ ସମସ୍ତେ ମାଛଭଳି ପାନ କରୁଥାଆନ୍ତି ସୁରା । ଆଜି ନେତା-ଇନ୍ଦ୍ର ନିଜେ ନୃତ୍ୟଶାଳାରେ ବିରାଜମାନ ଶଚୀଦେବୀଙ୍କ ସହିତ । ସେମାନଙ୍କର ଉପସ୍ଥିତିର ଉପଯୁକ୍ତ ସମ୍ମାନ ଦେବାପାଇଁ ଆଜି ସମସ୍ତେ ବହୁତ ବହୁତ ପାନ କରିବାକୁ ବାଧ୍ୟ । ଇନ୍ଦ୍ର ଓ ଶଚୀ ମଧ ବହୁତ ବହୁତ ପାନ କଲେ । ରାମାରାଓ ମଧ ମିସେସ୍ ଧନପତିଙ୍କ ବାଧ-ବାଧକତାରେ ପଡ଼ି ପାନକଲେ । ତେଣେ ତାଙ୍କ ସ୍ତ୍ରୀଙ୍କ ମୁଖରେ ମିଷ୍ଟର ପ୍ରକାଶ୍ ମଧ ପେଗ୍‌ପରେ ପେଗ୍ ଢ଼ାଳୁଥାଆନ୍ତି । ସେ ଖାଲି ହାଁ'ଟା କରି ଛିଡ଼ାହୋଇଥାଆନ୍ତି, ଆଉ ତାଙ୍କ ଆଖି ବ୍ୟାକୁଳ ଭାବରେ ଖୋଜୁଥାଏ ସ୍ୱାମୀଙ୍କୁ ।

ରକ୍ ଏଣ୍ଡ ରୋଲ୍ ଉଦ୍ଦାମଭାବରେ ବାଜିଉଠିଲା ଏକ ଉଦ୍ଦାମ ନୃତ୍ୟର ସଙ୍କେତ ଦେଇ । ମୁଗ୍ଧ ସମସ୍ତେ, ବେତାଳୁଆ ନାଚିଲେ । ନେତା ମହାଶୟ ଟଳିଟଳି ଆସି ହସି ହସି ମିଷ୍ଟର ପ୍ରକାଶଙ୍କୁ ଠେଲିଦେଇ ରାମାରାଓଙ୍କ ସ୍ତ୍ରୀଙ୍କୁ ନେଇ ନାଚିବାକୁ ଲାଗିଲେ ଉଦ୍ଦାମ ଭାବରେ ।

ସେତେବେଳେ ରାମାରାଓ ଥାଆନ୍ତି ମିସେସ୍ ଧନପତିଙ୍କ ବକ୍ଷଆଲିଙ୍ଗନରେ । ମିସେସ୍ ଧନପତି କହୁଥାଆନ୍ତି, ଡାର୍ଲିଂ, ତୁମେ କିଏ ? ଯିଏ ହୁଅ, ଗୋଟିଏ ମତୁଆଲା ଗୀତ ଗାଅ । ରାମାରାଓଙ୍କୁ ନିଶା ଘାରିଥିଲେ ମଧ୍ୟ ଯଥେଷ୍ଟ ଜ୍ଞାନ ଥାଏ । ଗୀତ ଗାଇବାକୁ ସେ କୁଣ୍ଠାବୋଧ କରୁଥାଆନ୍ତି; କିନ୍ତୁ ଯେତେବେଳେ ମିସେସ୍ ଧନପତି ତାଙ୍କ କାନ ପାଖ ହୋଇପଡ଼ି ବାରମ୍ବାର ଅନୁରୋଧ କଲେ, ସେତେବେଳେ ରାମାରାଓ ଆଉ ସମ୍ଭାଳି ନପାରି ଖୁବ୍ ଉଚ୍ଚ ସ୍ୱରରେ ଗାଇବାକୁ ଲାଗିଲେ ସେଇ ଗୀତ, ଯାହାର ଅର୍ଥ, ମୁଁ ସମସ୍ତଙ୍କ ଗୋଡ଼ୁ ସେବା କରିବାର, ହେ ଜଗନ୍ନାଥ, ତୁମ ଗୋଡ଼ ନ ଥିବାର ସତ୍ୟ କି ? ରାମାରାଓଙ୍କ ମତରେ ଏ ଗୀତ ତାଙ୍କର ଶ୍ରେଷ୍ଠ ରଚନା, ସମସ୍ତେ ଶୁଣି ମୁଗ୍ଧ ହୋଇଯିବେ; କିନ୍ତୁ ସମସ୍ତେ ତାଙ୍କ ଆଡ଼କୁ କ୍ରୁଦ୍ଧ ଦୃଷ୍ଟିରେ ଅନାଇ ରହିଥିବାର ଦେଖି ସେ ଚମକିଗଲେ ।

ହଠାତ୍ ଏପରି ବେଖାପ୍ପା ଗୀତ ଶୁଣି ରକ୍ ଏଣ୍ଡ ରୋଲ୍ ବାଦ୍ୟ ବନ୍ଦ ହୋଇଗଲା । ନେତା ଗର୍ଜିଉଠିଲେ, ହୁ ଇଜ୍ ଦ୍ୟାଟ୍ ଫୁଉଲ୍ ? ସମସ୍ତ ନରନାରୀ ଗର୍ଜିଉଠିଲେ ଶତ ଫଣିନୀ ଭଳି, ହୁ, ହୁ, ହୁ, ହୁ,... । ନୃତ୍ୟଶାଳା ଭିତରେ ହୁ-ହୁ ଝଡ଼ ବୋହିଗଲା । ସମସ୍ତେ ନାଚ ବନ୍ଦ କରି କ୍ରୁଦ୍ଧ ନୟନରେ ଛିଡ଼ାହୋଇ ଥାଆନ୍ତି ।

ରାମାରାଓଙ୍କ ନିଶା ନିମିଷକେ ଉଭେଇଗଲା । ସେ ନେତାଙ୍କ ଆଡ଼େ ହସି ହସି ଚାହିଁ ରହିଲେ, ଆଜ୍ଞା ମୋତେ ଚିହ୍ନିପାରୁ ନାହାନ୍ତି ? ମୁଁ ପରା ମୋଚି ରାମାରାଓ, ଆପଣଙ୍କ ଜୋତା କେତେଥର ମରାମତ କରି ଆପଣଙ୍କ ଘରକୁ ନେଇଯାଇଛି । ଆପଣଙ୍କ ସହିତ ମୋର ଫୋଟୋ ବାହାରିଛି ଖବରକାଗଜରେ ।

ହୁ-ହୁ ? ଝଡ଼ ଆହୁରି ଜୋରରେ ବହିବାକୁ ଲାଗିଲା । ଗଳା ଧକ୍କା ଖାଇ ରାମାରାଓ ଓ ତାଙ୍କ ସ୍ତ୍ରୀ ନୃତ୍ୟଶାଳାରୁ ବିତାଡ଼ିତ ହେଲେ ।

ତାହାର କିଛି ଦିନ ପରେ ଦିନେ ଦେଖିଲି ରାମାରାଓଙ୍କ ଘର ପାଖରେ ପୋଲିସ୍ । ପଚାରି ବୁଝିଲି ରାମାରାଓ ପୁଲିସ୍ ସାହେବଙ୍କ ଘରୁ ଜୋତା ଚୋରି କରିଥିବାରୁ ପୁଲିସ୍ ତାଙ୍କୁ ଧରିବାକୁ ଆସିଛି । ରାମାରାଓଙ୍କୁ ହାତକଡ଼ା ପକାଇ ପୁଲିସ୍ ନେଇଗଲେ । ରାମାରାଓଙ୍କ ସ୍ତ୍ରୀ କାନ୍ଦି ଉଠି କହିଲେ, କାହିଁକି ତୁମେ ମନ୍ତ୍ରୀଙ୍କ କଥାରେ ଭୁଲି ସେ ପୋଡ଼ା ବଗିଚାକୁ ଯାଇଥିଲ ଗୋ-କାହିଁକି ?

ରାମାରାଓଙ୍କୁ ପଚାରିଲି, କଥାଟା କଅଣ ରାମାରାଓ ? ତୁମେ ଜୋତା ଚୋରି କରିଚ ସତେ ? ରାମାରାଓଙ୍କ ଆଖିରୁ ପାଣି ଝରିପଡ଼ିଲା । ସେ ମ୍ଲାନ ଭାବରେ ହସି କହିଲେ, ଏକଦମ୍ ମିଛକଥା ଆଜ୍ଞା ! ମୋର ମହାପୁରୁଷ ବାଗ୍ ଭିତରକୁ ଯିବାର ଫଳ ଇଏ । ବିଶ୍ୱାସ ନ କରି ପଚାରିଲି; କିନ୍ତୁ ତୁମ ଘରୁ ତ ପୁଲିସ୍ ସାହେବଙ୍କ ଜୋତା ବାହାରିଲା ? ସେ ସେମିତି ହସି ହସି କହିଲେ, ମୁଁ ବି ତ ବୁଝିପାରୁନାହିଁ ସେ କଥା ।

ରାମାରାଓ ଜେଲ ହାଜତରେ ରହିଲେ । ତାଙ୍କୁ ଜାମିନରେ ମଧ୍ୟ କେହି ନେଲେନାହିଁ ।

ଛ'ମାସ ପରେ ବିଚାର ଶେଷ ହେଲା । ରାୟ ହେଲା ଚୋରି ପ୍ରମାଣିତ ହୋଇଥିବାରୁ ରାମାରାଓଙ୍କୁ ଛ'ମାସ ଜେଲ । ରାମାରାଓ ଓକିଲ ଦେବାକୁ ନାରାଜ ହେଲେ ଏବଂ ଦୋଷ ସ୍ୱୀକାର କଲା । ବିଚାରକଙ୍କୁ ବିଶେଷ କଷ୍ଟ ପଡ଼ିଲାନାହିଁ ବିଚାର କରିବାକୁ ।

ଛ'ମାସ ଜେଲ୍ ମିଆଦ ପରେ ରାମାରାଓ ଜେଲ୍‌ରୁ ଖଲାସ ହୋଇ ବାହାରିଲେ ଉପରଓଳି । ସେଦିନ ଥାଏ ମହାପୁରୁଷ ବାଗ୍ ଉଦ୍‌ଘାଟିତ ହେବାର ବାର୍ଷିକ ଉତ୍ସବ । ରାମାରାଓ ସେଇ ବାଟେ ଘରକୁ ଫେରୁଥାନ୍ତି । ଫାଟକ ପାଖରେ ଛିଡ଼ାହୋଇ ସେ ନେତାଙ୍କ ଗୁରୁଗମ୍ଭୀର ବକ୍ତୃତା ଶୁଣିଲେ -ମହାପୁରୁଷ ବାଗ୍ ତାର ଆଦର୍ଶରେ ଆଗେଇ ଚାଲିଛି । ଜାତି-ଧର୍ମ-ଆୟ-ପଦବୀ ନିର୍ବିଶେଷରେ ଏଠି ସମସ୍ତଙ୍କ ପ୍ରବେଶ ଅଧିକାର ଅଛି । ମୁଁ ଆଜି ପୁଣି ଥରେ ଜଣାଇରଖୁଚି, ଏ ଦେଶରେ ଆଜି ଗଣତନ୍ତ୍ର ଶାସନ ଥିବାରୁ...

ରାମାରାଓ ଶୁଣି ମ୍ଲାନଭାବରେ ହସିଲେ । ହଠାତ୍ ଦୁମ୍ ଦୁମ୍ ଶବ୍ଦ ଶୁଣି ଚମକି ପଡ଼ି ରାମାରାଓ ଦେଖିଲେ ନେତା ଟେବୁଲ ଉପରେ ବିଧା ମାରୁଛନ୍ତି ।

ରାମାରାଓ ଏଥର ଠୋ-ଠୋ କରି ହସିପକାଇଲେ । ଦରୱାନ ସେଠାରୁ ତାଙ୍କୁ ତଡ଼ିଦେଲା । ଘରକୁ ଆସି ରାମାରାଓ ଦେଖିଲେ ଘରେ ସ୍ତ୍ରୀ ନାହିଁ । ଶୁଣିଲେ, ପୁଲିସ୍ ତାକୁ କେବହୁଁ ଧରିନେଇ ଯାଇଥିଲା ପୁଲିସ୍ ସାହେବ ଘରକୁ । ତା'ପରେ ସେ ଆଉ ଫେରିନାହିଁ ।

ଘରକୋଣରେ ତାଙ୍କର ଦଦରା ହାର୍‌ମୋନିୟମ୍, କବିତାଖାତା ଓ ଯୋତା ମରାମତି ଯନ୍ତ୍ରପାତି ସବୁ ସାଇତା ହୋଇ ଥୁଆହୋଇଛି । ଗଲାବେଳେ ତାଙ୍କ ସ୍ତ୍ରୀ ସେସବୁ ସଜାଡ଼ି ସାଇତି ରଖିଦେଇ ଯାଇଛନ୍ତି ।

# ପାଷାଣର ପ୍ରାଣ

ଯାଦବବାବୁଙ୍କ ଦେଢ଼ବର୍ଷର ପୁଅକୁ ଯେତେବେଳେ ଜର ହବାର ମାସେ ହୋଇଗଲା, ସେତେବେଳେ ହୋମିଓପ୍ୟାଥିକ ଡାକ୍ତର କହିଲେ, ତାଙ୍କର ସନ୍ଦେହ ହେଉଛି, ତେଣୁ ଥରେ ଏକ୍ସ-ରେ' କରାଇନେବା ଉଚିତ । ଅଳ୍ପ ପଇସା ଖରଚ ହେବ ବୋଲି ସେ ଏପର୍ଯ୍ୟନ୍ତ ହୋମିଓପ୍ୟାଥି କରାଉଥିଲେ । ଡାକ୍ତରଙ୍କ କଥାରେ ତାଙ୍କ ମୁଣ୍ଡରେ ବଜ୍ରପାତ ହେଲା-ପ୍ରଥମତଃ ରୋଗ ପାଇଁ ଏବଂ ଦ୍ୱିତୀୟତଃ ଖର୍ଚ୍ଚ ପାଇଁ ।

କିନ୍ତୁ ଉପାୟ ବା କଅଣ ? ଏତେ ଦିନେ ଗୋଟିଏ ପୁତ୍ରଲାଭ ହୋଇଛି । ନିଜର ଜୀବନ ଦେଇ ମଧ୍ୟ ତାକୁ ବଞ୍ଚାଇବାକୁ ହେବ; କିନ୍ତୁ ମାସ ଶେଷରେ ଏକ୍ସ-ରେ' କରାଇବାର ଖରଚ ପାଇବେ କେଉଁଠୁଁ ସେ । ହାସପାତାଳ ଯିବାପାଇଁ ରିକ୍ସା ଭଡ଼ା ତାଙ୍କ ପାଖରେ ନାହିଁ, ଏକ୍ସ-ରେ' ଖର୍ଚ୍ଚ ବହିବା ତ ଦୂରର କଥା । ଧାର କରି କରି ସେ ନୟାନ୍ତ ହୋଇ ସାରିଲେଣି; ଆଉ କିଏ ବା ଦବ ମାସ ଶେଷରେ ! ନିଜକୁ ନିଜେ ଧିକ୍କାର ଦେଇ ସେ କହିଲେ, ଧିକ୍ ଗରିବର ଜୀବନକୁ । କିନ୍ତୁ କିଏ ଏହା ପାଇଁ ଦାୟୀ ? କାହାକୁ ସେ ଦୋଷ ଦେବେ ଏହା ପାଇଁ ? ଯଦିଓ ଭଗବାନଙ୍କ ଅସ୍ତିତ୍ୱ ବିଷୟରେ ତାଙ୍କର ବିଶ୍ୱାସ ନାହିଁ ବା ତାଙ୍କର ଦୈନନ୍ଦିନ ଦୁଃଖ କଷ୍ଟ ଓ ଅନ୍ତଃହୀନ କ୍ଷୁଦ୍ର କର୍ତ୍ତବ୍ୟ ଭିତରେ ସେ ବିଷୟରେ ଚିନ୍ତା କରିବାର ସମୟ ପାଇନାହାନ୍ତି, ତଥାପି ସେ ତାଙ୍କୁହିଁ ମନେ ମନେ ପରଷ୍ଟେ ଗାଳିଦେଇ ପୁଣି ଭୟରେ ପ୍ରାର୍ଥନାକରି କହିଲେ, ଭଗବାନ, ଏଇ କଅଣ ତୁମ ବିଚାର ! ଦରିଦ୍ର କରିଚ ଏବଂ ତା' ଉପରେ ଏ ରୋଗ ଦେଇ ମୋତେ ଉପହାସ କରୁଚ !!

ପହିଲା ଆହୁରି ସାତ ଦିନ ଅଛି । ଅଫିସ୍‌ରୁ ଲେଖାଇ ସେ ମାଗଣା ଏକ୍ସ-ରେ' କରାଇ ପାରନ୍ତେ ହୁଏତ । କିନ୍ତୁ ସରକାରୀ ହୃଦୟହୀନ ଧୀର ମନ୍ଥର ଗତିକୁ ରୋଗ ଅନେଇ ବସି ନ ଥିବ । ସାତ ଦିନ ଭିତରେ କଅଣ ନା କଅଣ ହୋଇଯିବ ହୁଏତ । ଥରେ ଭାବିଲେ ପଡ଼ିଶାଘରୁ ଧାର କରିବାକୁ; କିନ୍ତୁ ସେ କଥା ଭାବିବାବେଳକୁ ଆଖି ତାଙ୍କର ଛଳଛଳ ହୋଇଆସିଲା । ତାଙ୍କ ପଡ଼ିଶାଘରେ ଅଛନ୍ତି ଜଣେ କଚ୍ଛି ବଣିଆ, ଖୁବ୍ ଧନୀ । କିଛିଦିନ ତଳେ ସାମାନ୍ୟ କଥାରେ ସେମାନଙ୍କ ସହିତ କିଞ୍ଚିତ୍ ବାଦାନୁବାଦ ହେଉ ହେଉ ଶେଷକୁ ଗୋଟାଏ ଅପ୍ରୀତିକର ଘଟଣା ଘଟିଯାଇଛି । ସେମାନେ ସେମାନଙ୍କର ପିଲାମାନଙ୍କ ଘୁଅପୋଛା କାଗଜ ଯାଦବବାବୁଙ୍କ ବାଡ଼ିକୁ ଫିଙ୍ଗିଦିଅନ୍ତି । ଏହାର ପ୍ରତିବାଦ କରିବା ପାଇଁ ଯାଦବବାବୁଙ୍କ ସ୍ତ୍ରୀ ଯାଦବବାବୁଙ୍କୁ ବାରମ୍ବାର କହିଲେ ମଧ୍ୟ ଯାଦବବାବୁ ଭୟରେ ସେମାନଙ୍କୁ କିଛି ନ କହି ନିଜେ ସେ ସବୁ ସଫା କରିଦେଇଛନ୍ତି । ସ୍ତ୍ରୀ ପଚାରିଲେ ସେ କହିଦିଅନ୍ତି, ସେମାନେ କ୍ଷମା ମାଗି ଆଉ ଭବିଷ୍ୟତରେ ଯେପରି ଏପରି ନ ଘଟେ, ସେଥିପ୍ରତି କଡ଼ା ନଜର ରଖିବାକୁ କହିଛନ୍ତି । ସ୍ତ୍ରୀ ଆଗରେ ନିଜର ପୌରୁଷ ରକ୍ଷାକରିବା ପାଇଁ ସିନା ସେ ମିଛଟାଏ କହିଦିଅନ୍ତି;

କିନ୍ତୁ ସ୍ତ୍ରୀ ଏଥିରେ ବିଶ୍ୱାସ କରନ୍ତି ନାହିଁ । ଦିନେ ଆଉ ଥରେ ପୂର୍ବପରି ମଇଳା କାଗଜ ପଡ଼ିବାରୁ ଯାଦବବାବୁଙ୍କର ସ୍ତ୍ରୀ ସେଦିନ ନିଜେ ତାହାର ପ୍ରତିବାଦ କଲେ । କଥା କ୍ରମେ କ୍ରମେ କଳିକଜିଆ ଆଡ଼କୁ ଅଗ୍ରସର ହେଲା । ଯାଦବବାବୁ ଦୁଇପକ୍ଷର କାହାରିକୁ ସମ୍ଭାଳି ନ ପାରି ଅସହାୟ ଶ୍ରୋତା ଭାବରେ ଛିଡ଼ାହୋଇ ରହିଲେ । ଶେଷରେ ପଡ଼ିଶାଘର ଚାକର ବାହାରି ଆସି ତାର ଗୃହସ୍ୱାମିନୀକୁ କହିଲା, ମା, କାହିଁକି ଛୋଟଲୋକଗୁଡ଼ାଙ୍କ ସହିତ କଥା କହୁଚନ୍ତି । ହାଣ୍ଡି ମାଙ୍କଡ଼ଚିତ୍ ମାରୁଚି ଯା'ର ସେ ପୁଣି କେତେ ବହପରେ କଥା କହୁଚି ଦେଖୁନା । ଗୃହସ୍ୱାମିନୀ ବିଜୟୋଲ୍ଲାସରେ ମୁହଁ ଛାଟି ସେଠୁ ଚାଲିଗଲେ । ଯାଦବବାବୁ ତାଙ୍କ ସ୍ତ୍ରୀଙ୍କୁ ଓ ସ୍ତ୍ରୀ ତାଙ୍କୁ ଅନାଇଲେ । ଦୁଇଜଣ ଆଖି ଛଳଛଳ କରି ନୀରବରେ ମୁଣ୍ଡ ପୋତି ସେଠାରୁ ଫେରିଆସିଲେ । ଯାଦବବାବୁ ଘରକୁ ଆସି ଦୀର୍ଘନିଃଶ୍ୱାସ ପକାଇ କେବଳ କହିଲେ, ନ ଧନହୀନ ବନ୍ଧୁର୍ମଧ୍ୟେ ଜୀବିତଂ ।

କେଉଁଠୁ ଟଙ୍କା ପାଇବେ ଏଇ ଚିନ୍ତାରେ ସାରାଦିନଟି ତାଙ୍କର ଗଲା । କିଛି ଉପାୟ ନ ପାଇ ସନ୍ଧ୍ୟାବେଳକୁ ସେ ଗଲେ ଶ୍ରୀ ଶ୍ରୀ ଗୋପାଳଜୀଉଙ୍କ ମନ୍ଦିରକୁ । ତାଙ୍କର ବିଶ୍ୱାସ ନଥାଉ ପଛକେ ବଡ଼ ବଡ଼ ସାଧୁମାନେ ତ କହିଛନ୍ତି ଭଗବାନଙ୍କୁ ଆତୁର ହୋଇ ଡାକିଲେ ସେ ବାଞ୍ଛା ପୂରଣ କରନ୍ତି । ଗୋଡ଼ହାତ ଧୋଇ ବହୁକାଳର ଦରଛିଣ୍ଡା ମଠା ଧୋତିଟି ପିନ୍ଧି ସେ ଗଲେ ମନ୍ଦିରକୁ । ମୂର୍ତ୍ତିକୁ ଚାହିଁ ସେ ଚେଷ୍ଟାକଲେ ମନରେ ଆତୁରତା ଆଣିବାକୁ । କିନ୍ତୁ ଆତୁରତା ପରିବର୍ତ୍ତେ ତାଙ୍କର ମନକୁ ଆସିଲା ଯେତେ ତର୍କ, ଯେତେ ଟିକିନିଖି ବିଚାର ଭଗବାନଙ୍କ ଅସ୍ତିତ୍ୱ ବିଷୟରେ । ଭଗବାନ କଅଣ ଅଛନ୍ତି ? ଥିଲେ ତାଙ୍କର କଅଣ ଆକାର ଆକୃତି ଅଛି ? ଆମର ଆତୁରତା ବା ଭାବପ୍ରବଣତାରୁ ତାଙ୍କର ଅସ୍ତିତ୍ୱ ବିଷୟରେ ଯେଉଁ ବିଶ୍ୱାସ ଜନ୍ମେ ତାହାର ସତ୍ୟତା ବିଷୟରେ ଅନ୍ୟ ପ୍ରମାଣ କଣ ଅଛି ? ପାଗଳ ନିଜକୁ ଅଧୀଶ୍ୱର ଭାବି ସେହିପରି ବ୍ୟବହାର କରେ; କିନ୍ତୁ ତାହାର ସେ ଜ୍ଞାନ ହାସ୍ୟାସ୍ପଦ । ଆମର ଏ ଭାବପ୍ରବଣତାଜନିତ ଜ୍ଞାନ ସେହିପରି ହାସ୍ୟାସ୍ପଦ ନୁହଁ କାହିଁକି ? ସମସ୍ତେ କହୁଛନ୍ତି, ବିଶ୍ୱାସ କଲେ କୃଷ୍ଣ ମିଳେ, ତର୍କରେ ନୁହେଁ । ବିଶ୍ୱାସ ଉପରେ ଏତେ ଜୋର ଦିଆହେଉଛି କାହିଁକି ? ଦୁଇ ଯୁକ୍ତ ଦୁଇ ସମାନ ଚାରି । କେହି ତ କହୁନାହିଁ ବିଶ୍ୱାସ କଲେ ଏହା ଜାଣି ପାରିବ । ଜଣେ ବଡ଼ ମନସ୍ତାତ୍ତ୍ୱିକଙ୍କ କଥା ତାଙ୍କର ମନେପଡ଼ିଲା । ସେ ତାଙ୍କ ବହିରେ ଭଗବାନ ବିଶ୍ୱାସର ସାତୋଟି କାରଣ ଦର୍ଶାଇଛନ୍ତି, ଯଥା-ଅମର ହେବାର ତୀବ୍ର ଇଚ୍ଛା, ପ୍ରତିପତ୍ତି ପାଇବାର ଇଚ୍ଛା, ପ୍ରାକୃତିକ ବିପର୍ଯ୍ୟୟ ପ୍ରତି ଭୟ ଇତ୍ୟାଦି । ଏସବୁ ତର୍କ-ବିତର୍କ ଭିତରେ ଯାଦବବାବୁ ପୁଅକଥା ଭୁଲିଯାଇଥିଲେ । ସେ କଥା ମନେ ପଡ଼ିବାରୁ ସେ ପୁଣି ଚେଷ୍ଟାକଲେ ମନରେ ଆତୁରତା ଆଣିବାକୁ ।

ପିଲାବେଳେ ତାଙ୍କର ବୋଉ ରାତି ନ ପାହୁଣୁ ଗଜନିସ୍ତାରଣ ଯେତେବେଳେ ବୋଲୁଥିଲେ, ସେତେବେଳେ ସେ କାନ୍ଦିପକାଉଥିଲେ । କୁମ୍ଭୀର ଯେତେବେଳେ ହାତୀକୁ ଭୁଲାଇ ପାଣି ଭିତରକୁ ନେଇ ପାଣିରେ "ତେଲିଁଣ ପଡ଼ିଲା, ଗଭୀର ଜଳରେ ବୁଡ଼ିଲା, ଝଗେ ଧଇଲା ପାଦ ଚାରି, ଦନ୍ତେଣ ତଣ୍ଟି ତା କାମୋଡ଼ି । କାମୁଡ଼ି କରେ ରୁଣଝୁଣ, ବୋଲଇ ଘେନିବି ତୋ ପ୍ରାଣ", ସେତେବେଳେ ତାଙ୍କର ଆଖି ଛଳଛଳ ହୋଇଯାଉଥିଲା । ହାତୀ କୁମ୍ଭୀରଠାରୁ ନିସ୍ତାର ପାଇବାର ଆଉ ଉପାୟ ନ ପାଇ ଯେତେବେଳେ "ବିଚାରଇ ମନେ, ଯେ କାଳେ ଥିଲି ଘୋରବନେ, ଶତ ସିଂହ ଯେ ପର୍ବତରେ, ଥିଲି ମୁଁ ଯେବଣ କାଳରେ, ମୁହିଁ ମାରଇ ବୋଲିକରି, ରୁଣ୍ଡ ହୋଇଲେ ତପଚାରୀ । ମୁନିଏ ହ୍ୱନ୍ତି କୁହାକୋହି,

ଆତଙ୍କ ଜାଳେ ଭାବଗ୍ରାହୀ, ଥରେ ମୁଁ ବିଡ଼ିବି ଏଠାଇ, ମନରେ ପ୍ରତେ ଯିବି ମୁହିଁ । ଏମନ୍ତେ ମନେ ବିଚାରିଲା, ପଦ୍ମ ଯେ ନାଡ଼େକ ପାଇଲା । ତୋଳି ଧଇଲା ପଦ୍ମମୂଳ, ଡାକିଲା ରଖ ଆଦିମୂଳ । ରଖ ହେ ଦେବକୀନନ୍ଦନ, ରଖ ହେ ଶ୍ରୀ ମଧୁସୂଦନ'', ସେତେବେଳେ ଯାଦବବାବୁ କୋହ ସମ୍ଭାଳି ନ ପାରି କଇଁକଇଁ ହୋଇ କାନ୍ଦି ବୋଉକୋଳରେ ମୁହଁ ଲୁଚାଇ ଦେଉଥିଲେ । ବୋଉ ତାଙ୍କ ପିଠିରେ ହାତ ବୁଲାଉ ବୁଲାଉ କରୁଣ ସ୍ୱରରେ ଗଜ ନିସ୍ତାରଣ ସ୍ତବ ଗାଇଯାଉଥିଲେ । ସେଇ କଥା ଯାଦବବାବୁ ବର୍ତ୍ତମାନ ମନେ ପକାଇଲେ । ବୋଉ ଯେଉଁ ସ୍ତବ ଗାଉଥିଲେ ମନେ ମନେ ସେ ସେମିତି ସୁରରେ ଗାଇବାକୁ ଲାଗିଲେ; କିନ୍ତୁ ବୃଥା । ଉପରନ୍ତୁ ହାତୀ ସମୁଦ୍ର ଭିତରେ ପଦ୍ମନାଡ଼ ପାଇବାର ଦେଖି ସେ ହସିଲେ । ଯେତେ ତର୍କ, ଯେତେ ସବୁ ବଡ଼ ବଡ଼ ମନସ୍ତାତ୍ତ୍ୱିକମାନଙ୍କର ସୂକ୍ଷ୍ମ ବିଚାର ତାଙ୍କର ମନେ ପଡ଼ିବାକୁ ଲାଗିଲା । କୌଣସି ପ୍ରକାରେ ସେ ଆତୁର ହୋଇ ଡାକିପାରିଲେ ନାହିଁ । ତାଙ୍କର ଜ୍ଞାନ ଯେପରି ତାଙ୍କର କଣ୍ଠରୋଧ କରିବାକୁ ଲାଗିଲା । ସେ ଅଧୀର ହୋଇ କହିଲେ, ''ଭଗବାନ, ପଣ୍ଡିତମାନେ କହିଛନ୍ତି ବିଦ୍ୟା ଏପରି ଧନ ଯେ ଚୋର ଡକେଇତ ଏହାକୁ କାଢ଼ିନେଇ ପାରିବେ ନାହିଁ । ଲୋଡା ନାହିଁ ମୋର ଏ ଧନ । କାଢ଼ି ନେଇଯାଅ ଏ ଧନ; ଫେରାଇଦିଅ ମୋର ପିଲାବେଳର ବିଶ୍ୱାସ, ଆତୁରତା ।'' ସେଥିରେ ମଧ କିଛି ଫଳ ହେଲାନାହିଁ । ଶେଷରେ ବିରକ୍ତ ହୋଇ ସେ ମୂର୍ତ୍ତିକୁ ଚାହିଁ କହିଲେ, ନାହିଁ ବା ଆସିଲା ଆତୁରତା, ମୁଁ ଯେ ଆତୁର, ଏଥିରେ ତ ସନ୍ଦେହ ନାହିଁ, ଦେଖିବା ଯେ ତୁମେ କେଡ଼େ ଅନ୍ତର୍ଯ୍ୟାମୀ, କେଡ଼େ ଭାବଗ୍ରାହୀ ।

ପରଦିନ ସକାଳେ କିନ୍ତୁ ସେ ଭଗବାନଙ୍କ ଭାବଗ୍ରାହୀତା ଉପରେ ନିର୍ଭରକରି ନିଶ୍ଚେଷ୍ଟ ହୋଇ ରହିପାରିଲେ ନାହିଁ । ରାତି ନ ପାହୁଣୁ ସେ ହାକିମଙ୍କ ଦ୍ୱାରସ୍ଥ ହେଲେ ଟଙ୍କା ଧାର ପାଇଁ । ଅନେକ କ୍ଷଣ ପରେ ହାକିମ ଆସି ଯାଦବବାବୁଙ୍କ ଗୁହାରି ଶୁଣି କଟମଟ କରି ଚାହିଁ କହିଲେ, ଦଉଚି, କିନ୍ତୁ ମନେ ରଖିବ ଯାହାର ପୋଷଣ କରିବାର କ୍ଷମତା ନାହିଁ, ତାର ସନ୍ତାନ ଉତ୍ପାଦନ କରିବାର ଅଧିକାର ନାହିଁ ।

ଯାଦବବାବୁ ନୀରବରେ ସେତକ ହଜମ କରି ଟଙ୍କା ନେଲେ । ଟଙ୍କା ପାଇଁ ଯେଉଁ ଆନନ୍ଦ ସେ ପାଇଲେ, ହାକିମଙ୍କ ବାକ୍ୟବାଣର ଆଘାତ ସେଥିରେ ତାଙ୍କୁ ଜଣାପଡ଼ିଲାନାହିଁ ।

ପୁଅର ଏକ୍ସ-ରେ' ହୋଇଗଲା । ଡାକ୍ତର ଫଟୋ ଦେଖି ଏକପୃଷ୍ଠାବ୍ୟାପୀ ଔଷଧ ଓ ପଥ୍ୟ ଆଦି ଲେଖିଦେଇ କହିଲେ, ଏସବୁ ନିତାନ୍ତ ଦରକାର । ଆଉ ଗୋଟିଏ କଥା । ଗୋଟିଏ ଭଲ ଥର୍ମୋମିଟର କିଣିବେ । ବେଶି ନୁହେଁ ସାଢ଼େ ଚାରି ଟଙ୍କା ଦାମ । ସେଥିରେ ପ୍ରତ୍ୟହ ଦୁଇବେଳା ଜର ଦେଖି ଗୋଟାଏ ଖାତାରେ ଲେଖିରଖି ମୋତେ ଦେଖାଉଥିବେ ।

ଡାକ୍ତର ଟଙ୍କା ନେଇ ଚାଲିଗଲେ । ଯାଦବବାବୁ କାଗଜଟିକୁ ଶୂନ୍ୟ ଦୃଷ୍ଟିରେ ଚାହିଁ ରହିଲେ । ଯାଦବବାବୁଙ୍କ ସ୍ତ୍ରୀ ତାଙ୍କର ଗହଣାତକ ଧରି ଛିଡ଼ା ହୋଇ କହିଲେ, ଚିନ୍ତା କରନି, ପୁଅ ବଞ୍ଚୁ ମଣିଷ ହେଲେ ସବୁ ହବ । ଏତକ ନିଅ । ଯାଦବବାବୁ ଥରେ ମାତ୍ର ସ୍ତ୍ରୀଙ୍କୁ ଚାହିଁ ସେତକ ଧରି ଚାଲିଗଲେ ।

ଚିକିତ୍ସା ଚାଲିଲା । ଡାକ୍ତରଙ୍କ ଉପଦେଶ ଅନୁସାରେ ସେ ଗୋଟିଏ ଥର୍ମୋମିଟର ମଧ ଆଣିଲେ । ସକାଳ ଓଳି ସେ ନିଜେ ଜର ଦେଖି ଖାତାରେ ଲେଖିଦେଇଯାଆନ୍ତି । ଉପର ଓଳି ଅଫିସରୁ ଆସିବାକୁ ତାଙ୍କର ଡେରି ହୁଏ । ସେ ଓଳି ସ୍ତ୍ରୀ ଜର ଦେଖନ୍ତି ।

ଦୁଇଦିନ ପରେ ଯାଦବବାବୁ ଅଫିସରୁ ଫେରି ଶୁଣିଲେ ଯେ ଥର୍ମୋମିଟରଟି ଭାଙ୍ଗି ଯାଇଚି । ଯାଦବବାବୁ ଶୁଣି କିଛି କହିଲେ ନାହିଁ । ପୁଅକୁ ଟିକିଏ ଗେହ୍ଲା କରି କହିଲେ, ହଇରେ ଟୋକା ! ଭାଙ୍ଗିଦେଲୁ । ଟଙ୍କା କେଉଁଠୁ ଆଣିବି ପୁଣି କିଣିବାକୁ ? ପୁଅ ବାପାଙ୍କୁ ଚାହିଁ ହସିଦେଲା । ଯାଦବବାବୁ ଆନନ୍ଦରେ ଚୁମ୍ବନ ପରେ ଚୁମ୍ବନ ଦେଇ ଗଲେ ବଜାରକୁ ଆଉ ଗୋଟିଏ କିଣିବାକୁ । ଗହଣା ବନ୍ଧକ ଦେଇ ଆଣିଥିବା ଟଙ୍କାରୁ ବର୍ତ୍ତମାନ ମଧ୍ୟ ଶହେଟଙ୍କା ଅଛି । ଟଙ୍କାର ଚିନ୍ତା ବର୍ତ୍ତମାନ ତାଙ୍କର ନାହିଁ ।

ପରଦିନ ସକାଳେ ସେ ଜର ଦେଖିବାପାଇଁ ପୁଅର ଜାମା ଟେକି ଥର୍ମୋମିଟରଟି ତା କାଖରେ ଗୁଞ୍ଜିଦେବା ସମୟରେ ପୁଅ କିରି କିରି ହସି ହାତ ଛାଟିଦେଲା । ଏଥିପାଇଁ ସେ ପ୍ରସ୍ତୁତ ନ ଥିଲେ । ଥର୍ମାମିଟରଟି ତାଙ୍କ ହାତରୁ ଖସିଯାଇ ତଳେ ପଡ଼ିଯାଇ ଭାଙ୍ଗିଗଲା । ପାରଦଗୁଡ଼ିକ ପଦ୍ମପତ୍ରରେ ଜଳବିନ୍ଦୁ ପରି ଢଳଢଳ ହୋଇ ଏଣେତେଣେ ଗଡ଼ିଗଲେ । ରାଗରେ ଅଧିର ହୋଇ ଯାଦବବାବୁ ପୁଅକୁ ଗୋଟାଏ ଚାପୋଡ଼ା ମାରିବାକୁ ହାତ ଉଠାଇଲେ । ପୁଅ ସେ ପର୍ଯ୍ୟନ୍ତ ହସୁଚି । ବାପାଙ୍କୁ ସେ କି ଅର୍ଥସଙ୍କଟରେ ପକାଇଛି, ସେ ଜାଣେ ନାହିଁ । ଯାଦବବାବୁ ଗୋଟିଏ କ୍ଷୁଦ୍ର ଦୀର୍ଘ ନିଶ୍ୱାସ ପକାଇ ହସି କହିଲେ, ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ବି ଅନେଇ ବସିଚି ଦରିଦ୍ରଙ୍କୁ ଉପହାସ କରିବା ପାଇଁ !

କାହାରିକୁ କିଛି ନ କହି ସେ ବାକ୍ସରୁ ସାଢ଼େ ଚାରିଟଙ୍କା ନେଇ ବଜାରକୁ ଯାଇ ସାଙ୍ଗେ ସାଙ୍ଗେ ଆଉ ଗୋଟିଏ ଥର୍ମୋମିଟର କିଣିଆଣିଲେ । ବଜାରରୁ ଫେରି ଜର ଦେଖି ଖାତାରେ ଲେଖିରଖି ସେ ସ୍ତ୍ରୀଙ୍କୁ ଡାକି କହିଲେ, ଦେଖ, ଖୁବ୍ ସାବଧାନ ହୋଇ ଜର ଦେଖିବ ସେ ଓଳି । ଏତେ ଭାଙ୍ଗିଲେ ମୁଁ କେଉଁଠୁ ଆଣିବି କହିଲ ?

କିନ୍ତୁ ଯେତେ ସାବଧାନ ହେଲେ ବି କିଛିଦିନ ପରେ ଆଉ ଗୋଟିଏ ଭାଙ୍ଗିଗଲା । ଯାଦବବାବୁ ସେଦିନ ଅଫିସରୁ ଫେରି ଯେମିତି ଶୁଣିଲେ ଆଉ ଗୋଟିଏ ଭାଙ୍ଗିଚି, ମୁଣ୍ଡରେ ତାଙ୍କର ବଜ୍ର ପଡ଼ିଗଲା । ରାଗରେ, ଅଭିମାନରେ ହତାଶରେ ସେ କାଣ୍ଡଜ୍ଞାନ ହରାଇ ବସି ଖାଇବା ଥାଳି ସ୍ତ୍ରୀ ଉପରକୁ ଫୋପାଡ଼ି ଦେଇ ଦୁମ୍‌ଦ୍ରୁମ୍ କରି ଦୁଇ ବିଧା ପୁଅ ପିଠିରେ ବସାଇଦେଲେ । ସ୍ତ୍ରୀ ବୁଝିଲେ ଏ ମାଡ଼ ତାଙ୍କୁହିଁ ହେଇଚି । ଏହା ପରେ ତୁମୁଳ କାଣ୍ଡ ଘଟିଗଲା । ଯାଦବବାବୁଙ୍କ ସ୍ତ୍ରୀ ତଳେ ମୁଣ୍ଡ ବାଡ଼େଇ ପାଟିକରି କାନ୍ଦି ଉଠିଲେ । ମୋ ପୁଅକୁ ମାରିଦେଲେ ଲୋ । ଯାଦବବାବୁ ମୁଣ୍ଡରେ ହାତଦେଇ ବସିପଡ଼ିଲେ । ସମସ୍ତଙ୍କ ଖାଇବା ସେଦିନ ବନ୍ଦହେଲା ।

ପରଦିନ ଯାଦବବାବୁ ଅଫିସ୍‌କୁ ଛୁଟି ଦରଖାସ୍ତ ପଠାଇଦେଇ କହିଲେ, ମୁଁ ତୁମକୁ ଦେଖାଇଦେବି କିପରି ସାବଧାନତା ସହିତ ପିଲାଙ୍କ ଜର ଦେଖିବା ନିୟମ । ଉପରଓଳି ସନ୍ଧ୍ୟା ସମୟରେ ସେ ସ୍ତ୍ରୀଙ୍କୁ ଡାକି କହିଲେ, ମୁଁ ବସିଚି, ତୁମେ ଦେଖ । ସ୍ତ୍ରୀ ଗମ୍ଭୀର ଭାବରେ ପୁଅକୁ କୋଳରେ ବସାଇ ସାବଧାନତା ସହିତ କାଖତଳେ ଥର୍ମୋମିଟରଟି ଦେଲେ । ଯାଦବବାବୁ ଘଡ଼ି ଧରି ବସିଲେ । ଏକମିନିଟ ପରେ କହିଲେ ଏଥର କାଢ଼ । ସ୍ତ୍ରୀ ଥର୍ମୋମିଟରଟି କାଢ଼ି ଆଣି ଲଣ୍ଠନ ନିକଟରେ ଧରିଲେ ।

ଯାଦବବାବୁ ଚିତ୍କାର କରି କହିଲେ, ଆରେ ଆରେ ! ଏ କ'ଣ କରୁଚ ! ଲଣ୍ଠନ୍ ତାପରେ ପାରା ଉଠିଯିବ ଯେ ।

ସ୍ତ୍ରୀ କହିଲେ, ଆମକୁ ଶିଖାଇବାକୁ ହେବନାହିଁ । ଲଣ୍ଠନ ଦିହରେ ପାରାକୁ ଲଗାଇଲେ ବି ପାରା ଉଠିବ ନାହିଁ । ଏଇ ଦେଖ ।

ଏହା କହୁ କହୁ ସେ ଥର୍ମୋମିଟରର ପାରା ଅଂଶଟି ଲଣ୍ଠନ ଦିହରେ ଲଗାଇଦେଲେ । ଦେଖୁ ଦେଖୁ ଏକ ସେକେଣ୍ଡ ଭିତରେ ପାରା ଆନନ୍ଦରେ ଡେଇଁ ଡେଇଁ ଶେଷ ସୀମାଯାଏ ଉଠିଗଲା । ଭୟରେ ସେ ଥର୍ମୋମିଟରଟି କାଢ଼ି ଆଣି ଝାଡ଼ି ପୁଅ କାଖ ତଳେ ପୁଣି ରଖିଲେ । ଏକମିନିଟ ପରେ ଯାଦବବାବୁ ସେଟି କାଢ଼ିଆଣି ଦେଖିଲେ । ଦେଖୁ ଦେଖୁ ପାରା ତଳକୁ ଖସିବାକୁ ଲାଗିଲା ।

ଯାଦବବାବୁ କାନ୍ଦ କାନ୍ଦ ହୋଇ କହିଲେ, ଏ କଅଣ କଲ ! ଦେଲ ଖରାପ କରି ।

ସ୍ତ୍ରୀ ପୁଣି ଝାଡ଼ି କାଖ ତଳେ ଦେଲେ । କାଢ଼ିଆଣି ଦେଖିଲେ ପାରା ତରତର ହୋଇ ତଳକୁ ଖସି ଯାଉଚି ।

ଯାଦବବାବୁ ବିଷଣ୍ଣ ଭାବରେ ହସି ଗାଇଲେ, ଉଡ଼ି ଯାଉଛି ଲୋଟଣି ପାରାରେ, ଦୁନିଆରେ ଲାଗିଚି ଧରା ପରା । ଦିଅ, ଦେଖେ ଯଦି ଏଇଟା ବଦଳାଇ ଦେଇପାରେ ।

ଥର୍ମୋମିଟରଟି ନେଇ ସେ ଗଲେ ଦୋକାନକୁ । ଏହି ଦୋକାନରୁ ସେ ଔଷଧ ଆଦି କିଣନ୍ତି । ପ୍ରଥମେ ସେ ଦୋକାନୀକୁ ମିଛ କଥା କହିଲେ ଯେ ତାଙ୍କୁ ଦୋକାନୀ ଖରାପ ଜିନିଷଟି ଦେଇଛି; କିନ୍ତୁ ଦୋକାନୀ ଏହାର ତୀବ୍ର ପ୍ରତିବାଦ କରିବାରୁ ଯାଦବବାବୁ ସତ କଥାଟି କହିଦେଲେ । ଦୋକାନୀ ଯାଦବବାବୁଙ୍କ କରୁଣ କାହାଣୀ ଶୁଣି ଦୟାପରବଶ ହୋଇ କହିଲେ, ଆଚ୍ଛା ରଖିଯାଆନ୍ତୁ ସେଟି । ଆଉ କାହାକୁ ବିକ୍ରି କରିଦେବି; କିନ୍ତୁ ଯଦି ନପାରେ ତେବେ ଆପଣଙ୍କୁ ଦାମ ଦେବାକୁ ପଡ଼ିବ । ଆପାତତଃ ଆଉ ଗୋଟିଏ ନେଇଯାଆନ୍ତୁ ।

ଯାଦବବାବୁ ନୂଆ ଥର୍ମୋମିଟରଟି ଧରି ଘରକୁ ଫେରିଲେ । କଥାଟା କିନ୍ତୁ ତାଙ୍କୁ ଭଲ ଲାଗିଲା ନାହିଁ । ତାଙ୍କର କେବଳ ମନେହେଲା ହୁଏତ ତାଙ୍କ ପରି ଅଭାବଗ୍ରସ୍ତ କେହି ସେଟି ନେଇ ହନ୍ତସନ୍ତ ହେବ । କାହିଁକି ସେ ଠକାଇବେ ଅନ୍ୟକୁ ? ମନ ତାଙ୍କର ଅସ୍ୱସ୍ତିରେ ଭରିଉଠିଲା । ଆଖି ତାଙ୍କର ଛଳଛଳ ହୋଇଗଲା । ବିଛଣାରେ ଶୋଇ ଅନେକ କ୍ଷଣ ଛଟପଟ ହୋଇ ସେ ହଠାତ୍ ଉଠି ବାହାରିଗଲେ ଦୋକାନକୁ । ସେ ନିଜର ଖରାପ ଥର୍ମୋମିଟରଟି ଫେରାଇ ଆଣିଲେ ଓ ଆଉ ଗୋଟିଏ କିଣି ଆଣିଲେ ।

ତାଙ୍କ ମୁଣ୍ଡ ଉପରୁ ଯେପରି ଗୋଟିଏ ଭାରି ବୋଝ ଚାଲିଗଲା । ବାଟରେ ଗୋପାଳଜୀଉଙ୍କ ମନ୍ଦିରକୁ ଯାଇ ସେ ମୂର୍ତ୍ତିକୁ ଚାହିଁ ରହିଲେ । ପଥରର ସେ ମୂର୍ତ୍ତି ତାଙ୍କୁ ସେଦିନ ମନେହେଲା ଯେପରି ପ୍ରାଣବନ୍ତ ହୋଇଯାଇଚି । ମୂର୍ତ୍ତିକୁ ଚାହିଁ ସେ ଆତୁର ଭାବରେ କହିଲେ, ଭଗବାନ ମୋତେ ଧନ ମାନ ନ ଦିଅ, ଆପତ୍ତି ନାହିଁ, କିନ୍ତୁ ଅସାଧୁ କର ନାହିଁ ।

ଆଖିରୁ ତାଙ୍କର ପାଣି ଝରି ପଡୁଥିଲା, କିନ୍ତୁ ମନରେ ଏକ ଅପୂର୍ବ ଆନନ୍ଦର ଶିହରଣ ।

# ଧରିତ୍ରୀ ଓ ଧରିତ୍ରୀ

ଏଇ ସେଇ ସର୍ବଂସହା ଧରିତ୍ରୀ -କବିମାନେ ଯାହାକୁ ନାରୀରୂପରେ କଳ୍ପନା କରିଛନ୍ତି; ଯାହାର ସୁ-ଉଚ୍ଚ ପର୍ବତକୁ କୁଚ ସହିତ ତୁଳନା କରାଯାଇଛି, କୋଟି କୋଟି ବର୍ଷ ବୟସ ହେଲେ ବି ଯେ ଚିରଯୌବନା, ଯେ ନିରଳସ ଭାବରେ ଚରକି ଭଳି ବୁଲିଚାଲିଛି । ପ୍ରସବ କରିଚାଲିଛି କୋଟି କୋଟି ପ୍ରାଣୀ । କେତେ ଅଦ୍ଭୁତ ପ୍ରକାର ସନ୍ତାନ ! କୋଟି କୋଟି ସନ୍ତାନ ଯାହାକୁ ଦିବାରାତ୍ର ଦୋହନ କରୁଛନ୍ତି ।

ପାଣ୍ଡବ-ବଂଶାବତଂସ ରାଜା ପରୀକ୍ଷିତଙ୍କ ରାଜତ୍ୱକାଳରେ ଏଇ ଧରିତ୍ରୀ ଏକଦା ହତପ୍ରଭା ଓ ଅଶ୍ରୁମୁଖୀ ହୋଇ ବିଚରଣ କରୁଥିବାର ଦେଖି ଧର୍ମ ପଚାରିଲେ, ଭଦ୍ରେ ! ତୁମ୍ଭର ମଳିନପ୍ରଭା ଓ ବିବର୍ଣ୍ଣ ମୁଖଶ୍ରୀ ଦେଖି ବୋଧହେଉଛି ତୁମ୍ଭେ କୌଣସି ମହତୀ ମନଃପୀଡ଼ାରେ ନିପୀଡ଼ିତା । ଏହା ପରେ ତୁମ୍ଭଙ୍କୁ କାମାନ୍ଧ ଉନ୍ମାଦ କ୍ଷମତାଲୋଭୀ ହିଂସ୍ରକମାନେ ଭୋଗ କରିବେ ଏବଂ ତଥାକଥିତ ପଣ୍ଡିତ ବୈଜ୍ଞାନିକମାନେ ସେ ଉନ୍ମାଦମାନଙ୍କର ଭୃତ୍ୟ ହୋଇ ତୁମ୍ଭର ବହୁସନ୍ତାନର ବାରମ୍ବାର ଦୁଃଖର ଓ ବିନାଶର କାରଣ ହେବେ,ସେଇଥିପାଇଁ କ'ଣ ତୁମ୍ଭେ ଶୋକ କରୁଛ ? ଆତ୍ମ-ସମ୍ମାନିତ ଶାସକମାନେ ଜନମଙ୍ଗଳ, ଶାନ୍ତି, ଆଦର୍ଶର ଦୁହାଇ ଦେଇ ଅନ୍ୟମାନଙ୍କୁ ଶୋଷଣ କରି ନିଜର ପାଶବିକ ଲାଳସା ଚରିତାର୍ଥ କରିବେ, ସେଥିପାଇଁ କଅଣ ତୁମ୍ଭେ ଉଦ୍‌ବିଗ୍ନା ? ସମସ୍ତେ ପରସ୍ପରର ବିନାଶକୁ ହିଁ ପ୍ରାଧାନ୍ୟ ଦେଇ ଉତ୍ତମ କାର୍ଯ୍ୟ ବୋଲି ପ୍ରଚାର କରିବେ, ସେଇଥିପାଇଁ କ'ଣ ତୁମ୍ଭେ ଚିନ୍ତିତା ? ଯେଉଁ ମନୁଷ୍ୟ-ସନ୍ତାନ-ମାନଙ୍କୁ ତୁମ୍ଭର ଶ୍ରେଷ୍ଠ ସୃଜନ ବୋଲି ଭାବି ତୁମ୍ଭେ ଗର୍ବ ଅନୁଭବ କରୁଥିଲ, ସେମାନେ ଦିନକୁ ଦିନ ହୀନବୁଦ୍ଧି ହୋଇ ଏବଂ ନିଜ ନିଜର କ୍ଷୁଦ୍ରତାରେ ମୁଗ୍ଧ ହୋଇ ପରସ୍ପରକୁ ବିନାଶ କରି ଓ ତୁମ୍ଭ ପ୍ରତି ନାନା ଅତ୍ୟାଚାର କରି ଦିନେ ତୁମ୍ଭ କ୍ରୋଡ଼ରୁ ନିଶ୍ଚିହ୍ନ ହୋଇଯିବେ, ସେଇଥିପାଇଁ କ'ଣ ତୁମ୍ଭେ ଲଜ୍ଜିତା ଓ ଅପମାନିତା ? ତୁମ୍ଭେ ପ୍ରଚୁର ରସ ଓ ଶସ୍ୟ ଉତ୍ପାଦନ କରୁଥିଲେହେଁ ଲୋଭୀମାନେ ସେ ସବୁକୁ ଲୁକ୍‌କାୟିତ କରି ଅବା ନଷ୍ଟକରି ତୁମ୍ଭର କୋଟି କୋଟି ସନ୍ତାନଙ୍କୁ ଅନାହାରରେ ରଖି ଦୁର୍ଭିକ୍ଷ ସୃଷ୍ଟି କରିବେ ଏବଂ ରାଜା ଓ ରାଜକର୍ମଚାରୀମାନେ ସେ ଲୋଭୀମାନଙ୍କୁ ସାହାଯ୍ୟ କରି ନିଜର ବିତ୍ତ ବଢ଼ାଇବାରେ ଲାଗିବେ ଓ ଶେଷରେ ସମୂହ ବିପ୍ଲବରେ ନାଶଯିବେ, ସେଇଥିପାଇଁ କଅଣ ତୁମ୍ଭେ ମର୍ମାହତା ? ଯେଉଁ ଜ୍ଞାନ ବିଜ୍ଞାନ ସାହାଯ୍ୟରେ ମନୁଷ୍ୟ ଦିନେ ପରମପୁରୁଷଙ୍କ ପ୍ରତି ଆକୃଷ୍ଟ ହୋଇ ଶାନ୍ତି ସାମ୍ୟ ଲାଭକରିଥିଲା, ସେଇ ଜ୍ଞାନକୁ ଦିନେ ମନୁଷ୍ୟମାନେ ପରସ୍ପର ବିନାଶ ପାଇଁ ବିନିଯୋଗ କରିବେ ଓ ଭଗବାନଙ୍କୁ ଭୀତ ମାନବର କଳ୍ପନା ବୋଲି ଅବଜ୍ଞା କରିବେ, ସେଇଥିପାଇଁ କଅଣ ତୁମ୍ଭେ ବ୍ୟଥିତା ? ଧରିତ୍ରୀ କୌଣସି ଉତ୍ତର ନ ଦେଇ ଅଧୋମୁଖୀ ହୋଇ ନୀରବରେ ଅଶ୍ରୁବିସର୍ଜନ କରିବାକୁ

ଲାଗିଲେ !

ଆଉ ଏଇ ସେଇ ଧରିତ୍ରୀ । କାମଦେବଙ୍କ ସ୍ତ୍ରୀ । ଯାହାକୁ ଅନେକ ଧରିତ୍ରୀ ସହିତ ତୁଳନା କରନ୍ତି । ଯାହାଙ୍କ କୁଚ-ଯୁଗଳ ପର୍ବତ ତୁଲ୍ୟ । ବୟସରେ ଯିଏ ପ୍ରୌଢ଼ା ହେଲେ ବି ଏପର୍ଯ୍ୟନ୍ତ ଯୁବତୀ ଓ ସୃଜନକ୍ଷମା । ଯିଏ ସକାଳୁ ରାତି ଦୁଇଟା ପର୍ଯ୍ୟନ୍ତ ନିରଳସ ଭାବରେ ଚରକି ଭଳି ବୁଲି କାମ କରୁଥାନ୍ତି । ଯାହାଙ୍କର ଏ ପର୍ଯ୍ୟନ୍ତ ବି କୋଳରେ ଗୋଟିଏ ସନ୍ତାନ ସ୍ତନ୍ୟପାନ କରୁଛି, ଦୋହନ କରୁଛି । ଯିଏ ବାରୋଟି ସନ୍ତାନର ଜନନୀ ହୋଇ ମଧ ପୁଣି ଗର୍ଭବତୀ ।

ରାତି ପ୍ରାୟ ଦୁଇଟା । ଧରିତ୍ରୀର କେତେକ ସନ୍ତାନ ଗୋଟାଏ ବିରାଟ ମାରଣାସ୍ତ୍ର ନେଇ ଚାଲିଛନ୍ତି ନୀରବରେ । ମାରଣାସ୍ତ୍ରର ପରୀକ୍ଷା ହେବ ଧରିତ୍ରୀର ସମୁଦ୍ର ବକ୍ଷରେ । ବ୍ୟୋମଯାନରୁ ମାରଣାସ୍ତ୍ର ନିକ୍ଷେପ କରାଗଲା । ଭୀଷଣ କଡ଼ କଡ଼ ଶବ୍ଦରେ ଧରିତ୍ରୀର ବକ୍ଷ ଆନ୍ଦୋଳିତ ହେବାକୁ ଲାଗିଲା । ଗଭୀର ବେଦନାରେ ଧରିତ୍ରୀ କମ୍ପିଉଠିଲେ । ନୀଳାକାଶ ସହସ୍ର ସହସ୍ର ବିସ୍ଫାରିତ ନୟନରେ ଅନାଇ ରହିଲେ । ଏ ମାରଣାସ୍ତ୍ର ଏକ ଲହମାରେ କୋଟି କୋଟି ମନୁଷ୍ୟ ବିନାଶ କରିପାରିବ । ଯେଉଁ ଦେଶର ସେ ମାରଣାସ୍ତ୍ର, ସେ ଦେଶର ରାଷ୍ଟ୍ରପତି ଆନନ୍ଦରେ, ଗର୍ବରେ ଆସ୍ଫାଳନ ବକ୍ତୃତା ଦେବାକୁ ଲାଗିଲେ । ଧରିତ୍ରୀର ଆଉ ଏକ ବୁକୁରେ ଦୁର୍ବଳ ସନ୍ତାନମାନଙ୍କ ଉପରେ ହିଂସ୍ର ପାଶବିକ ମନୁଷ୍ୟ-ସନ୍ତାନମାନେ ଆଦର୍ଶର ଦୁହାଇ ଦେଇ ଶୋଷଣ ଓ ହତ୍ୟାରେ ବ୍ୟାପୃତ ସେତେବେଳେ ।

ଧରିତ୍ରୀର ଆଉ କେତେଗୁଡ଼ିଏ ସନ୍ତାନ କେଉଁଠି ଚିତ୍କାର କରି ଘୋଷଣା କରିବାକୁ ଲାଗିଲେ, ହୁଆ, ହୁଆ ହତ୍ୟା ହୁଆ, ହତ୍ୟା ହୁଆ....

ଧରିତ୍ରୀ କଡ଼ ଲେଉଟାଇଲେ । ସେ ନିଜେ ଲେଉଟିଲେ ନାହିଁ, କାମଦେବ ତାଙ୍କୁ ଜବରଦସ୍ତି ଲେଉଟାଇ ଦେଲେ ନିଜ ଆଡ଼କୁ । ଧରିତ୍ରୀଙ୍କ ଆର କଡ଼ରେ କୋଳ-ଛୁଆଟି ନିଘୋଡ଼ ନିଦରେ ଶୋଇଛି; କିନ୍ତୁ ମୁହଁ ତା'ର ଲାଗିରହିଛି ସ୍ତନାଗ୍ରରେ । ଧରିତ୍ରୀ ଆରାମରେ ଶୋଇବା ପାଇଁ ଟିକିଏ ହଲଚଲ ହେବା ମାତ୍ରକେ ସେ ଚେଇଁ ଉଠି ଜୋରରେ ସ୍ତନକୁ ଜାବୁଡ଼ି ଧରି ସଶବ୍ଦେ ଦୋହନ କରିଯାଉଛି କିଛିକ୍ଷଣ ଧରି । କାମଦେବ ଅନେକ କ୍ଷଣ ଧରି ଅପେକ୍ଷା କରିଥିଲେ । ବିରକ୍ତ ହୋଇ ଶେଷରେ ସେ ନିଜ ବିଛଣାରୁ ଯାଇ ଧରିତ୍ରୀର ଗୋଟିଏ କଡ଼ରେ ଶୋଇଲେ । ଅପେକ୍ଷା କରି ରହିଥିଲେ, କେତେବେଳେ ଛୁଆଟା ସ୍ତନ୍ୟପାନ ଛାଡ଼ିଲେ ସେ ଧରିତ୍ରୀକୁ ନେବେ । ଶୋଇ ଶୋଇ ସେ ଧରିତ୍ରୀକୁ ଉପଭୋଗ କରିବାର ନାନା ଉତ୍ତେଜକ କଳ୍ପନା କରୁଛନ୍ତି । ଧରିତ୍ରୀର ଗୋଟିଏ ପଟରେ ଛୁଆଟି ଦୋହନ କରି ଚାଲିଛି ଓ ଅନ୍ୟ ପଟରେ ଛକି ବସିଅଛନ୍ତି କାମଦେବ ମଧ ସେଇଥିପାଇଁ ।

କାମଦେବ କହିଲେ ଶେଷରେ, ତୁମକୁ ସେ ଦୁହିଁ ଦୁହିଁ ଦୁର୍ବଳ କରିଦେବ । ସବୁ ରକ୍ତ ଶୋଷିଦେବ ତୁମର ।

ଧରିତ୍ରୀ ମ୍ଳାନ ଭାବରେ ହସି କହିଲେ, ଆଉ ତୁମେ କାହିଁକି ଆସିଲ ମୋ ବିଛଣାକୁ ! ଯେତକ ହୋଇଛନ୍ତି ସେତକ ତ ମଣିଷ ହେଉନାହାନ୍ତି....

କାମଦେବ ରାଗିଯାଇ କହିଲେ, ସେ ନୀତିକଥାଗୁଡ଼ାକ ଆଉ ଶୁଣାଅ ନାହିଁ ତମେ । ଯିଏ ପିଲାଛୁଆ ଦେଉଛନ୍ତି, ସିଏ ବୁଝିବେ ସେ କଥା ! ତୁମେ କିଏ ନା ମୁଁ କିଏ ? ସେଥିପାଇଁ ତୁମେ ଚିନ୍ତା କରନା ।

ଛୁଆଟି ଶୋଇପଡ଼ିଲାଣି । କାମଦେବ ନିଜକୁ ଭାଗ୍ୟବାନ୍ ମନେକଲେ, ଛୁଆଟା ଆଜି ସହଜରେ ଧରିତ୍ରୀକୁ ଛାଡ଼ିଦେଇଛି ! କାମଦେବ ଧରିତ୍ରୀକୁ ଭିଡ଼ିଆଣିଲେ ନିଜ ଆଡ଼କୁ । ଧରିତ୍ରୀ ପ୍ରତିବାଦ ନକରି ପଡ଼ିରହିଲେ କାଠଖଣ୍ଡ ପରି ଦେହକୁ କାଠକରି । ସେ ଜାଣନ୍ତି, କେତେଥର ଦେଖିଛନ୍ତି, ବାରଣ କଲେ କାମଦେବ ଉତ୍କ୍ଷିପ୍ତ ହୋଇଉଠନ୍ତି । ଛୁଆଟି ଇତିମଧ୍ୟରେ ଉଠିପଡ଼ି କିଛିକ୍ଷଣ ନିର୍ବାକ୍ ଭାବରେ ଚାହିଁ ଧରିତ୍ରୀଙ୍କ ବୁକୁ ଉପରକୁ କୁଦିପଡ଼ିଲା ଅଗତ୍ୟା । କାମଦେବ ପୁଣି ଅପେକ୍ଷା କରିବାକୁ ଲାଗିଲେ । ଛୁଆଟି ବୁକୁ ଉପରୁ ଖସିଯାଇ ଧରିତ୍ରୀକୁ ଲେଉଟାଇ ଦେଲା ତା ପଟକୁ ଓ ସ୍ତନ୍ୟପାନ କରିବାକୁ ଲାଗିଲା ।

ଧରିତ୍ରୀର ଏକ ସ୍ତନରୁ କୁଳୁକୁଳୁ ନାଦରେ ଝରଣା ବୋହିଯାଉଛି । ରାତ୍ରିଚରମାନେ ଧାଡ଼ି ଧାଡ଼ି ହୋଇ ତାହାର କୂଳରେ ବସି ନିଃଶବ୍ଦରେ ପାନ କରୁଛନ୍ତି । ଗୋଟାଏ ପଥରକଟା ଠିକାଦାର ସେ ସ୍ତନର ଅନ୍ୟପଟେ ବାରୁଦ ପୂରାଇ ଗୁଡ଼ୁମ୍ ଗୁଡ଼ୁମ୍ କରି ଫୁଟାଉଛି, ଫଟାଉଛି ସେ ସ୍ତନକୁ । ଧରିତ୍ରୀ କମ୍ପି ଉଠୁଛି ବାରମ୍ବାର । ଠିକାଦାର ଏ ସ୍ତନଟିକୁ ଠିକା ନେଇଛି । ଅଳ୍ପଦିନ ଭିତରେ ସେ ଏ ସ୍ତନକୁ ଧରିତ୍ରୀର ବୁକୁ ସହିତ ମିଶାଇଦେବ । ବହୁତ ଅର୍ଥ ଉପାର୍ଜନ କରିବ ସେ । ମହା ଉତ୍ସାହରେ ସେ ଦିନ ରାତି ଲାଗିଛି କାମରେ । ଆଉ ଏକ ଠିକାଦାର ପ୍ରକାଣ୍ଡ ଭଅଁରଦ୍ୱାରା ଧରିତ୍ରୀର ବୁକୁର ନାନା ସ୍ଥାନରେ ଗାତମାନ ଖୋଳି ରସ ଅନ୍ୱେଷଣରେ ବ୍ୟସ୍ତ । ଧରିତ୍ରୀର ବୁକୁତଳେ ଯେତେ ରସ ଅଛି ସେ ଶୋଷିନେବ !

ବିଲୁଆମାନେ ପୁଣି ଚିତ୍କାର କରି ଉଠିଲେ, ହତ୍ୟା ହୁୟା.....

କାମଦେବ ଆଉ ଅପେକ୍ଷା କରିପାରିଲେ ନାହିଁ । ପୁଣି ସେ ଜବରଦସ୍ତି ଧରିତ୍ରୀକୁ ଲେଉଟାଇ ଦେଲେ ନିଜ ପଟକୁ । ଛୁଆଟି କିଛିକ୍ଷଣ ଦୋହନ କଲା ପରେ ତୃପ୍ତିର ସହିତ ଶୋଇପଡ଼ିଛି । ଅଳ୍ପକ୍ଷଣ ଭିତରେ ତା'ର ତୃପ୍ତି ଚାଲିଯାଇ ପୁଣି ବୁଭୁକ୍ଷା ଜାତହେବ ! ଏଥର କାମଦେବ ଶୀଘ୍ର ଶୀଘ୍ର କ୍ରୀଡ଼ା କରିବାକୁ ଲାଗିଲେ । ଧରିତ୍ରୀକୁ ପ୍ରଲୋଭନ ଦେବାକୁ ଲାଗିଲେ, ଗହଣା ଦେବେ, ଭଲ ଶାଢ଼ୀ ଦେବେ । ଧରିତ୍ରୀ ପଡ଼ିରହିଲେ ସେମିତି ନିଶ୍ଚଳ ବିସ୍ଫାରିତ ନୟନରେ ଉପରକୁ ଚାହିଁ । କାମଦେବଙ୍କ ଗହଣା ଶାଢ଼ୀ ଦେବା କଥା ଶୁଣି ମ୍ଳାନ ଭାବରେ ଟିକିଏ ହସିଲେ କେବଳ । ନିଜ କ୍ରିୟାର ଅନୁରୂପ ପ୍ରତିକ୍ରିୟା ପାଇଁ ଧରିତ୍ରୀକୁ ପ୍ରଲୋଭନ ଦେବା କାମଦେବଙ୍କର ବ୍ୟର୍ଥ ହେବାରୁ ସେ ମନେ ମନେ ରାଗିଗଲେ ଓ ହିଂସ୍ର ଭାବରେ ଉପଭୋଗ କରିବାକୁ ଲାଗିଲେ ।

ଧରିତ୍ରୀର ବୁକୁରେ ଗୋଟାଏ ଭୂଗର୍ଭ ବୋମା ପୋତାହେଉଛି । ଏକ କାମାନ୍ଧ ହିଂସ୍ର ତଥାକଥିତ ଜନନାୟକ ସେ ମାରଣାସ୍ତ୍ରର କ୍ଷମତା ପରୀକ୍ଷା କରୁଛି । ତଥାକଥିତ ବୈଜ୍ଞାନିକମାନେ ଉପସ୍ଥିତ ଥାଇ ନିର୍ଦ୍ଦେଶ ଦେଉଛନ୍ତି । ଧରିତ୍ରୀ ପୁଣି ଥରେ କମ୍ପି ଉଠିଲେ । କମ୍ପି ଉଠିଲେ ବିଶ୍ୱମ୍ଭରା ଜନନୀ ! ବୈଜ୍ଞାନିକମାନେ ପରିମାପକ ଯନ୍ତ୍ରରେ ସେ କମ୍ପନର କ୍ରମ ଓ ପରିମାଣ ଦେଖି ଉଲ୍ଲସିତ ହୋଇ ନୃତ୍ୟ କରିବାକୁ ଲାଗିଲେ ।

ଧରିତ୍ରୀର ବୁକୁର ଏକ ନିଭୃତ କ୍ରୋଡ଼ରେ ଏକ ସନ୍ନ୍ୟାସୀ ବସିଛନ୍ତି ଚିନ୍ତାକୁଳ ଭାବରେ । ଏ ସନ୍ତାନଟି କଅଣ ଚାହେଁ ? ଏ ସନ୍ତାନଟି କବି ଦାର୍ଶନିକ । ବୈଜ୍ଞାନିକମାନେ ଧରିତ୍ରୀକୁ ଜଡ଼ ବସ୍ତୁପିଣ୍ଡ ବୋଲି ପ୍ରମାଣ କରିବା ସତ୍ତ୍ୱେ ଏ ସନ୍ତାନଟି ଧରିତ୍ରୀକୁ ପ୍ରାଣବନ୍ତ ରୂପେ ସ୍ପଷ୍ଟ ଦେଖିପାରୁଛି । ତାଙ୍କ

ମତରେ ଜଡ଼ରୁ କେବେହେଁ ଜୀବନ ସୃଷ୍ଟି ହୋଇ ପାରେନା, ଜୀବନରୁ ହିଁ ଜୀବନ ସୃଷ୍ଟି ହୁଏ । ପ୍ରତ୍ୟେକ ଧୂଳିକଣାର ମଧ୍ୟ ଜୀବନ ଅଛି । ଧରିତ୍ରୀ ଓ ଧରିତ୍ରୀର ସନ୍ତାନମାନଙ୍କ ଦୁଃଖରେ ଏ ସନ୍ତାନଟି କାତର । ସେ ଚିନ୍ତା କରୁଛି ଦୁଃଖ ମୋଚନର ପନ୍ଥା । ଧର୍ମ ଦର୍ଶନ ଆଦି ବର୍ତ୍ତମାନ ହିଂସାର ଅସ୍ତ୍ର ହୋଇଛନ୍ତି । ମନୁଷ୍ୟମାନେ ସେ ସବୁର ଦ୍ୱାହି ଦେଇ ପରସ୍ପରକୁ ହତ୍ୟା ଓ ଶୋଷଣ କରିବାରେ ଲାଗିଛନ୍ତି । ଏକ ମନୁଷ୍ୟ ବା ଦେଶ କେବଳ ନିଜର ସ୍ଥିତି ଓ ପ୍ରତିଷ୍ଠା ଚିନ୍ତା କରୁଥିବାରୁ ସେ ସର୍ବଦା ଭୀତ ଏବଂ ସେହି ଭୟରୁ ଜାତହୋଇଛି ହିଂସା; ତେଣୁ ସାମାନ୍ୟ ସମସ୍ୟା ମଧ୍ୟ ଭୟାବହ ଆକାର ଧାରଣ କରୁଛି । ଯାହା ନଖରେ ଛିଣ୍ଡିବା କଥା, ତାକୁ କୁରାଢ଼ି ଲାଗୁଛି । ସମସ୍ୟାଗୁଡ଼ିକ ଭୟାବହ ଆକାର ଧାରଣ କରୁଛନ୍ତି ଏବଂ ଯୁଦ୍ଧ ଛଡ଼ା ସମାଧାନର ଅନ୍ୟ ପନ୍ଥା ନାହିଁ ମନେହେଉଛି । ଏ ଭୟ, କାମ, କ୍ରୋଧ, ଲୋଭ ସୃଷ୍ଟିକର୍ତ୍ତା ମନୁଷ୍ୟ ମନରେ ଦେଇଛନ୍ତି ସତ, କିନ୍ତୁ ସେ ସବୁକୁ ବିଶ୍ଳେଷଣ କରି ଆତ୍ମଜ୍ଞାନ ଲାଭ କରିବାର ବୁଦ୍ଧି ମଧ୍ୟ ଦେଇଛନ୍ତି । ତେଣୁ ସେ ସବୁର ଦାସତ୍ୱ ପାଶବିକତା । ବିରାଟ ପ୍ରତି ଆକୃଷ୍ଟ ହେଲେ ମନୁଷ୍ୟ ନିଜର ପ୍ରତିଷ୍ଠା ପାଇଁ ହିଂସ୍ର ହୁଅନ୍ତା ନାହିଁ; ନିଜର ଅର୍ଥ, ଯଶ,ପ୍ରତିଷ୍ଠା ପ୍ରତିପତ୍ତି ପାଇଁ ଏତେ ଶଠ ନିର୍ମମ ହୁଅନ୍ତା ନାହିଁ । ମାନବିକତାକୁ ବିସର୍ଜନ ଦେଇ ପାଶବିକତାକୁ ବରଣ କରନ୍ତା ନାହିଁ । କି ଉପାୟରେ ମନୁଷ୍ୟକୁ ବିରାଟ ପ୍ରତି ଆକୃଷ୍ଟ କରାଯାଇ ବୁଦ୍ଧିର ବିକାଶ ଅଣାଯାଇପାରେ ? ଏପରି ଦେଶ କଅଣ ଗଢ଼ି ହେବନାହିଁ ଯିଏ ହିଂସ୍ର ଯୁଦ୍ଧରେ ଜୟକୁ ହିଁ ଏକମାତ୍ର ଗୌରବର ବିଷୟ ମନେ ନ କରି ଶାନ୍ତିର ବିକାଶକୁ ହିଁ ଗୌରବ ମନେକରିବ ।

ସନ୍ୟାସୀ ବିରାଟ ବିପ୍ଳବୀ । ଯିଏ ମନୁଷ୍ୟର ସହଜାତ କାମ, କ୍ରୋଧ, ଲୋଭକୁ ଓ ଅହମିକାକୁ ଉତ୍ତେଜିତ କରି ଜନପ୍ରିୟ ହୋଇ ଅଶାନ୍ତି ସୃଷ୍ଟିକରେ ଏବଂ ବହୁର ଆଧ୍ୟାତ୍ମିକ ଓ ଶାରୀରିକ ବିନାଶର କାରଣ ହୁଏ, ସେ ବିପ୍ଳବୀ ନୁହେଁ, ସେ ମନୁଷ୍ୟସମାଜର କର୍କଟ ରୋଗ । ଯିଏ ଶାନ୍ତିକାମୀ ସେଇ କେବଳ ବିପ୍ଳବୀ ।

ବୁଦ୍ଧ, ଯୀଶୁଖ୍ରୀଷ୍ଟ, ମହମ୍ମଦ, ଚୈତନ୍ୟ, ପରମହଂସ, ରାମମୋହନ, ଗାନ୍ଧିମାନେ ବିରାଟ ବିପ୍ଳବୀ ! କି ନିର୍ଭୟ ସେମାନେ ? ତେଣୁ ସେମାନଙ୍କ କୂଟନୈତିକ ବା ରାଜନୈତିକ ଶଠତା ଚାଲବାଜି ନାହିଁ । ଧର୍ମ ସେମାନଙ୍କ ପକ୍ଷରେ ରାଜନୀତି କୂଟନୀତିଠାରୁ ବଡ଼ ଶ୍ରେୟ !

ସନ୍ୟାସୀ ପ୍ରାର୍ଥନା କଲେ, ହେ ବିରାଟ ! ଯେଉଁ ଅହମିକା ତୁମେ ଦେଇଚ, ଯାହାର ସୁନିୟନ୍ତ୍ରଣରେ ବୁଦ୍ଧିର ବିକାଶ ଓ ପ୍ରବଳତାର ବିନାଶ, ସେ ଅହମିକାକୁ ତୁମେ ହିଁ ସମ୍ଭାଳ, କେତେ ବିଚିତ୍ର ତୁମେ । ତୁମକୁ ଜାଣିବାର ଚେଷ୍ଟା ମଧ୍ୟ କେତେ ବିଚିତ୍ର ଏ ସଂସାରରେ !!

ସନ୍ୟାସୀ କଳ୍ପନା କରୁଛନ୍ତି ଭବିଷ୍ୟତର ଜାତିସଂଘ ବିଷୟରେ ।... ଜାତିସଂଘରେ ନାନା ଦେଶର ହିଂସ୍ର ନୀତିର ପ୍ରତିନିଧି ନ ରହି, ରହିଛନ୍ତି ସମଗ୍ର ପୃଥିବୀର ବଛା ବଛା ସ୍ୱାର୍ଥତ୍ୟାଗୀ ଦାର୍ଶନିକ; ଯେଉଁମାନେ କୌଣସି ଦେଶର ପ୍ରତିନିଧି ନୁହନ୍ତି, ମାନବିକତାର ପ୍ରତିନିଧି । ଧରିତ୍ରୀର ନିରବଚ୍ଛିନ୍ନ ବିରାଟ ବୁକୁକୁ ଯେଉଁମାନେ ନିଜର ହିଂସ୍ରବୁଦ୍ଧିରେ ଖଣ୍ଡ ଖଣ୍ଡ ଭିନ୍ନ ଭିନ୍ନ ଦେଖି କ୍ଷୁଦ୍ର ଭୂଗୋଳ ଓ ଇତିହାସ ସୃଷ୍ଟି କରିବାରେ ଲାଗିଛନ୍ତି ପରସ୍ପରକୁ ହତ୍ୟାକରି ଓ ଶୋଷଣ କରି, ସେମାନଙ୍କର ପ୍ରତିନିଧି ନୁହନ୍ତି ସେମାନେ । ସେମାନେ ଗଢ଼ିବେ ଏକ ନୂତନ ସୈନ୍ୟ, ଯେଉଁ ସୈନ୍ୟମାନେ ଆନନ୍ଦରେ ବିରାଟର ଜୟଗାନ କରୁ କରୁ ଆଗେଇଯିବେ ନିର୍ଭୟରେ ତୋପ କମାଣ ମୁହଁକୁ ଯୁଦ୍ଧ ବନ୍ଦ କରିବାକୁ । କ୍ଷୁଦ୍ରତାର

ଇତିହାସ ଅନ୍ୟ ଯାହାର ଜୟଗାନ କରୁ ନା କାହିଁକି, ମାନବିକତାର ଇତିହାସ ଜୟଗାନ କରିଛି ଓ କରିବ କେବଳ ଏମାନଙ୍କର ଜୟଗାନ !

ଇତିମଧ୍ୟରେ ଧରିତ୍ରୀର ଛୁଆଟି ଉଠିପଡ଼ି ଚିତ୍କାର କରି କାନ୍ଦିବାକୁ ଲାଗିଲା । ଆଉ ଚେଷ୍ଟାକଲା କାମଦେବଙ୍କୁ ଧରିତ୍ରୀର ବୁକୁ ଉପରୁ ହଟାଇଦେବାକୁ । ଅନେକ କ୍ଷଣ ସେ ଶୋଇପଡ଼ିଥିଲା; କ୍ଷୋଭାର୍ତ୍ତ ହୋଇ ଉଠିଚି ସେ । ଏଥର ସେ ନଛୋଡ଼ବନ୍ଧା । କାମଦେବଙ୍କ ମଧ୍ୟ ସେଇ ଅବସ୍ଥା । ଦୁହେଁ ହିଁ ଲାଖିରହିଲେ ଧରିତ୍ରୀର ବୁକୁରେ । ଧରିତ୍ରୀ ପଡ଼ିଛନ୍ତି ସେମିତି ମୌନ ନିଶ୍ଚଳ ଭାବରେ । ତାଙ୍କ ବୁକୁ ଉପରେ ଲାଗିଛି ନାନା ଲୀଳା !

ବିଲୁଆମାନେ ଶେଷ ପ୍ରାହରିକ ରାବିଲେ, ହୁୟା, ହୁୟା ! ଆଉ ଥୋକେ ଦୂରରୁ ପଚାରିଲେ, କ୍ୟା ହୁୟା, କ୍ୟା ହୁୟା.... । ଆହୁରି ଦୂରରେ ଆଉ ଥୋକେ ଉତ୍ତର ଦେଲେ, ହତ୍ୟା ହୁୟା, ହତ୍ୟା ହୁୟା... ।

ଧରିତ୍ରୀ ଉଠିଲେ । ଅନାଇ ଦେଖିଲେ ସ୍ୱାମୀ ଓ ପୁତ୍ର ଦୁହେଁ ହିଁ ତାଙ୍କୁ ଦୋହନ କଲା ପରେ କ୍ଳାନ୍ତ ଭାବରେ ଶୋଇପଡ଼ିଛନ୍ତି । ଦୁହିଁଙ୍କୁ ହିଁ ତାଙ୍କର ଅବୋଧ ସନ୍ତାନ ଭଳି ମନେ ହେଲା । ଅଧରରେ ତାଙ୍କର ସ୍ମିତ ହାସ୍ୟ ଖେଳିଗଲା । ସେ ପ୍ରାର୍ଥନା କଲେ, ହେ ପରମ ପିତା, ଏମାନଙ୍କୁ ସଂଯମ ଦିଅ, ସୁସ୍ଥ ସବଳ କର, ବୁଦ୍ଧି ଦିଅ ।

ଆକାଶରେ ଏକ ସ୍ତବ୍ଧ ଭାବ । ସନ୍ନ୍ୟାସୀ ଯାଉଛନ୍ତି ଡାକିଡାକି, ହେ ଅମୃତର ସନ୍ତାନମାନେ ! ଉଠ, ଜାଗ, ବିରାଟ ପ୍ରତି ଆକୃଷ୍ଟ ହୁଅ, ତାହା ହିଁ ସବୁଠାରୁ ଶ୍ରେଷ୍ଠ !

ସନ୍ନ୍ୟାସୀଙ୍କ ଆହ୍ୱାନ ଶୁଣି ଧରିତ୍ରୀ ଆକାଶକୁ ଚାହିଁ ନମସ୍କାର କଲେ, ମୁହଁ ତାଙ୍କର ଆଶାରେ ଉଜ୍ଜ୍ୱଳ ହୋଇଉଠିଲା । ତା'ପରେ ସେ ଗୃହକାମ କରିବା ପାଇଁ ସବୁଜ କସ୍ତାଟି ପିନ୍ଧି ଉଠିଗଲେ ଚରକି ଭଳି ବୁଲିବାକୁ ।

ଧରିତ୍ରୀ ମଧ୍ୟ ଆକାଶକୁ ଚାହିଁ ହସିଲେ । ସେ ମଧ୍ୟ ଆଶାର ଆଲୋକରେ ଉଜ୍ଜ୍ୱଳ ହୋଇ ଉଠିଲେ । ସେ ମଧ୍ୟ ପ୍ରାର୍ଥନା କଲେ, ହେ ଅନନ୍ତ ପୁରୁଷ, ମୋର ସନ୍ତାନମାନଙ୍କ ମନରୁ ଅବୋଧତା ଦୂର କର, ସେମାନଙ୍କୁ କ୍ଷମାକର, ସୁସ୍ଥ ସବଳ କର, ସଂଯମ ଦିଅ ! କୋଟି କୋଟି ସନ୍ତାନ କ୍ରୋଡ଼ରେ ଧରି ସେ ମଧ୍ୟ ଚରକି ଭଳି ବୁଲୁଛନ୍ତି । ତାଙ୍କର ନିଇତିପିନ୍ଧା ସବୁଜ ଲୁଗାଟି ଆନନ୍ଦରେ ତରଙ୍ଗାୟିତ ହେବାକୁ ଲାଗିଲା ।

ସନ୍ନ୍ୟାସୀ ଚାଲିଛନ୍ତି ଗାଇ ଗାଇ -ସର୍ବେ ଭବନ୍ତୁ ସୁଖିନଃ, ସର୍ବେ ସନ୍ତୁ ନିରାମୟାଃ, ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିଦ୍ ଦୁଃଖଭାଗ୍ ଭବେତ୍ । ତାଙ୍କ ପ୍ରାର୍ଥନାରେ ଯେପରି ସବୁ ହିଂସ୍ରତା ସେ ଶୋଷଣ କରିଦେଲେ ନୀଳକଣ୍ଠ ଭଳି ।

# ସ୍ୱପ୍ନସିଦ୍ଧ

ନଲ୍‌ଠଣଟି ମିଞ୍ଜି ମିଞ୍ଜି ହୋଇ ଟେବୁଲ ଉପରେ ଜଳୁଛି । ଚାରିଆଡ଼େ ନିସ୍ତବ୍‌ଧ । କେବଳ ପଡ଼ିଶା ଘରର ଅଝଟ ପିଲାର ତୁହାଇ ତୁହାଇ କାନ୍ଦଣା ଭାସି ଆସୁଛି । ମିମି ଓ ଟୁକୁନା ଶୋଇପଡ଼ିଲେଣି । ମାତ୍ର କିଛିକ୍ଷଣ ଆଗେ ସେମାନଙ୍କର କଳି, ପିଟାପିଟି ବନ୍ଦ ହୋଇଛି । ବୋଉ କାହା ଆଡ଼କୁ ମୁହଁ କରି ଶୋଇବ ଏଥିପାଇଁ ସେମାନଙ୍କ ଭିତରେ ପ୍ରବଳ କଳି ଚାଲିଥିଲା । ପ୍ରୀତି ମଧ୍ୟ ନିଘୋଡ଼ ନିଦରେ ଶୋଇପଡ଼ିଚି । କିନ୍ତୁ ତାର ପଙ୍ଖା ବୁଲାଇବା ବନ୍ଦ ହୋଇ ନାହିଁ କି ଗୀତଟି ମଧ୍ୟ ବନ୍ଦ ହୋଇ ନାହିଁ । ସେ ନିଦ୍ରାଜଡ଼ିତ କଣ୍ଠରେ ଗାଇ ଚାଲିଛି, ''ମିମି ମୋର ସୁନା ଝୁଅ.. ।'' କେଉଁ ସପନ ରାଇଜରୁ ଗୋଟିଏ ଅପୂର୍ବ ସ୍ୱର ଯେମିତି ଭାସି ଆସୁଛି । ଆଉ ତା ସହିତ ମିଶିଚି ପଙ୍ଖାର ଅବିରାମ ଘୋଷା.... କେଁ..... କେଁ । ପ୍ରୀତିର ସେ ଗୀତରେ କି ମୋହିନୀ ଶକ୍ତି ଅଛି କେଜାଣି, ଶୁଣିବା ମାତ୍ରେ ମିମି, ଟୁକୁନା ପରି ଦୁର୍ଦ୍ଦଣ୍ଡ ପ୍ରତାପୀମାନେ ମଧ୍ୟ ଶୋଇପଡ଼ିଲେ ।

ସୁଦାମବାବୁ ଧୀରେ ବିଛଣାରୁ ଉଠି ଶାନ୍ତିର ନିଃଶ୍ୱାସ ମାରି ବାଣ୍ଡଘରକୁ ଗଲେ ଲେଖିବାକୁ । ଅତ୍ୟାଧୁନିକ ଲେଖକମାନଙ୍କ ମଧ୍ୟରେ ତାଙ୍କର ସ୍ଥାନ ଅତି ଉଚ୍ଚ । ଯେତେ ଅଦ୍‌ଭୁତ ଶବ୍ଦ ସେ ସୃଷ୍ଟି କରୁଛନ୍ତି, ତାଙ୍କର ଭାଷା, ଭାବ ଓ ଉପମା ଯେତେ ଦୁର୍ବୋଧ ହେଉଛି, ତାଙ୍କର ସ୍ଥାନ ସେତେ ଦୃଢ଼ ହେଉଚି । କିଛିଦିନ ହେବ ଗୋଟିଏ ଅତି ଜଟିଳ ଓ ବିଜ୍ଞାନସମ୍ମତ ପ୍ରେମମୂଳକ ଗଳ୍ପ ତାଙ୍କର ମନକୁ ଆସୁଛି । ଫ୍ରଏଡ଼୍, ଆଡ଼ଲର୍, ଓ ୟୁଙ୍ଗଙ୍କ ମନ ସମୀକ୍ଷା, ଡାର୍‌ଉଇନ, ବର୍ଗସନ୍ ଓ ମାର୍କସ୍‌ଙ୍କ ବିବର୍ତ୍ତନବାଦ, ପଦାର୍ଥ ବିଜ୍ଞାନର ପରମାଣୁ ତତ୍ତ୍ୱ ଓ ଆଇନଷ୍ଟାଇନଙ୍କ ଆପେକ୍ଷିକବାଦ ସହିତ ଜ୍ୟାମିତିର ତୃତୀୟ ଉପପାଦ୍ୟ ଓ ହିନ୍ଦୁଧର୍ମର ଜନ୍ମାନ୍ତରବାଦ ମିଶାଇ ସେ ଗୋଟିଏ ଅପୂର୍ବ ଓ ଅଦ୍ଭୁତ ଉପନ୍ୟାସ ଲେଖିବାର କଳ୍ପନା କରିଚନ୍ତି । କିନ୍ତୁ ଘରେ ଯେଉଁ ଗୋଳମାଳ, ଟୁକୁନା ଓ ମିମି ମଧ୍ୟରେ ଯେଉଁ ଖଣ୍ଡଯୁଦ୍ଧ ଚାଲିଚି ସେଥିରେ ଲେଖିବା ତ ଦୂରର କଥା, ଭାବନା ମଧ୍ୟ ମିଳେଇ ଯାଉଚି । ନଲ୍‌ଠଣଟି ଧୀରେ ଟେବୁଲ ଉପରେ ଥୋଇ ଟିକିଏ ତେଜିଦେଇ କାଗଜ ବାହାର କରି କଲମ ଧରିଛନ୍ତି କିନା, ମିମି ଧଡ଼ପଡ଼ କରି ଉଠିବସି ଚିତ୍‌କାର କରି କାନ୍ଦି ଉଠି କହିଲା ....''ବୋଉ, ଦେଏଖେ ଭାଇକୁ..... ।''

କଲମ କାଗଜ ଥୋଇଦେଇ ଥକ୍‌କା ହୋଇ ବସିପଡ଼ି ସୁଦାମ ବାବୁ କୁଳଦେବତାଙ୍କ ନାମ ଉଚ୍ଚସ୍ୱରରେ ଜପିବାକୁ ଲାଗିଲେ, ରଘୁନାଥ, ରଘୁନାଥ ହେ ! ମିମିର ଚିତ୍କାର କ୍ରମେ ତୀବ୍ର ହେବାକୁ ଲାଗିଲା । କାଗଜଟା ଟିକି ଟିକି କରି ଚିରିଦେଇ, କଲମ ମୁନଟାକୁ ଟେବୁଲ ଉପରେ ଗୋବା ମାରି ଦନ୍ତଡ଼ା କରିଦେଇ, ନଲ୍‌ଠଣଟାକୁ ଜଚାଡ଼ି ଚୂର୍ଣ୍ଣବିଚୂର୍ଣ୍ଣ କରି ଘରୁ ସନ୍ନ୍ୟାସୀ ହୋଇ ବାହାରିଯିବାର

ଅଦମ୍ୟ ଉତ୍ତେଜନା ଜାତ ହେଲା । କିନ୍ତୁ ସେସବୁ କିଛି ନ କରି ହତାଶ ଭାବରେ କୁଳଦେବତାଙ୍କ ନାମ ଉଚ୍ଚାରଣ କରି ସେ ମୁଣ୍ଡରେ ହାତ ଦେଇ ବସିରହିଲେ ଓ ବାରମ୍ବାର ପ୍ରୀତି ଆଡ଼େ ତରାଟି ଚାହିଁବାକୁ ଲାଗିଲେ ।

ପ୍ରୀତି କିନ୍ତୁ ନିର୍ବିକାର ଭାବରେ ଶୋଇଚି ଓ ଗାଇ ଚାଲିଚି..... ମିମି ମୋର ସୁନା ଝିଅ...

ସୁଦାମ ବାବୁ ନିର୍ମମ ଶାନ୍ତ ଭାବରେ ପଚାରିଲେ, ''ହଇ ହୋ, ମିମି ଗଳା ସାଧୁଛି କି ?''

ପ୍ରୀତି ଧଡ଼ପଡ଼ ହୋଇ ଉଠିବସି ସୁଦାମବାବୁଙ୍କ ଆଡ଼େ ଚାହିଁ ଫିକ୍କିନା ହସିଦେଇ ମିମିର ମୁହଁ ଚାପି ଧରି କହିଲା, ''ଚୁପ୍, ଚୁପ୍ ପୋଡ଼ାମୁହିଁ ।'' କିନ୍ତୁ କାହାର ଶକ୍ତି ଅଛି ଯେ ରୋଦନ ରୋଧ କରିବ ।

ଖଟ ଉପରେ ଦୁମ୍ ଦୁମ୍ ଶବ୍ଦ ହେବାକୁ ଲାଗିଲା । ଟୁକୁନା ମିମିର ଅଭିଯୋଗରେ ଉତ୍ତେଜିତ ହୋଇ ଉଠିବସି ବାଲିଶ୍ ଉପରେ ବିଧା ମାରୁଛି । ଏଇଟା ତାହାର ପ୍ରାକ୍‌ଯୁଦ୍ଧ ଆସ୍ଫାଳନ । ସୁଦାମ ବୁଝିଲେ, ଆଉ ଅଳ୍ପ ସମୟ ପରେ ପ୍ରତ୍ୟକ୍ଷ ଯୁଦ୍ଧ ଆରମ୍ଭ ହୋଇଯିବ । ହେଲା ମଧ୍ୟ ତାହା । ବାଲିଶ୍ ସବୁ ଏଣେତେଣେ ଉଡ଼ିବାକୁ ଲାଗିଲେ । ଟୁକୁନା ବାଲିଶ୍‌ମାନଙ୍କୁ ଇଣ୍ଟାରକଣ୍ଟିନେଣ୍ଟାଲ ବାଲିଷ୍ଟିକ୍ ମିଶାଇଲ୍ ରୂପେ ବ୍ୟବହାର କରେ ।

ଏ'ଙ୍କ ଜ୍ୱାଳାରେ ମଣିଷ ଟିକିଏ ଶୋଇ ପାରିଲା ନାହିଁ, ମୁଁ ମରିଯାଆନ୍ତି କି ଭଗବାନ୍ । ପ୍ରୀତି ଆକ୍ଷେପ କରି କହିଲା ଏବଂ ତା ପରେ ମିମି ଓ ଟୁକୁନା ପିଠିରେ ଦୁଇ ଚାରିଟା ବିକ୍ଷିପ୍ତ ବିଧା ଥୋଇଦେଇ ଟୁକୁନାର କାନ ଧରି କହିଲା, ''ହଇରେ ତୁ କାହିଁକି ମିମି ଆଡ଼େ ଗୋଡ଼ ଦେଲୁ ?''

''ସେ କାହିଁକି ମୋ ଆଡ଼େ ହାତ ରଖିଲା ?'' ଟୁକୁନା ପାଲଟା ପ୍ରଶ୍ନକଲା ତାର ସ୍ୱରରେ ।

ଛିଃ ଛିଃ ତୁମେ ଦୁଇଟା ଏତେ ହିଂସକୁରିଆ । ଏଇ ଟୁକୁନାଟା ଭାରି ବାଦୁଆ, ସାନ ଭଉଣୀଟା ସାଙ୍ଗରେ ବରାବର ବାଦ ।

ଟୁକୁନାର ଚରିତ୍ର-ପଞ୍ଜିକାରେ ଏପରି କଟୂମନ୍ତବ୍ୟ ଅନେକ ଥର ଅନର୍ଭୁକ୍ତ ହେଲାଣି । ଟୁକୁନାର ମନ୍ତବ୍ୟ ପ୍ରତି ଭ୍ରୂକ୍ଷେପ ନାହିଁ । ଉପରନ୍ତୁ ସେ ଆହୁରି ରାଗିଯାଇ ମିମି ପିଠି ଉପରେ ଦୁମ୍‌ଦାମ୍ ବି'ଟା ଥୋଇଦେଲା । ମିମି ଆଉ କିଛି କରି ନ ପାରି ପ୍ରୀତିର ବାହୁକୁ କାମୁଡ଼ିଦେଲା ।

''ମରିଗଲି ଲୋ ବୋଉ'', ପ୍ରୀତି ବେଦନାରେ ଚିତ୍କାର କରି ଉଠିଲା ।

ମିମି ପେଟରେ ରହିବା ଦିନୁ ଟୁକୁନାର ବାଦ । ସେତେବେଳେ ସେ କଥା କହିବାକୁ ଶିଖିନାହିଁ । ତାର ହିଂସା ପ୍ରକାଶ ପାଇଛି ସେତେବେଳେ ବଡ଼ ବେଦନାମୟ ଭାବରେ । ମିମିର ଗର୍ଭସ୍ଥିତି ସାଙ୍ଗେ ସାଙ୍ଗେ ଟୁକୁନା ରୋଗରେ ପଡ଼ିଲା । ସଦାବେଳେ ଚିଡ଼ିଚିଡ଼ି ଆଉ ଅଝଟପଣିଆ ତାର ଆରମ୍ଭ ହେଲା, ଆଉ ବୋଉ କୋଳରେ ରହିବାକୁ ସଦାବେଳେ ଜିଦ୍ ଧରି ବସିଲା । ମିମି ଜନ୍ମ ହେବା ପରେ ସୂତିକା ଗୃହର ଦୁଆର ମୁହଁରେ ଚୁପ୍ କରି ଛିଡ଼ାହୋଇ ମିମି ଆଡ଼େ ଗୋଟାଏ ଅପ୍ରସନ୍ନ ଦୃଷ୍ଟି ନିକ୍ଷେପ କରି ସେ ଗୋଟିଏ ଘରର କୋଣରେ ଚୁପ୍ କରି ବସିରହିଲା । ତା ପରେ ମିମିକୁ ଯେତେବେଳେ ସେ ଦେଖିଚି ସ୍ତନ୍ୟପାନ କରିବାର ସେତେବେଳେ ତାକୁ ଠେଲି ବୋଉ କୋଳରୁ ତଳେ ପକାଇ ଦେବାକୁ ଚେଷ୍ଟା କରିଚି । ମିମିକୁ ଏକା ପାଇ ସେ ତାକୁ ଚିମୁଟି ଦେଇଚି । ବିଧା ମାରି ପଳାଇଯାଇଚି । ସୁଦାମବାବୁ ଟୁକୁନାର ଏପରି ବ୍ୟବହାର ଦେଖି ବ୍ୟଥିତ ହୋଇପଡ଼ିଛନ୍ତି ।

ପ୍ରୀତି କହିଲା, ଏ ଦି'ଟା ତଳ ଉପର ଭାଇ ଭଉଣୀ -ସଦାବେଳେ କଜିଆ ଲାଗିବେ ଏମାନେ ।

ଦୁଇ ଜଣକୁ ଅଲଗା ଅଲଗା ଶୁଆଇ ସେମାନଙ୍କ ମଝିରେ ଶୋଇ କାହାରି ଆଡ଼କୁ ମୁହଁ ନ କରି ଚିତ୍‌କରି ଶୋଇ ପ୍ରୀତି ବାଘ ଗପ କହିବାକୁ ଲାଗିଲା...ମିମି, ତୁ ଦେଖିଚୁନା ସେ ବାଘ । ମା'ଲୋ ଏତ୍‌ତେ ବଡ ବଡ କାନ, ଏତ୍‌ତେ ବଡ଼ ବଡ଼ ଦାନ୍ତ, ଏତ୍‌ତେ ବଡ଼ ବଡ଼ ଗୋଡ଼, ଏତ୍‌ତେ ବଡ ବଡ ବଡ ହାତ.... ।

ବାଘର ହାତ ଥାଏ କି ? ବୋଉ, ତୁ ମିଛ କହୁଚୁ, ଠାକୁର ତୋତେ ମାରିବେ । ଟୁକୁନା ଚେତାଇ ଦେଲା ବୋଉକୁ ବୋଉର ନିଜ ଉପଦେଶ କଥା. ମିଛ କହିଲେ ଠାକୁର ମାରନ୍ତି ।

ନାଇଁ, ବାଘର ହାତ ନାହିଁ, ଭୁଲରେ କହିଲି ।

କିନ୍ତୁ ମିମି ତାହା ସ୍ୱୀକାର କରିବାକୁ ନାରାଜ । ସେ କହିଲା, ବୋଉ ବାଘର ହାତ ଅଛି, ନାଇଁ ବୋଉ ? ସେ ଭାତ ଖାଏ କେମିତି ?

ପ୍ରୀତି ଏହାର ଉତ୍ତର ନ ଦେଇ କହିଚାଲିଲା, ବାଘ ଆସି କହିଲା, ହାଉଁ ମାଉଁ ଖାଉଁ, ମଣିଷ ଗନ୍ଧ ପାଉଁ, କିଏ କାନ୍ଦୁଚି ରେ ? ମୁଁ କହିଲି, ନାଇଁ ମିମି କାନ୍ଦୁନାହିଁ, ଯା ଯା ତୁ ଯା । ବାଘ କହିଲା, ଆଚ୍ଛା ହଉ ମୁଁ ଯାଉଚି, ପେଏରେ କାନ୍ଦିଲେ ନେଇଯିବି ।

ବାଘର କଥା କହିବା ଶକ୍ତିରେ ଟୁକୁନାର ଆପତ୍ତି ନାହିଁ । ମିମି ଓ ଟୁକୁନା ଦୁହେଁ ଆଖି ବଡ଼ ବଡ଼ କରି ଗପ ଶୁଣୁଚନ୍ତି ।

ଟୁକୁନା କହିଲା, ବୋଉ, ବାଘ ମିମିକୁ ନେଇଯାଉ, ସେ ମୋର ସିଲଟଖଡ଼ି ଖାଇ ଦଉଚି ।

ଏ ଅଭିଯୋଗ ସତ୍ୟ ଅଟେ । ମିମି ସିଲଟଖଡ଼ିର ଲେଖନୀ ରୂପେ ବ୍ୟବହାରକୁ ଆଦୌ ପସନ୍ଦ କରି ନାହିଁ । ସେ ଗବେଷଣା କରି ଦେଖିଚି ତାହା ଖାଦ୍ୟ ରୂପେ ଉତ୍କୃଷ୍ଟତର । କିନ୍ତୁ ବୋଉକୁ ଜାପୁଡି ଧରି ସେ କହିଲା, କୁନାକୁ ନଉ ।

ତା ପରେ ପ୍ରୀତିର ଦୁଇ କଡ଼ରୁ ଆରମ୍ଭ ହେଲା ପ୍ରତ୍ୟକ୍ଷ ବାକ୍‌ଯୁଦ୍ଧ ।

ତୋତେ ନଉ ।

ତୋତେ ନଉ ।

ପ୍ରୀତିର ଛାତିକୁ ଯୁଦ୍ଧକ୍ଷେତ୍ର କରି ଦୁହେଁ ତା ଉପରେ ଯୁଦ୍ଧ କରିବାକୁ ଲାଗିଲେ ।

ପ୍ରୀତି ଦୁଇଜଣଙ୍କୁ ଦୁଇ ଆଡ଼କୁ ଠେଲିଦେଇ ଉଠିବସି କହିଲା, ''ତୁମେ ଦୁହେଁ ଯଦି ଏମିତି ହବ ମୁଁ ଯାଉଚି ଘରୁ ବାହାରିଯିବି । ମୋତେ ବାଘ ନଉ । ବାଘ ନଉ ମୋତେ ।''

ମିମି କହିଲା, ''ମୁଁ ବାଘକୁ ଭାତ ଖାଇବାକୁ ଦେବି, ସେ ନବ ନାହିଁ ।''

ଟୁକୁନା କହିଲା, ''ମୁଁ ବାଘକୁ ଗୁଳିକରି ମାରିଦେବି ମୋ ବନ୍ଧୁକରେ ।''

ପ୍ରୀତି ଖଟରୁ ଓହ୍ଲାଇ ଚାଲିଲା ବାହାରକୁ । ମିମି ଟୁକୁନା ଦୁହେଁ ତାକୁ ଦୁଇପଟୁ ଜାପୁଡି ଧରିଲେ । ପ୍ରୀତି ସେମାନଙ୍କୁ ଠେଲିଦେଇ ବାହାରିଗଲା । ବାହାରି ଗଲା ଏକଦମ୍ ବାହାରକୁ ।

ଭାଇ ଭଉଣୀ ଦୁହେଁ ଥମ୍ କିନା ଛିଡ଼ା ହୋଇ ରହିଲେ । ଆଖି ଛଳ ଛଳ କରି ଦୁହେଁ ଦୁହିଁଙ୍କୁ ଚାହିଁରହିଲେ ।

କିଛିକ୍ଷଣ ବିରାମ । ସୁଦାମବାବୁ ସୁବିଧା ପାଇ ପୁଣି ଲେଖିବାକୁ ଆରମ୍ଭ କଲେ । ତାଙ୍କର ଉପନ୍ୟାସରେ ସେତେବେଳେ ଅତି ଜଟିଳ ପରିସ୍ଥିତି ଉପୁଜିଛି । ...ବହୁଯୁଗ ପୂର୍ବରେ ଭା.ଦେଶରେ ଯେଉଁ ଆଧାତ୍ମିକ ସ୍ପନ୍ଦନ ହୋଇଥିଲା ସେଗୁଡ଼ିକ ବ୍ୟୋମରୁ ସଂଗ୍ରହ କରି ଭା.ଦେଶ ସଞ୍ଚୟ ରଖିଚି ଓ ତେଣୁ ସମସ୍ତ ପୃଥିବୀର ସେ ଆଧାତ୍ମିକ ଗୁରୁ ହୋଇଚି । ବର୍ତ୍ତମାନ ଭା.ଦେଶ ଅନ୍ୟ ଦେଶକୁ ସେ ସ୍ପନ୍ଦନଗୁଡ଼ିକ ପଠାଉଚି । ଏଣେ କଣ ହୋଇଚି ନା କା ଦେଶ ପୃଥିବୀରେ ପ୍ରଧାନ ଗଣତନ୍ତ୍ର ଉପାସକ ହୋଇଛି, ପୃଥିବୀର ପ୍ରତ୍ୟେକ ମନୁଷ୍ୟର ଚିନ୍ତା ଓ ମତ ପ୍ରକାଶର ସଂପୂର୍ଣ୍ଣ ସ୍ୱାଧୀନତାକୁ ସେ ଯେପରି ସମ୍ମାନ ଦେଇଚି ଆଉ କୌଣସି ଦେଶ ସେପରି କରିପାରି ନାହିଁ । ଏକ ଲହମାରେ ପୃଥିବୀର ଜନସଂଖ୍ୟାର ୨୦ ଗୁଣ ଲୋକ ମାରିଦେବାର ସଞ୍ଚୟ କରି ରଖି ପୃଥିବୀର ବିଭିନ୍ନ ଦେଶକୁ ସେ ଗଣତନ୍ତ୍ର ସ୍ପନ୍ଦନ ପଠାଉଚି । ତେଣେ ପୁଣି କଅଣ ହୋଇଚି ନା ସା. ଦେଶ ହୋଇଚି ପୃଥିବୀର ଶ୍ରେଷ୍ଠ ଜନମଙ୍ଗଳକାରକ ଦେଶ । ଶୋଷିତମାନଙ୍କର ଏକମାତ୍ର ଉଦ୍ଧାରକ । ଅର୍ଦ୍ଧ ଲହମାରେ ପୃଥିବୀର ଜନସଂଖ୍ୟାର ୪୦ ଗୁଣ ଲୋକ ମାରିଦେବାର ଶକ୍ତି ଆହରଣ କରିବାରେ ଲାଗିପଡ଼ି ଚାରିଆଡ଼େ ସେ ଜନମଙ୍ଗଳ ସ୍ପନ୍ଦନ ପଠାଉଚି । ଏହି ଶକ୍ତିମାନ୍ ସ୍ପନ୍ଦନଗୁଡ଼ିକ ସ୍ୱ ସ୍ୱ ଗତିପଥରେ ଯାଉ ଯାଉ ବ୍ୟୋମରେ ଏକତ୍ର ମିଳିତ ହୋଇ ସେଠାରେ ସୃଷ୍ଟି ହୋଇଚି ଏକ ପ୍ରଚଣ୍ଡ ସ୍ପନ୍ଦନାବର୍ତ୍ତ । ଏପରି ସମୟରେ ନାୟିକା କାର୍ ବୋଲିକା $\sqrt{\frac{1}{2}}$ ଫ ଚନ୍ଦ୍ରଲୋକରେ ଥିବା ତାର ପୂର୍ବଜନ୍ମର ପ୍ରେମିକ ପାଖକୁ ପଠାଉଚି ୨ ଆଙ୍ଗସ୍ଟ୍ରାମ୍ ଇଉନିଟ୍‌ର ଇଲେକ୍‌ଟ୍ରୋମାଗ୍‌ନେଟୀକୃତ ପ୍ରେମ । ଇୟାଡ଼େ ତାହାର ଦୁଇ ଜନ୍ମ ପୂର୍ବର ସ୍ୱାମୀ ଠିକ୍ ସେତିକିବେଳେ ୪ ଗ୍ରାମ ଦ୍ରବୀଭୂତ ପ୍ରେମ ପଠାଉଥିଲେ...

ଏତିକିବେଳେ ସୁଦାମବାବୁ ଚକିତେ ଶୁଣିଲେ ସେ କ୍ରନ୍ଦନ ଧ୍ୱନି... ବୋଉ ମ ବୋଉ । ମିମି ଓ ଟୁକୁନାର ଐକ୍ୟ କ୍ରନ୍ଦନ ।

କଲମ ଧୀରେ ଥୋଇଦେଇ ସୁଦାମବାବୁ ମନେ ମନେ କହିଲେ, "ଧେତ୍, ଏ ଘରେ କେହି କେବେ ଲେଖକ ହେଲେଣି ନା ହେବେ । ସ୍ତ୍ରୀ ସିନା ଟିକିଏ ପ୍ରେରଣା ଦିଅନ୍ତା । ସେ କଥା ତ ଦୂରେ ଥାଉ, ଯେତେ ରକମର ବାଧା ସୃଷ୍ଟି କରୁଚି । ପ୍ରେମ କରି ବାହା ହବାକୁ ଆଶା କରିଥିଲି ଯେ ସେ ତ ହେଲା ନାହିଁ । ବୟସ ଗଡ଼ାଇ ବାହାହେଲି ଯେ ଜୁଟିଲା ଗୋଟାଏ ବେରସିକା, ସଦାବେଳେ ଘରକାମ ବା ପିଲାଛୁଆ ନେଇ ବ୍ୟସ୍ତ, ମୋତେ ପ୍ରେରଣା ଦେବାକୁ ବେଳ କାହିଁ ତାର । ଶ୍ୟେଃ, ଏମିତିରେ କେହି କେବେ ଲେଖକ ହେଲେଣି ? ଆଉ ପିଲାଗୁଡ଼ାକ ହୋଇଚନ୍ତି ବି ଧେତ୍ ।"

ପିଲା ଯୋଡ଼ିଙ୍କର କ୍ରନ୍ଦନ କ୍ରମେ ତୀବ୍ରତର ହେବାକୁ ଲାଗିଲା ।

କଲମ ରଖିଦେଇ ସୁଦାମବାବୁ ଡାକିଲେ "ହଇ ହୋ ଶୁଣୁଚ !"

ପ୍ରୀତି ଅନ୍ଧାର କଣରୁ ବାହାରି ପଡ଼ି ହସି କହିଲା, "ମୁଁ ଆଉ କଅଣ କରିବି କୁହ ?"

"ଯଦି ଜଣେ ଅଦ୍ଭୁତ ଲେଖକର ସ୍ତ୍ରୀ ଭାବରେ ମର୍ଯ୍ୟାଦା ପାଇବାକୁ ତୁମେ ଚାହଁ, ତେବେ ଦୟାକରି ଟିକିଏ ଚୁପ୍ କରାଅ ସେଗୁଡ଼ାକୁ," ସୁଦାମବାବୁ ହାତଯୋଡ଼ି କହିଲେ ।

ପ୍ରୀତି ଖିଲିଖିଲି ହସି ମିମି ଓ ଟୁକୁନାକୁ କୋଡ଼କୁ ଆଉଜାଇନେଇ ଗାଇବାକୁ ଲାଗିଲା...

"ତୁମକୁ ଛାଡ଼ି ମୁଁ କେଉଁଠି ଯିବିରେ, ମୋ ମିମି କୁନା....

"ତୁମରିପାଇଁ ତ ମରିବି ନାହିଁରେ, ମୋ ମିମି କୁନା...

''ମଲେ ଭୂତ ହୋଇ ତୁମଠି ଥିବିରେ, ମୋ ମିମି କୁନା....''

''ଦୟାକରି ତୁମର କାବ୍ୟ ସ୍ରୋତ ଟିକିଏ ବନ୍ଦ କରିବ କି ?'' ତାଙ୍କର ବିନୟରେ ଚରମ ବିରକ୍ତି ପରିସ୍ଫୁଟ ହୋଇଉଠିଲା ।

''ଏ କବିତା ସୁଅ କିଏ ରୋଧିବରେ, ମୋ ମିମି କୁନା'' ...ପ୍ରୀତି ସେ ବିନୟ ପ୍ରତି ଭ୍ରୂକ୍ଷେପ ନ କରି ଗାଇ ଚାଲିଲା ।

ସୁଦାମବାବୁ ଅଧିକ ବିରକ୍ତ ହୋଇ କହିଲେ, ''ଧେତ୍, ଏ ଘରେ ଆଉ ରହିବି ନାହିଁ ।'' ଦୁମ୍ କରି ଚୌକି କଚାଡ଼ି ସୁଦାମବାବୁ ଉଠି ଛିଡ଼ାହେଲେ ବାହାରିଯିବାକୁ ।

''ମିମି କୁନା ଛାଡ଼ି କେଉଁଠି ଯିବ ହୋ ମୋ ଧନମଣି...''

''କଅଣ କହିଲ କଅଣ କହିଲ ??'' ଯାଉ ଯାଉ ଥମକି ଛିଡ଼ା ହୋଇ ଉଦ୍‌ଗ୍ରୀବ ଭାବରେ ସୁଦାମବାବୁ ପଚାରିଲେ । 'ମୋ ଧନମଣି' କଥାଟାକୁ ଦୋହରାଇ ମନେ ମନେ କହିବାକୁ ଲାଗିଲେ ।

''ଯେଣେ ଯିବ ଏଣେ ଆଣିବେ ଟାଣି ହୋ, ମୋ ଧନମଣି....

(ଆଉ) ଧନମଣି ଏଠି ବନ୍ଧା ହୋଏଙ୍ଗା ହୋ, ମୋ ଧନମଣି....''

ଶେଷ ପଦରେ ସୁଦାମବାବୁ ହଠାତ୍ ଉତ୍‌କ୍ଷିପ୍ତ ହୋଇ କହିଲେ, ''ବନ୍ଧା ହୋଏଙ୍ଗା ? ଦେଖେଙ୍ଗା, କେମିତି ବନ୍ଧା ହୋଏଙ୍ଗା ।'' କହି ସେ ଚୌକି ଉପରେ ଦୁମ୍‌କରି ବସିପଡ଼ିଲେ ଦୃଢ଼ଭାବରେ ।

ପ୍ରୀତି ଅପାଙ୍ଗ ଦୃଷ୍ଟିରେ ସୁଦାମବାବୁଙ୍କ ଆଡ଼େ ଚାହିଁ ମୁରୁକି ହସି ମିମି ଓ ଟୁକୁନାକୁ କୋଡ଼ରେ ଚାକି ଶୋଇପଡ଼ିଲା ।

ମିମି କହିଲା, ''ବୋଉ, ଚାଚୁ ଘର କଥା କହ ।''

ପ୍ରୀତି ପୁଣି ସ୍ୱର କରି ଗାଇବାକୁ ଲାଗିଲା, ''ଚାନ୍ଦମାମୁ ହୋ ଆଲୁଅ କର, ମିମି ଯିବ ହୋ ଶାଶୁଘର, ସାଙ୍ଗରେ ଯିବ କିଏ ?.. ଆଲୋ ମିମି ତୋ ସାଙ୍ଗରେ ଶାଶୁଘର କିଏ ଯିବ ?''

ମିମି ନିର୍ବିକାର ଭାବରେ କହିଲା, ''ଟୁକୁନା ଭାଇ ।''

ନାଇଁ ନାଇଁ, ''ମୁଁ ତା ସାଙ୍ଗରେ ଯିବି ନାହିଁ ।'' ଟୁକୁନା ଘୋର ଆପତ୍ତି ଶୁଣାଇ ଉଠି ବସିଲା ।

''ବୋଉ ମ ବୋଉ, ହଁ ଯିବ ଭାଇ, ତୁ କହ ।'' ମିମିର କରୁଣ ମିନତିରେ ପ୍ରୀତି ତାକୁ ଚୁମ୍ବନ ଦେଇ କହିଲା, ''ହଁ ନିଶ୍ଚେ ଯିବ । ସାଙ୍ଗରେ ଯିବ କିଏ ?'' ତା ପରେ ପୁଣି ଗାଇବାକୁ ଲାଗିଲା-

''ସାଙ୍ଗରେ ଯିବ ଟୁକୁନା ଭାଇ ଛତାବାଡ଼ି ଦେ...''

ଗୋଟିଏ ଅପୂର୍ବ ଚଳଚିତ୍ର ମାନସ ପର୍ଦ୍ଦାରେ ପ୍ରତିଫଳିତ ହେଲା ସେ ଗୀତି ଦ୍ୱାରା । ବହୁଦିନର ଗୋଟିଏ କରୁଣ କାନ୍ଦଣା ତାଙ୍କର ମନେପଡ଼ିଲା...

......ଗାଁ ଝିଅ ପଦ୍ମା ବାହା ପରେ ବାପଘରୁ ବିଦାୟ ନେଉଚି । ପିଲାଟିବେଳୁ ସେ ବାପ ହରାଇଚି, ଅଛି କେବଳ ଭାଇ ବକଟେ । ଆଜି ଚିରଦିନ ପାଇଁ ବାପଘରୁ ବିଦାୟ ନେବାବେଳେ ତାର

ସମସ୍ତଙ୍କ କଥା ମନେପଡ଼ି କୋହ ଉଠୁଚି । ଶକୁନ୍ତଳା ଆଶ୍ରମରୁ ବିଦାୟ ନେବାବେଳେ ହରିଣ, ବୃକ୍ଷ ଲତାମାନଙ୍କଠାରୁ ମଧ୍ୟ ବିଦାୟ ନେଇଥିଲେ । ପଦ୍ମା ଜଣ ଜଣକୁ ଧରି ବାହୁନି ବିଦାୟ ନେଇ ଯେତେବେଳେ ସାନଭାଇ ପାଖରେ ପହଞ୍ଚିଲା, ସେତେବେଳେ ତାର କୋହ ଆଉ ସମ୍ଭାଳି ହେଲା ନାହିଁ । ଭାଇକୁ ଧରି ପଦ୍ମା ବାହୁନିଲା...

ଉଷୁନା ଧାନ କି ଗଜା ହୋଇବ, ମୋ ସୁନା ଭାଇ

ସତେ ଛତାବାଡ଼ି ଡେରି ଥୋଇବ, ମୋ ସୁନା ଭାଇ ।

ଭଉଣୀ ଶାଶୁଘରେ । କେବେଠୁଁ ବାପଘର ଛାଡ଼ି ଆସିଚି କାହିଁ ଦୂରେ । ବିଲ ଭିତରେ ଚାଲି ଚାଲି ତିନି କୋଶ ଯିବାପରେ ପଡ଼େ ବୁଢ଼ା ନଈ । ତତଲା ବାଲିରେ ଡେଇଁ ଡେଇଁ ନଈ ପାର ହେବା ପରେ ବାସୁଳେଇ ପାଟ । ସେ ପାଟ ଭିତରେ ରାସ୍ତାଟା ଲମ୍ବିଯାଇଚି ଯେ କାହିଁ କେଉଁଠି, ଶେଷ ଦିଶୁନାହିଁ । ରାସ୍ତା କଡ଼ରେ ଗୋଟିଏ ଘାସ ଗଛ ବି ନାହିଁ । ସୂର୍ଯ୍ୟଦେବତା ଯେତେବେଳେ ଠିକ୍ ମୁଣ୍ଡ ଉପରେ ସେତେବେଳେ ପୁଣି ପାରିହେବ ଖରସୁଆ ନଈ । ସାରାବର୍ଷଯାକ ସେଥିରେ ଡଙ୍ଗା ପଡ଼ିଥାଏ । କଳାମଚମଚ ପାଣି । ମଣିଷଖିଆ ନଈ ଏଇଟା । ଖରସୁଆ ପାରିହୋଇ ପୁଣି ବିଲ । ବିଲ ପାର ହେଲେ ହରିପୁର, ଭଉଣୀର ଶାଶୁଘର ଗାଁ । ଭଉଣୀ ସେଇ ଯେ ବାହାହୋଇ ଆସିଚି ବାପଘର ଆଡ଼କୁ ପିଠିକରି, ଆଉ ମୁହଁ ବୁଲାଇ ନାହିଁ । କିଏ ନବ ? ଭାଇ ତ ବକଟେ । ଭାଇ କେବେ ବଡ଼ ହବ ସିନା ନବ । ...ଭାଇ ବଡ଼ ହୋଇଚି, କଲିକତାରେ ଝୋଟ କଳରେ ଚାକିରି କରିଚି । ଛୁଟି ନେଇ ଗାଁକୁ ଫେରିଚି କେତେ ଦରବ ନେଇ । ଗାଁରେ ପହଞ୍ଚିବା ପରଦିନ ଛତା ବାଡ଼ି କାଖରେ ଜାକି ଭାଇ ଛୁଟିଛି ହରିପୁର, ଭଉଣୀକୁ ଆଣିବାକୁ । ଖରସୁଆ କୂଳରେ ଭାଇ ଯେତେବେଳେ ପହଞ୍ଚିଲା, ସୂର୍ଯ୍ୟ ସେତେବେଳେ ଠିକ୍ ମୁଣ୍ଡ ଉପରେ । ନଈ କୂଳରେ ଥକ୍‌କା ହୋଇ ବସିପଡ଼ି ଆଞ୍ଜୁଳା ଆଞ୍ଜୁଳା ପାଣି ପିଇ ମୁହଁ ହାତ ଧୋଇ ଡାକ ଛାଡ଼ିଲା, ''ଏ ସତୁରା ଭାଇ ଏ.....ଏ....ହେ, ବେଇଗେ ଡଙ୍ଗା ଆଣ ।''

ନାଉରି ସେ ପାଖରୁ ଝିଙ୍କାରି କହିଲା, ''ରହଃ, ଆସିଲା ମୋର ଦେଖେ ନାଇକି ନାଟ ସାଇବ ।''

ନଈ ପାର ହୋଇ ଆମ୍ବ ତୋଟାରେ ବସିପଡ଼ି ଅଣ୍ଟାରୁ କଲିକତି ଗାମୁଛା ଖୋଲି ବିଞ୍ଚିହୋଇ ଝାଳ ପୋଛି ଭାଇ ଖୋଲିଲା ଥାଳିଆ ଦେଖିବାକୁ । ଆରିସା ପିଠା, କାକରା, ପିଚାପାଡ଼ି ଶାଢ଼ୀ, ଅଳତା, ସିନ୍ଦୂର, ବନାରସି କାଚ, ଦର୍ପଣି ଶଙ୍ଖା, ଅତର, ସାବୁନ୍ ଓ ହାଲ୍ ଫେସନର ବ୍ଲାଉସ୍ ଗୋଟି ଗୋଟି କରି ବାହାର କରି ସପ୍ରଶଂସ ଦୃଷ୍ଟିରେ ଚାହିଁ ପୁଣି ସେଗୁଡ଼ିକୁ ଥାଳିଆରେ ସଜାଡ଼ି ରଖିଲା । କୌଣସି ଜିନିଷ ସହିତ ଖାପ ଖୁଆଇ କୌଣସି ଜିନିଷ କିଣା ହୋଇନାହିଁ, ଯାହା ଯେତେବେଳେ ପାରିଚି କିଣି ପକେଇଚି । ଆମ୍ବ ପେଣ୍ଡାଏ ଥାଳିଆରେ ରଖି ଭାଇ ପୁଣି ଚାଲିଲା । ଏଥର ଆଉ ବେଶି ବାଟ ନାହିଁ । ବିଲ ଆରପଟେ ହେଇ ଯେଉଁ ମନ୍ଦିର ଚୂଡ଼ା ଦିଶୁଚି, ତାରି ପାଖରେ ଭଉଣୀ ଘର । ବେଗେ ବେଗେ ଚାଲି ଉଦୁଉଦିଆ ଖରାବେଳେ ଭାଇ ଭଉଣୀର ଶାଶୁଘର ଦାଣ୍ଡପିଣ୍ଡାରେ ଛତାବାଡ଼ି ଡେରି ଥୋଇଦେଇ ଡାକିଲା-ଅପା ! ଧୀରେ ଗୋଟିଏ ଡାକ,କ୍ଷୁଦ୍ର ଗୋଟିଏ ଶବ୍ଦ । ଶାଶୁକୁ ପଙ୍ଖା କରୁ କରୁ ଥମ୍‌କିନା ଭଉଣୀର ହାତ ରହିଗଲା, ଦମ୍‌କିନା ଛାତି ହେଲା । ଉତ୍କର୍ଣ୍ଣ ହୋଇ ଚାହିଁ ମନେ

ମନେ ପଚାରିଲା, ଏ ମୋ ଭାଇ ଗଲା ନା ? ହଁ ଲୋ ମୋ ଭାଇ ତ ! ଶାଶୁର ଭୟ ଭୁଲିଯାଇ ନସରପସର ହୋଇ ଲୁଗା ସଜାଡୁ ସଜାଡୁ ଦଉଡ଼ି ଆସି ଦାଣ୍ଡଦୁଆର ଖୋଲିଦେଇ ଚାହିଁ ରହିଲା ଭାଇ ଆଡ଼େ । ଦୁହିଁଙ୍କ ମୁହଁରେ କଥା ନାହିଁ, ଦୁହିଁଙ୍କ ଆଖିରୁ ପାଣି ଗଡ଼ିଯାଉଚି...

ଟୁକୁନା କିନ୍ତୁ ମସ୍ତକ ସବେଗେ ସଞ୍ଚାଳନ କରି କହିଲା, ''ନାଇଁ ନାଇଁ, ମୁଁ ମିମି ସାଙ୍ଗରେ ତା ଶାଶୁଘର ଯିବି ନାଇଁ ।''

ମିମି ଧୀରେ ବୋଉର କାନେ କାନେ କହିଲା, ''ହଁ ବୋଉ, ଭାଇ ଯିବ ।''

ଟୁକୁନା ଦୁମ୍ କରି ମିମି ପିଠିରେ ଗୋଟିଏ ବିଧା ଥୋଇଦେଲା ।

ମିମି ତୀବ୍ର ସ୍ୱରରେ କାନ୍ଦୁକାନ୍ଦୁ କହିଲା, ''ହଁ ଭାଇ ଯିବ ।''

ସୁଦାମବାବୁ ସବୁ ଶୁଣି ପାଖରେ ଛିଡ଼ା ହେଲେ । ଗୋଟାଏ ପରୀକ୍ଷା କରିବାକୁ ତାଙ୍କର ଅଦମ୍ୟ କୁତୂହଳ ଜାତହେଲା । ପିଲା ଦୁଇଟା ତ ବୋଉକୁ ବାଘ ନେଇଗଲା ବୋଲି କାନ୍ଦି ଲହୁଲୁହାଣ ହେଲେ, ଆଚ୍ଛା, ମୋ ବେଳକୁ କଅଣ କରୁଛନ୍ତି ଦେଖେ ।

ସେ ମିମି ଓ ଟୁକୁନାକୁ କତିକି ନେଇ କହିଲେ, ''ଏଇ ଜାଣିଚ ନା-ତୁମେ ଦୁହେଁ ଯଦି ଏମିତି ହବ, ତେବେ ମୁଁ ବାହାରି ଯାଉଚି, ମୋତେ ବାଘ ନଉ । ...ଯିବି ?''

ମିମି ଓ ଟୁକୁନା ନୀରବ, ଦୃଷ୍ଟି ତାଙ୍କର ବୋଉଆଡ଼େ ।

''କଅଣ କହୁଚ ? ଯିବି ? ହେଇ ଗଲି, ଯିବି ?'' ସୁଦାମବାବୁ ବ୍ୟାକୁଳ ଭାବରେ ପଚାରିବାକୁ ଲାଗିଲେ । ପ୍ରୀତି ମୁରୁକି ମୁରୁକି ହସୁଥାଏ ।

''ଯିବି ?'' ପୁଣି ସେହି କରୁଣ ପ୍ରଶ୍ନ ।

ମିମି ନୀରବ ରହିଲା ।

ଟୁକୁନା ମୁଣ୍ଡ ଟୁଙ୍ଗାରି କହିଲା, ''ହଁ ।''

ଦୀର୍ଘ ନିଶ୍ୱାସ ପକାଇ ସୁଦାମବାବୁ କହିଲେ, ବାପମାନଙ୍କ ଜୀବନ ଭାରି କଷ୍ଟକର । ଦିହର ରକ୍ତ ପାଣି କରି ପିଲାଙ୍କୁ ପାଳିବେ, ବୁଢ଼ା ହେଲେ ଦୂର୍ ଦୂର୍ କରି ପିଲାଏ ଘଉଡ଼ାଇ ଦେବେ । ସବୁ ମାୟା, ସବୁ ମିଛ । ଆଖି ତାଙ୍କର ଛଳଛଳ ହୋଇଗଲା । ସେ ଉଠି ଯାଉଥିଲେ ।

ପ୍ରୀତି ତାଙ୍କ ଲୁଗା କାନି ଧରି ଅଟକାଇ କହିଲା, ''ତୁମେ ପିଲାଙ୍କ କଥାରେ ଏମିତି ହଉଚ ନା ! ମାଇପଙ୍କ ଜୀବନ ଭଳି ଆଉ ହୀନିମାନିଆ ଜୀବନ ଅଛି ? ତୁମେମାନେ ତ ସନ୍ନ୍ୟାସୀ । ଏ ସବୁ ପୁରୁଷର, ଅଥଚ କୌଣସିଥିରେ ପୁରୁଷର ଲୋଭ ନାହିଁ । ଆଉ ମାଇପି ? ଛି, ଘରର କେହି ନୁହେଁ ନା, ପିଢ଼ାରେ କୁଆ ବସାଇ ଦିଏନା, ଯେତେ ଛୋଟ କଥା ଏ ମାଇପିଙ୍କର ।''

''ଛାଡ଼......ଛାଡ଼ ।''

ସୁଦାମବାବୁ ଉଠି ଚାଲିଗଲେ ପୁଣି ଲେଖିବାକୁ । ମନଟା ତାଙ୍କର ବେଦନାରେ ପରିପୂର୍ଣ୍ଣ । ସେ ଆକାଶକୁ ଚାହିଁ ବସି ରହିଲେ ।

ପ୍ରୀତି ନିଘୋଡ଼ ନିଦରେ ଶୋଇପଡ଼ିଲାଣି । ମିମି ଓ ଟୁକୁନା ଦୁଇପଟରୁ ଜାବୁଡ଼ି ଧରି ନିଦରେ ଶୋଇଚନ୍ତି । ମିମିର ପାତଳା ଓଠ ଦିଓଟି ମଝିରେ ମଝିରେ ଥରି ଉଠୁଚି । ଟୁକୁନାର ଓଠରେ ମଝିରେ ମଝିରେ ହସ ଖେଳିଯାଉଛି । ଚାରିଆଡ଼େ ପୁଣି ନୀରବ ନିସ୍ତବ୍ଧ । ପଡ଼ିଶା ଘରର ପିଲାଟିର

ଦେହ ଭଲ ନାହିଁ, ତାର କାନ୍ଦଣା ଏ ପର୍ଯ୍ୟନ୍ତ ଥମି ନାହିଁ ।

ଢଂ.......ଢଂ । ଜେଲଖାନାର ଘଣ୍ଟା ବାଜି ଉଠିଲା ।

ହଠାତ୍ ଟୁକୁନା ଧଡ଼ପଡ଼ କରି ଉଠି ବସି ପାଟି କରି କହିଲା, ''ଦେ, ଦେ ମୋ ବନ୍ଧୁକ ଦେ.....''

ପ୍ରୀତି ମଧ୍ୟ ଧଡ଼ପଡ଼ କରି ପଚାରିଲା, ''କିରେ ବନ୍ଧୁକ କଅଣ ହେବ ଏତେ ରାତିରେ ?''

''ବୋଉ, ବାଘ ମିମିକୁ ନବାକୁ ଆସିଚି, ମୁଁ ତାକୁ ମାରିବି,'' କହି ଟୁକୁନା ତା ବନ୍ଧୁକ ଧରି ଦୌଡ଼ିଲା ଦାଣ୍ଡଆଡ଼େ ।

ପ୍ରୀତି ହସି ହସି ତା'ର ପଛରେ ଗୋଡ଼ାଇ ତାକୁ ଧରି ଆଣି କହିଲା, ''ଦେଖୁଚ ହୋ, ଦିନ ରାତି କଳିଗୋଳ, ବାଦ ହିଂସା ଦୁହିଁଙ୍କ ଭିତରେ । ସପନରେ ଦେଖି ମିମିକୁ ବାଘ ଧରିନେବାକୁ ଆସିଚି ବୋଲି ଭାଇ ବାଘ ମାରିବାକୁ ଦଉଡ଼ିଛନ୍ତି ।''

# ଅମୃତସ୍ୟ ପୁତ୍ରାଃ

''ଭିତର୍ ଯାନେକା ଟାଇମ୍ ହୋଗିୟା ?''

ଅନାଇ ଦେଖିଲି ମୋ ପାଖରେ ବସିଚନ୍ତି ଜଣେ ଗୈରିକବସନ ପରିହିତ ବାବାଜି । କାନ୍ଧରେ ଝୁଲା । ଆଖି ଯୋଡ଼ିକ ଏଡ଼େ ଲାଲ ଯେ ରାଜଲକ୍ଷଣ ବୋଲି କଦାପି ଭୁଲ ହେବନାହିଁ ।

ମେଟେରନିଟି ୱାର୍ଡ଼ର ହତାକୁ ଲାଗି ଯେଉଁ ଝଙ୍କାଳିଆ ଟଗର ଗଛ, ତା ତଳେ ପଡ଼ିଛି ଗୋଟିଏ ବେଞ୍ଚ । ୱାର୍ଡ଼ ତିଆରିହେବା ଦିନରୁ ବୋଧହୁଏ । ମୋ ପରି ଅନେକ ସେଠି ଅପେକ୍ଷା କରୁଚନ୍ତି । ବେଲା, ଟିଫିନ୍-କେରିୟର ଆଦି ସାମନାରେ ଥୁଆହୋଇଚି । ସ୍ୱାମୀମାନେ ଅପେକ୍ଷା କରୁଚନ୍ତି ୱାର୍ଡ଼ ଭିତରକୁ ଯିବାର ସମୟ ହେଲେ ସ୍ତ୍ରୀମାନଙ୍କର ଖାଇବା ନେଇ ଭିତରକୁ ଯିବେ । ଶ୍ମଶାନଭଳି ଏଠି ମଧ୍ୟ ଉଚ୍ଚ, ନୀଚ, ଧନୀ, ଦରିଦ୍ର ପ୍ରଭେଦ ନାହିଁ ।

ରାଣୀକୁ ୱାର୍ଡ଼ରେ ରଖି ଆସି ଦୁଶ୍ଚିନ୍ତାରେ ବସି ପଡ଼ିଥିଲି । ପ୍ରଥମ ପ୍ରସବ । ସୁଖ-ପ୍ରସବ ପାଇଁ ଡାକ୍ତରଙ୍କ ପରାମର୍ଶ ଅନୁସାରେ ମୋର ସାମାନ୍ୟ ଆୟର ଦୁଇ ତୃତୀୟାଂଶ ମୁଁ ବ୍ୟୟ କରିଚି ନାନାପ୍ରକାର ବଳକାରକ ଔଷଧପତ୍ର କିଣିବାରେ ଓ ରାଣୀକୁ ବିଶ୍ରାମ ଦେବାପାଇଁ ଚାକର ପୂଝାରୀ ରଖିବାରେ । ତଥାପି ଡାକ୍ତରଙ୍କ ଉପଦେଶ, ଘରେ ପ୍ରସବ କରାଇବା ନିରାପଦ ହେବ ନାହିଁ । ଅଗତ୍ୟା ପ୍ରସବ ବେଦନାର ସୂଚନା ପାଇବା ମାତ୍ରକେ ରାଣୀକୁ ୱାର୍ଡ଼କୁ ନେଇଆସିଲି । ୱାର୍ଡ଼ ଭିତରୁ ବେଳେବେଳେ ଭାସିଆସୁଛି ବେଦନାର ଚିତ୍କାର, ସୃଷ୍ଟିର ବେଦନା, ବେଳେବେଳେ ଶିଶୁର କ୍ରନ୍ଦନ, ନବ ଜନ୍ମର କ୍ଷୀଣ ଜୟଧ୍ୱନି ।

ନାଃ....ଏଇ ପ୍ରଥମ ଏବଂ ଏଇ ଶେଷ ....ଇସ୍....ଏତେ କଷ୍ଟ....କାହିଁକି ଯେ ରାଣୀର ଇଚ୍ଛା ସନ୍ତାନ ପାଇଁ ଏତେ ଶୀଘ୍ର..... ଏମାନଙ୍କର ଟିକିଏ ବିବେଚନା ନାହିଁ ସତେ.....

ବିକ୍ଷିପ୍ତ ଚିନ୍ତାର ଖିଅ ଛିଣ୍ଡାଇ ଶୁଭିଲା ବାବାଜିଙ୍କ ପ୍ରଶ୍ନ । ଆଶ୍ଚର୍ଯ୍ୟ ହୋଇ ପଚାରିଲି ..''ଆପ୍...ଆପ୍ କୈସେ...''

ମୋର ପ୍ରଶ୍ନର ଉତ୍ତର ନ ଦେଇ ସେ ପୁଣି ପଚାରିଲେ, ''ଟାଇମ୍ ହୋଗିୟା ?''

-ନେହିଁ ....ଲେକିନ୍...ଆପ୍‌କା କ୍ୟା...

-ଏକ୍ ବିଡ଼ିତୋ ପିଲାଇୟେ... ମୋ କଥାର ଉତ୍ତର ନ ଦେଇ ସେ ହାତ ପତାଇ ଦେଲେ ।

ପକେଟରୁ ବିଡ଼ି ବାହାର କରି ଦେଲି ଏବଂ ଅଭ୍ୟାସ ବଶତଃ ଗୋଟିଏ ନିଜେ ମୁହଁରେ ଦେବାକୁ ଯାଉଥିଲି । ବାବାଜି ବାଧାଦେଇ କହିଲେ, ''ଲାଇୟେ, ଉସ୍‌କୁ ଟିଡ଼ି ବନାଦୁଁ ।''

''ନେହିଁ'' କହି ବିଡ଼ିରେ ଅଗ୍ନି ସଂଯୋଗ କଲି । ବାବାଜି ଝୁଲିରୁ ଗଞ୍ଜେଇକଲି ବାହାର

କରି ବିଡ଼ିର ମୁଣ୍ଡ ଛିଣ୍ଡାଇ ବିଡ଼ି ମସଲା ବାହାର କରି ତାହା ସହିତ ଗଞ୍ଜେଇ ଦଳିବାକୁ ଲାଗିଲେ । ମସଲା ଦଳି ସାରିବା ପରେ ବିଡ଼ିରେ ପୁଣି ତାହା ଭରତିକରି ବିଡ଼ିକୁ ଚିଡ଼ିରେ ପରିଣତ କରି ସେ ଅଗ୍ନି ସଂଯୋଗ କଲେ । ଆକାରର କୌଣସି ପରିବର୍ତ୍ତନ ହେଲା ନାହିଁ କିନ୍ତୁ ପ୍ରେରଣା ଶକ୍ତିରେ ଆମୂଳ ପରିବର୍ତ୍ତନ ଘଟିଲା । ଉପରକୁ ଚାହିଁ ଗୋଟିଏ ନମସ୍କାର କରି ସେ ଆଖି ବୁଜି ଗୋଟିଏ ମାତ୍ର ଟାଣରେ ଚିଡ଼ିର ଏକତୃତୀୟାଂଶ ଭସ୍ମୀଭୂତ କରି ଆଖିବୁଜି ସେହିପରି ବସିରହିଲେ । ଏତେ ଧୂଆଁ କୁଆଡ଼େ ଗଲା ବୁଝିପାରିଲି ନାହିଁ । ମହାରାଜ କଣ ଧୂଆଁତକ ଶରୀର ଭିତରେ ପାଣିରେ ପରିଣତ କରିଦେଲେ ! ନାଃ, ଏଇତ ଗୋଟିଏ କ୍ଷୀଣ ଧୂଆଁର ସ୍ରୋତ ନାକରୁ ନିର୍ଗତ ହେଉଛି । ଧୂମ ନିଶ୍ୱାସନ ଅନେକକ୍ଷଣ ଚାଲିବା ପରେ ବାବାଜି ଆଖି ଖୋଲି କହିଲେ, ''ହାଲୁୟା ।''

ବିରକ୍ତ ହୋଇ କହିଲି, ''ହାଲୁୟା କେଉଁଠୁ ଆସିବ ଏଠି ?''

-ନାହିଁ ବାବୁ, ତୁମେ ଯେ ପଚାରୁଥିଲ ମୁଁ ଏଠି କାହିଁକି, ତା'ରି ଉତ୍ତର ଦେଲି ।

-ହାଲୁୟା କଅଣ ?

-ହାଲୁୟା ଜାଣିନା ବାବୁ ? ଗୋଟିଏ ମୁନି ଭାରି ତପସ୍ୟା କରୁଥିଲା । ଗୋଟିଏ ମାଇକିନିଆ ମୁନିକୁ ବିବାହ ହେବାର ଇଚ୍ଛା କଲା । କିନ୍ତୁ ସେ ମୁନି ସେ ମାଇକିନିଆକୁ ଗାଳିଦେଇ ବିଦା କରିଦେଲା । ମାଇକିନିଆ ରାଗିଯାଇ କହିଲା, ''ଆଚ୍ଛା ଦେଖିଲବା ତୋ ତପସ୍ୟାର ଶକ୍ତି ବେଶୀ, କି ହାମ ମାଇକିନିଆ ଶକ୍ତି ବେଶୀ । ମୁନି କିଛି ଖାଉନଥିଲା ଖାଲି ଗଛର ଛାଲ ଛଡ଼ା । ମୁନି ଯେଉଁ ଗଛର ଛାଲ ଖାଉଥିଲା, ମାଇକିନିଆ ସେଇ ଗଛରେ ହାଲୁୟା ବୋଳିଦେଇ ଆସେ । ମୁନିକୁ ଭାରି ମିଠା ଲାଗେ ତ ସେ ବେଶୀକରି ଛାଲ ଖାଇବାକୁ ଲାଗିଲା । ହ୍ୟାଙ୍କା ପେଟ ଖରାପ୍ ହୋଇ ରୋଗ୍‌ମେ ପଡ଼ିଲା । ମାଇକିନିଆ ଯାଇ ସେବା କଲା । କ୍ରମେ କ୍ରମେ ମୁନିକା ମନ ବଦଳିବାକୁ ଆରମ୍ଭ ହେଲା । ଆଖିର୍ ଦିନେ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ ଜଙ୍ଗଲ ଭିତରୁ ହ୍ୟାଙ୍କ ମୁନି ଆସୁଛି । ତା କାନ୍ଧରେ ଆଉ କୋଳରେ ଦୁଇଟି ବଚ୍ଚା । ଅନ୍ୟ କାନ୍ଧରେ ଗୋଟିଏ ଭାରରେ ହରେକ୍ ସାମାନ ଘରକେ ଲିୟେ । ମାଇକିନିଆ ଆଗେ ଆଗେ ଚାଲିଚି । ବାବୁ, ହାମେ ବି ଐସା ହାଲୁୟା ଖାଇଚ । ବେଶ୍ ବୁଲୁଥିଲି -ହରି ନାମ କହି ପେଟ ପୋଷିଯାଉଥିଲି । ଅବ୍‌ଭି ଖଟ୍‌କେ ଖାନା ହୋଗା । ହାୟ ଯେ ମେରା କ୍ୟା କିୟା ଭଗବାନ୍ !!

ସମସ୍ତେ ହସିଉଠିଲେ ।

ୱାର୍ଡ଼ ଭିତରୁ ରାଣୀର କରୁଣ ଚିତ୍କାର ଶୁଣି ମୁଁ ଦୌଡ଼ିଗଲି । ଦରୁଆନ ହାତ ଟେକି ମୋର ଗତିରୋଧ କଲା । ଫେରିଲି ।

ଦୁଇଦିନ ଦୁଇରାତି ରାଣୀ କଷ୍ଟ ପାଇଲା । ବାହାରୁ ଚିତ୍କାର ଶୁଣିବା ଛଡ଼ା ମୋର ଆଉ କିଛି କରିବାର ଉପାୟ ନଥିଲା ।

ତୃତୀୟ ଦିନ ଭିତରକୁ ଯିବାର ଅନୁମତି ପାଇଲି । ନର୍ସ ମୋତେ ଛାଡ଼ିଦେଇ ଚାଲିଗଲା । ଅନେକ ଖଟ । ପ୍ରତ୍ୟେକ ଖଟରେ ଗୋଟିଏ ନାରୀ ଓ ଗୋଟିଏ ଶିଶୁ ।

ରାଣୀ କାହିଁ ? ଛାତି ଭିତରୁ ଅତଡ଼ା ଖସିପଡ଼ିଲା ।

''ଇୟାଡ଼େ,'' କ୍ଷୀଣ କଣ୍ଠରେ ରାଣୀ ଡାକିଲା ।

କୋଳ ଉପରୁ ଚାଦରଟି ଉଠାଇଦେଇ ସେ ଗର୍ବରେ ମୋ ଆଡ଼କୁ ଚାହିଁରହିଲା । ମୁହଁରେ

ତା'ର ଫୁଟିଉଠିଲା ଗୋଟାଏ ଅପୂର୍ବ ସନ୍ତୋଷର ଆଭା । କିଏ କହିବ ସେ କିଛିକ୍ଷଣ ପୂର୍ବ ପର୍ଯ୍ୟନ୍ତ କ୍ରମାଗତ ଦୁଇଦିନ ଦୁଇରାତି ମୃତ୍ୟୁ ଯନ୍ତ୍ରଣା ପାଇଚି । ଆଶ୍ଚର୍ଯ୍ୟ ହୋଇ ଚାହିଁରହିଲି ତା'ର ମୁହଁକୁ ।

''ମୋତେ କଅଣ ଦେଖୁଚ ? ଇୟାଡ଼େ ଦେଖ !''

ଚାଖେଣ୍ଡେ ଲମ୍ବର ଧଳା ସଳିତାପରି ଗୋଟିଏ ଜୀବ ଜୁଳୁଜୁଳୁ କରି ଟିକିଏ ମୋଆଡ଼େ ଚାହିଁ ପୁଣି ଆଖି ବୁଜି ଶୋଇପଡ଼ିଲା । ମୋ ପରି ବଳିଷ୍ଠ ସ୍ୱାସ୍ଥ୍ୟବାନ୍ ଲୋକର ଏହି ସନ୍ତାନ ! ଟିକିଏ ଲଜ୍ଜା ବୋଧହେଲା ।

କହିଲି, ''ବଞ୍ଚିବ ତ ?''

''ହୁଁ'', ରାଣୀ ଅବଜ୍ଞାଭରି କହିଲା, ''ଏଠୁ ବାହାରେ ଆଗେ । ମାସକ ପରେ ଦେଖିବ ଏଇ ଆମର ବଂଶଧର ।''

''ହଁ ବଂଶଧର ! ଅତୀତ ଓ ଭବିଷ୍ୟତ ମଝିରେ ବର୍ତ୍ତମାନର ସେତୁ ! କିନ୍ତୁ ଏଇ କ୍ଷୀଣ ଜୀବ !'' ସନ୍ଦେହ ଲୁଚାଇବାକୁ ମୁହଁ ବୁଲାଇଦେଲି ।

ଚମକି ପଡ଼ିଲି ଉର୍ମିଳାକୁ ଦେଖି । କଲେଜରେ ଏକଦା ସହପାଠିନୀ ଉର୍ମିଳା -ଉର୍ମିଳା 'ଦି ଉଗ୍ରଚଣ୍ଡୀ' । ଯେମିତି ସୁନ୍ଦରୀ ସେମିତି ଚଣ୍ଡୀ ସେ ଥିଲା । ପ୍ରେମ ନିବେଦନ କରିବାକୁ ଯାଇ କେତେକ ଯୁବକ ଯେ ତା ପାଖରୁ ଚଟିମାଡ଼ ଖାଇଚନ୍ତି । ବିବାହ କଥା ଶୁଣି ସେ କହୁଥିଲେ, ''ମୁଁ ରାମାମା ଦାମାମା ହେବାକୁ ଜନ୍ମି ନାହିଁ ।'' ସେ ପୁଣି !!

''ନମସ୍କାର'', ଉର୍ମିଳା ମୁରୁକି ମୁରୁକି ହସି ହାତଠାରି ଡାକିଲେ ।

ବିହ୍ୱଳ ଭାବରେ ହାତଟେକି ପ୍ରତିନମସ୍କାର କଲି । ରାଣୀର ଠିକ୍ ଗୋଡ଼ ତଳକୁ ଯେଉଁ ଖଟ, ସେଇଠି ସେ ଶୋଇଚନ୍ତି । ସେ ମଧ କୋଳର ଚାଦରଟି କାଢ଼ି ନିଜ ସନ୍ତାନଟିକୁ ଦେଖାଇଲେ । ଭାରି ସୁନ୍ଦର ଶିଶୁଟିଏ ସତେ ।

ନିକଟକୁ ଯାଇ କହିଲି, ''ବା, ଭାରି ସୁନ୍ଦର ହୋଇଚି ସତେ ! କିନ୍ତୁ ...ଆପଣ... ?''

''ହଁ...ମୁଁ....ଆଶ୍ଚର୍ଯ୍ୟ ହେଉଚନ୍ତି ? ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ଏଥିରେ ? ଏଇତ ଆମର ଯାତ୍ରାର ଶେଷ ।'' ଚାଦରଟି ପୁଣି ଥରେ ଟେକିଲେ ।

କୌତୂହଳ ସମ୍ଭାଳି ନ ପାରି ପଚାରିଲି, ''କିଏ, ନବୀନ ?''

-ଛି...ତାକୁ ?

-''ଆପଣ ଦୁଇଜଣ ତ ସବୁ ସଭା, ସବୁ ଆନ୍ଦୋଳନର ଅଗ୍ରଣୀ ଥିଲେ । ଆମେ ସମସ୍ତେ ତ ଧରି ନେଇଥିଲୁ...''

-ନା, ନା ସେ ନୁହେଁ । ପରମାନନ୍ଦ...ଇସ୍...ନା'ଟା ଧରିପକାଇଲି...

-ପରମାନନ୍ଦ...ସେଇ ନିର୍ଜୀବ, ଅସ୍ତିତ୍ୱହୀନ..... !!

-ଯେଉଁମାନେ ବାହାରେ ଦୁର୍ଦ୍ଦାନ୍ତ ମନେହୁଅନ୍ତି ସେମାନେ କେତେ ଦୁର୍ବଳ, ମୁଁ ଭଲକରି ଜାଣିବାର ସୁଯୋଗ ପାଇଚି । ଅଥଚ ଏଇ ନିର୍ଜୀବଟି ଯେ କି ବିପୁଳ ଶକ୍ତିଧର ଆପଣମାନେ ଜାଣନ୍ତି ନାହିଁ, ....ମୁଁ ଜାଣେ ।

-କିନ୍ତୁ ଆପଣ ନବୀନ ପଛରେ ଯେପରି ଗୋଡ଼ାଇଥିଲେ, ଆମେ ଭାବିଥିଲୁ ସେ ନ ହେଲେ ଆପଣ ଆତ୍ମହତ୍ୟା କରିବେ... ନବୀନ ତ ସେହିପରି କହୁଥିଲା...

-ଛି....କଅଣ ଯେ ଭାବନ୍ତି ଆପଣମାନେ ! ଅନ୍ୟ ଯିଏ ଯାହା କୁହନ୍ତୁ ମୁଁ ଅନ୍ତତଃ ମୋ ଜୀବନରେ ଏତିକି ଅନୁଭବ କରିଚି ଯେ ଆମେ ଯେ ପୁରୁଷକୁ ଆକୃଷ୍ଟ କରିବାକୁ ଚେଷ୍ଟା କରୁ ତାହା ଯୌନ ଲାଳସା ପାଇଁ ନୁହେଁ । ପୁରୁଷର ପ୍ରେମିକା ସାଜି ଚିର ଜୀବନ ରହିବା ପାଇଁ ନୁହେଁ । ମା ହବା ଆମର ଉଦ୍ଦେଶ୍ୟ । ଆମ ଜୀବନର ସବୁ ବିପ୍ଳବର ଶାନ୍ତି ଏଇଠି । ମାତୃତ୍ୱ ପାଇଁ ଆମ ଶରୀରର ସବୁ ସୌନ୍ଦର୍ଯ୍ୟ ତେଣୁ ହୁଏ ପୁରୁଷକୁ ଆକୃଷ୍ଟ କରିବାର ଦୁର୍ବାର ପନ୍ଥା । ତେବେ ଆଜିକାଲି ଯେପରି ଅର୍ଥ ସୁଖ ପାଇବାର ଗୋଟିଏ ପନ୍ଥା ନ ହୋଇ ଉଦ୍ଦେଶ୍ୟରେ ପରିଣତ ହୋଇଚି, ଆମ ଭିତରେ ମଧ ସେହିପରି ବିକୃତି ଦେଖାଦେଇଚି । ଅନେକେ ଏହି ଆକୃଷ୍ଟ କରିବାକୁ ହିଁ ଉଦ୍ଦେଶ୍ୟ କରି ମରିବା ପର୍ଯ୍ୟନ୍ତ ସଜବାଜ ହୋଇ ବସିଚନ୍ତି । କି ବୀଭତ୍ସ ବିକୃତି ଆଉ ଖଟକୁ, ଅନାନ୍ତୁ ତ ।

ରାଣୀର ଠିକ୍ ଡାହାଣପଟ ଖଟରେ ଶୋଇଚି ଗୋଟିଏ ନାରୀ । ଗୈରିକବସନା । ବେକରେ ବଡ଼ ବଡ଼ ତୁଳସୀର ମାଳି । ମୁଣ୍ଡରେ ଚିତା । ହାତରେ ଓ ବାହୁରେ ରୁଦ୍ରାକ୍ଷର ଗହଣା । ତ୍ରିପଣ୍ଡ କଳା, ଇନ୍ଦ୍ରନୀଳମଣିପରି । ଠାଏ ଠାଏ ଧବଳ କୁଷ୍ଠର ଚିହ୍ନ ମୁହଁଟାକୁ ଆହୁରି କଦାକାର ଓ ଭୀଷଣ କରିଦେଇଚି । ତଥାପି ବେଶଭୂଷାର ପରିପାଟୀରେ ହେଉ କିମ୍ବା ସ୍ୱାସ୍ଥ୍ୟରେ ହେଉ, କେଉଁଠି ଗୋଟାଏ ନଗ୍ନ ଆହ୍ୱାନ ଅଛି । ନିକଟରେ ଶୋଇଚି ଗୋଟିଏ ବଳିଷ୍ଠ ଶିଶୁ ।

-ସେ କିଏ ? ପଚାରିଲି ।

-ସେଇ ସୁନ୍ଦର ପୁଅଟିର ମା, ଉର୍ମିଳା କହିଲେ । ଅନ୍ୟ ପରିଚୟ ଯେପରି ନିରର୍ଥକ ।

ଟଗରଗଛ ମୂଳର ସେହି ବାବାଜୀଟି ଆସି ତା ପାଖରେ ଛିଡ଼ାହେଲା । ଝୁଲାରୁ ବାହାର କରି ନାନା ଜାତିର ଫଳ ଖଟ ଉପରେ ଥୋଇଲା । ୱାର୍ଡ଼ର ସମସ୍ତେ ମୁହଁ ବୁଲାଇ ହସିଲେ । ଗୋଟିଏ ବୀଭତ୍ସ ରସିକତା କରିବାକୁ ଇଚ୍ଛା ହେଉଥିଲା । ବାହାରେ କିନ୍ତୁ ନିଷ୍ଠାବାନ୍ ଧାର୍ମିକ ଭଳି କହିଲି, ଛିଃ...ସନ୍ନ୍ୟାସିନୀ ହୋଇ...

ମାତାଜୀଟି ସବୁ କଥା ଶୁଣୁଥିଲା । ମୋର ଧିକ୍କାର ଏବଂ ସମସ୍ତଙ୍କର ବିଦ୍ରୂପ ସେ ଗୋଟିଏ କ୍ଷୁଦ୍ର ଅବଜ୍ଞାର ହସରେ ଉଡ଼ାଇ ଦେଇ ତାର ହାତଟି ଧୀରେ ଧୀରେ ସନ୍ତାନ ଉପରେ ରଖିଲା । ବାବାଜୀ ଲଜ୍ଜାରେ ଅଧୋବଦନ ହୋଇ ଛିଡ଼ାହୋଇ ରହିଲେ ।

-ଛିଃ କାହିଁକି ? ଉର୍ମିଳା କହିଲେ, ତାର ବେଶଭୂଷାର ପରିପାଟୀ ବା ଅଙ୍ଗଭଙ୍ଗୀରେ ଯେଉଁ ଆହ୍ୱାନ ଦେଖୁଛନ୍ତି ତା କଅଣ ଯୌନଲାଳସାର ଆହ୍ୱାନ ? ତା ମାତୃତ୍ୱର ଆହ୍ୱାନ ।

-ଡାକ୍ତର ଝୁଅ, ଟିକିଏ କୁହନି, ପେଟରେ ପିଲା ଅଛିନା । ଟିକିଏ ଭଲକରି ଦେଏଖନି ଝୁଅ । ମୋର ନିଶ୍ଚେ ମନେ ହଉଚି, ପିଲା ଅଛି । ହେଇପରା ଖେଳୁଚି !

କରୁଣ ଆବେଦନ, ପୁଣି ଫେରି ଚାହିଁଲି ରାଣୀର ବାଁ ପଟ ଖଟରେ ଶୋଇଚି ଗୋଟିଏ ଅସ୍ଥିଚର୍ମସାର ନାରୀ । ବାଳଗୁଡ଼ିକ ଫୁରୁଫୁରୁ ହୋଇ ପଙ୍ଖା ପବନରେ ଉଡୁଚି । ଆଖି ଦିଓଟିର ଗହ୍ୱରରୁ ସୃଜନ ଆଶା ମଝିରେ ମଝିରେ ଉଜ୍ଜ୍ୱଳ ହୋଇ ଉଠୁଚି । ଗାଲ ଦିଓଟିର ଅସ୍ତିତ୍ୱ ଅଦୃଶ୍ୟ । କିନ୍ତୁ ସବୁ ଠେଲି ଖଟ ଉପରକୁ ଦିଶୁଚି- ଗୋଟିଏ ପ୍ରକାଣ୍ଡ ପେଟ । ଦେଖିଲେ ଗୋଟିଏ ଘୃଣାତ୍ମକ ଦୟା ହୁଏ ।

ଲେଡି ଡାକ୍ତର ତାକୁ ପରୀକ୍ଷା କରି କହିଲେ, ବୁଝିଲୁ, ତୋ ପେଟରେ ପିଲା ନାହିଁ । ଏଟା ଗୋଟିଏ ଆବୁ ।

ଚିଡ଼ି ଉଠି ମହିଳାଟି କହିଲା, ତୋ ମୁଣ୍ଡ । ଏ ହବା ଦିନରୁ ମାସିକିଆ ବନ୍ଦ ହୋଇଚି...

ଆଉ ତୁ କହିବୁ ପିଲା ନାହିଁ । ମା, ମୋ ଧନ, ଟିକିଏ ଭଲକରି ଦେଖ । ପୁଣି ସେହି କରୁଣ ମିନତି ।

ଲେଡ଼ି ଡାକ୍ତରଙ୍କ ସାହାଯ୍ୟକାରିଣୀ ଆଖି ଠାରିଦେଲେ । ଲେଡ଼ି ଡାକ୍ତର ଭଲକରି ପରୀକ୍ଷା କରିବାର ଅଭିନୟ କରି କହିଲେ, ହଁ, ପିଲା ତ ଅଛି ।

-ବଞ୍ଚିଥା ଝିଅ । ଅହିସୁଲକ୍ଷଣୀ ହୋଇଥା । ନାକ ବାଳ ତଳେ ନାଗୁ । ପାଚିଲା ବାଳରେ ସୁନ୍ଦର ନଗା । ହେଁସେ ପିଲା ହୁଅନ୍ତୁ । ଆଉ ଟିକିଏ ଦେଖନି ମା, ପୁଅ ନା ଝିଅ ।

ଲେଡ଼ି ଡାକ୍ତର ଗୋଟିଏ ଦୀର୍ଘ ନିଶ୍ୱାସ ପକାଇ ମୁହଁ ବୁଲାଇଦେଲେ । ଦୀର୍ଘ ନିଶ୍ୱାସଟି ତାଙ୍କ ଜୀବନରେ ଆଶୀର୍ବାଦଗୁଡ଼ିକର ବ୍ୟର୍ଥତା ଜଣାଇଦେଇ ମିଳାଇଗଲା । ପୁଣି ପରୀକ୍ଷାର ଅଭିନୟ କରି ସେ କହିଲେ, ଝିଅଟିଏ ।

-ହଉ ହେଲା । ପୁଅ କିଏ, ଝିଅ କିଏ । ସବୁ ସମାନ । ମା ବାସୁଳେଇ, ତୋତେ ଦିମୁଣ୍ଡ ବଳି ଦେବି । ମୋତେ ସୁରୁଖୁରୁରେ ବିଭାଗ କରି ଦେ । ଝିଅ ମୋର ସଳଖେ ବାହାରି ଆସୁ ।

ଲେଡି ଡାକ୍ତର ତା ପିଠିରେ ହାତ ବୁଲାଇ କହିଲେ, ବୁଝିଲୁ, ଭାରି ବଡ଼ ଝିଅଟାଏ ଅଛି । ପେଟ ଚିରି ବାହାର କରିବାକୁ ହବ ।

-ହଉ, ହେଲା । ଚିରି ଖାରି ଯା କରୁଛ କର, ଝିଅ ମୋର ବଞ୍ଚି ଆସୁ ।

ଦୁଇଟା ହାତ ଯୋଡ଼ି ସେ ଉପରକୁ ଚାହିଁ ରହିଲା ।

ହଠାତ୍ ଶିଶୁ କ୍ରନ୍ଦନର ଐକ୍ୟତାନ ଶୁଣି ଚମକି ଦେଖିଲି ଗୋଟିଏ ଅଦ୍ଭୁତ ଦୃଶ୍ୟ । ପ୍ରାୟ ବାରୋଟି ଶିଶୁଙ୍କୁ ଗୋଟିଏ ଠେଲା ଗାଡ଼ିରେ ଶୁଆଇ ଜଣେ ଧାଇ ଠେଲି ଠେଲି ଆଣୁଚି । ଆଶ୍ଚର୍ଯ୍ୟ ହୋଇ ପଚାରିଲି, ଏ ଶିଶୁଗୁଡ଼ିକ କଅଣ ଜଣକର ?

ରାଣୀ ହସିଉଠି କହିଲା, ତା ହୋଇଥିଲେ ଭାରି ଭଲ ହୁଅନ୍ତା । ଫଟ ବାହାରିଛି ଦେଖିନା । ଅଷ୍ଟ୍ରେଲିଆର ଗୋଟିଏ ସ୍ତ୍ରୀ ନଅଟି ଜନ୍ମ ଦେଇଛି । ଆହା, ଦୁଇଟି ମରିଗଲେ । ତାର ସ୍ୱାମୀ ତାଠୁ ଚୁମା ଖାଉଥିବାର ଫଟ ବାହାରିଛି । କି ଆନନ୍ଦରେ ସ୍ତ୍ରୀ ତା ସ୍ୱାମୀକୁ ଅନେଇଛି ।

ଭଲ ହୁଅନ୍ତା । ଭୟରେ ମୋର ଆଖି ବୁଜି ହୋଇଗଲା । ମାଲ୍‌ଥୁସ ସାହେବଙ୍କୁ କିଏ ଯେପରି ଠେଙ୍ଗାରେ ଠେଙ୍ଗାଏ ଦେଲା । ସେ ଚିତ୍କାର କରି ପଡ଼ିଗଲେ । କଲେଜ ଲାଇବ୍ରେରୀର ମୋଟା ମୋଟା ଅର୍ଥଶାସ୍ତ୍ରର ବହିଗୁଡ଼ିକ ଦୁଲ୍ ଦାଲ୍ ଶବ୍ଦରେ ଥାକରୁ ତଳେ ପଡ଼ିଗଲା । ଆଖି ନ ଖୋଲି କହିଲି, ସେକ୍‌ସପିୟରଙ୍କ ଗୋଟିଏ ନାଟକରେ ଜଣେ ଜ୍ୟୋତିଷ ଠିକ୍ ଏହିପରି କହିଛନ୍ତି । ଜଣେ ମହିଳା ଜ୍ୟୋତିଷଙ୍କୁ ପଚାରିଲେ, 'କୁହନ୍ତୁ ତ, ମୋର କେତୋଟି ସନ୍ତାନ ହେବେ ।' ଜ୍ୟୋତିଷ କହିଲେ, ଯଦି ତୁମର ପ୍ରତ୍ୟେକ ଇଚ୍ଛାରେ ଗର୍ଭସଞ୍ଚାର ହୁଏ, ତେବେ ଲକ୍ଷାଧିକ ।

ରାଣୀ ହସି କହିଲା, ''ଠିକ୍ କହିଚନ୍ତି ସେ । କିନ୍ତୁ ଏଠି କାହାରି ସେ ସୌଭାଗ୍ୟ ହୋଇନାହିଁ । ସବୁ ମା' ମାନଙ୍କ ପାଖରୁ ଛୁଆଗୁଡ଼ିକ ଧାଇ ନେଇ ପରିଷ୍କାର କରିବାକୁ ଯାଇଥିଲା । ବର୍ତ୍ତମାନ ଫେରାଇ ଆଣୁଚି ।''

ଆଖି ଖୋଲି ଦେଖିଲି ସବୁ ମାଆମାନେ ଖଟ ଉପରେ ଉଠି ବସିଚନ୍ତି । ସମସ୍ତେ ରୁଗ୍‌ଣା, କିନ୍ତୁ ସମସ୍ତଙ୍କର ଆଖିରେ ଫୁଟି ଉଠିଚି ଗୋଟିଏ କମନୀୟ ଗର୍ବ, ଅପୂର୍ବ ସନ୍ତୋଷ । କେହି ଯନ୍ତ୍ରଣାରେ ସ୍ତନ ଚାପି ରଖିଛି । କାହାର ବା କ୍ଷୀର ଅବିରତ ଝରି ଲୁଗା ତିନ୍ତାଇ ସାରିଲାଣି । ସମସ୍ତଙ୍କ ହାତ ଏକା ସାଙ୍ଗରେ ପ୍ରସାରିତ ହେଲା । ଧାଇ ଗୋଟି ଗୋଟି କରି ପରିବେଷଣ କଲାପରି ଯାହାକୁ ଯାହାର ଶିଶୁ ଦେଇଗଲା ।

ଗୋଟିଏ ମହିଳା କରୁଣ ସ୍ୱରରେ ପଚାରିଲା, ମୋ ଧନ ?

-ଆସୁଚି, ବ୍ୟସ୍ତ ହ'ନି ।

-ନା, ତୁମେ ଜଲଦି ଆଣ । ମୋ ମନ କଣ ହେଉଚି ।

ରାଣୀ ମୋ କାନରେ କହିଲା, ତା ପିଲା ଆଉ ନାହିଁ ବୋଧେ- ରକ୍ତବାତ ହୋଇଥିଲା । ଆଖିରୁ ଲୁହ ପୋଛି ସେ ନିଜର ହାତଟି ସନ୍ତାନ ଉପରେ ଧୀରେ ରଖିଲା । ସମସ୍ତ ଆଧିଭୌତିକ ଆଧିଦୈବିକ ବିପଦରୁ ତାର ସନ୍ତାନକୁ ରକ୍ଷା କରିବାକୁ ତାର କ୍ଷୀଣ ହାତଟି ଯେପରି ଯଥେଷ୍ଟ ।

-ମୋ ଧନ କାହିଁ ଦିଅ । ପୁଣି ସେଇ କରୁଣ ମିନତି ।

ଧାଇ ଫେରିଆସି କହିଲା, ତା ଦେହ ଟିକିଏ ଖରାପ ଅଛି । ଡାକ୍ତରାଣୀ ଦେଖୁଛନ୍ତି । ଏଇକ୍ଷଣି ନେଇ ଆସିବା ମା, ବ୍ୟସ୍ତ ହୁଅନି ।

-ନା, ତୁମେ ଜଲଦି ଆଣ । ଧନ ମୋର କେତେବେଳୁ ଗଲାଣି...ହେ ମା କାଳୀ.....

-ହଉ ଯାଉଚି । ଧାଇ ମୁହଁ ବୁଲାଇ ଆଖିପୋଛି ଚାଲିଗଲା ।

ଲେଡ଼ି ଡାକ୍ତର ଆସିଲେ ।

-ସମସ୍ତଙ୍କ ପିଲା ତ ଆଣିଲେ, ମୋର କାହିଁ ? କାହିଁକି ନେଇ ଆଜି, ମୁଁ ମନା କରୁଥିଲି । ଧନ ଦିହ ମୋର ଭଲ ନଥିଲା ।

ସେ ଆଉ କହିପାରିଲା ନାହିଁ । ବେଦନାରେ ଓଠ ଦିଓଟି ତାର ଥରି ଉଠିଲା । ଅସହାୟ ଭାବରେ ଥରେ ସମସ୍ତଙ୍କୁ ଚାହିଁ ସେ ମୁହଁ ପୋତିଦେଲା । ସମସ୍ତଙ୍କର ସନ୍ତାନ ଫେରିଚନ୍ତି, ତାର ଫେରିନି, ଏ ଲଜ୍ଜା ଯେପରି ତାକୁ ଜାଳିଦେଲା । ଦୁଇ ସ୍ତନରୁ ତା'ର କ୍ଷୀରର ସ୍ରୋତ ବହି ଲୁଗାଟିଯାକ ତିନ୍ତାଇ ସାରିଲାଣି ।

ଲେଡି ଡାକ୍ତର ପିଠିରେ ହାତ ବୁଲାଇ ପଚାରିଲେ, ପିଲାର ବାପ କାହିଁ ?

-ମୋ ଖାଇବା ଆଣି ଯାଇଛନ୍ତି ।

ସେ ଚାଲିଗଲେ । ଚାରିଆଡ଼େ ନିସ୍ତବ୍‌ଧ ହୋଇଗଲା । ସମସ୍ତେ ରୁଦ୍ଧଶ୍ୱାସରେ ଆଖିରୁ ଲୁହ ପୋଛିଲେ । କିଛି ସମୟ ପରେ ମହିଳାଟିର ସ୍ୱାମୀ ଖାଇବା ନେଇଆସିଲେ । ଲେଡି ଡାକ୍ତର ସଙ୍କେତ ଦ୍ୱାରା ତାଙ୍କୁ ବାହାରକୁ ଡାକିଲେ । ମହିଳାଟି ଏଥର ସବୁ ବୁଝିପାରିଲା । ମୋ ଧନ ବୋଲି ଚିତ୍କାର କରି ତାର ସନ୍ତାନର କ୍ଷୁଦ୍ର ତକିଆଟି କୁଣ୍ଢାଇ ସେ ଖଟ ଉପରୁ ତଳେ ପଡ଼ି ଅଜ୍ଞାନ ହୋଇଗଲା ।

ମୁଁ ଆଉ ରହିପାରିଲି ନାହିଁ ସୃଷ୍ଟିର ଏ ଅଦ୍ଭୁତ ପ୍ରସୂତିଶାଳାରେ । ବାହାରକୁ ପଳାଇ ଆସିଲି । ବାସ୍ତବତାକୁ ଫେରିଆସିବା ପାଇଁ ମୁଁ ବେଞ୍ଚ୍ ଉପରେ ପଡ଼ିଥିବା ଖଣ୍ଡେ ଖବରକାଗଜ ଫିଟାଇ ଧରିଲି । ଆଜିକାର ମୁଖ୍ୟ ସମ୍ବାଦ ହେଉଛି-

''ବିଜ୍ଞାନର ଅଦ୍ଭୁତ ଆବିଷ୍କାର । ମାତ୍ର ଗୋଟିଏ ହାଇଡ୍ରୋଜେନ ବୋମାରେ ନିମିଷକେ କୋଟି କୋଟି ଲୋକର ମୃତ୍ୟୁ ହୋଇପାରେ ।

ତୃତୀୟ ମହାସମର ଲାଗିଯିବ ? ଦୁଇପକ୍ଷର ସଜବାଜ । ସୈନ୍ୟ ଶକ୍ତି ବୃଦ୍ଧିପାଇଁ ପ୍ରତ୍ୟେକ ପିତାମାତାଙ୍କୁ ସନ୍ତାନ ଉତ୍ପାଦନ ପାଇଁ ଆର୍ଥିକ ପୁରସ୍କାର ।''

କାଗଜଟା ମୋଡ଼ିମାଡ଼ି ଫିଙ୍ଗିଦେଲି ।

# ବଟ ମହାପୁରୁଷ

ଆପଣ କେବେ ଯେବେ ନରିପୁର ଆଡ଼େ ଯାଇଥିବେ, ତେବେ ନିଶ୍ଚୟ ବଟ ମହାପୁରୁଷଙ୍କ ଛାୟାତଳେ ବସି ବିଶ୍ରାମ ନେଇଥିବେ । (ହାୟ ! ସେ ମହାପୁରୁଷ ଆଉ ନାହାନ୍ତି । ମଣିଷମାନଙ୍କ ଦାଉରେ ପଡ଼ି ତାଙ୍କୁ ଇହଧାମ ଛାଡ଼ିବାକୁ ପଡ଼ିଚି !)

ନରିପୁର ଗାଁମୁଣ୍ଡରେ ବଟ ମହାପୁରୁଷଙ୍କ ଆସ୍ଥାନ । ପ୍ରକାଣ୍ଡ ମହୀରୁହ । ଅସଂଖ୍ୟ ଓହଳ ସବୁ ଓହଳି ପ୍ରକାଣ୍ଡ ପ୍ରକାଣ୍ଡ ଖମ୍ବ ପାଲଟି ଗଲାଣି । ପ୍ରାୟ ମାଣେ ଜମି ମାଡ଼ି ବସିଛନ୍ତି ବଟ ମହାପୁରୁଷେ । ତଳଟି ପରିଷ୍କୃତ ପରିଚ୍ଛନ୍ନ, ଯେପରି ପକ୍କା ଚଟାଣ । ମହାପୁରୁଷଙ୍କ ତଳଦେଇ ସଡ଼କ ଚାଲିଯାଇଛି ପଶ୍ଚିମରୁ ପୂର୍ବକୁ । ପୂର୍ବକୁ ଡିହସାହି, ଦେିତାପୁର, ଧାନୁଆ, ଗମରା ଇତ୍ୟାଦି ଗାଁମାନ । ପଶ୍ଚିମକୁ ନୂଆଗାଁ, ନୂଆପାଟଣା ଅହମ୍ମଦପୁର ଇତ୍ୟାଦି । ଏ ସବୁ ଗାଁ ନରିପୁରଠାରୁ ଅଳ୍ପ ଦୂରରେ ।

ସଡ଼କ ଉତ୍ତର ପଟକୁ ଲାଗି ନରିପୁର ଗାଁ ମଶାଣି । ସେଠି ସାନ ବଡ଼ କେତେ ମଣିଷ ମୁଣ୍ଡ, କେତେ ଛିଣ୍ଡା ମସିଣା ତକିଆ ଆଦି ପଡ଼ିଛି । ଆହୁରି ପଡ଼ିବ । ମଝିରେ ମଝିରେ ବୋଲ ହରି, 'ହରି ବୋଲ' କୁହାଟରେ ମଶାଣି ଜମି ଉଠେ । ଦାଉ ଦାଉ ଚିତା ଜଳିଉଠେ । ତା'ପରେ ଶୂନ୍‌ଶାନ୍ କିଛିକ୍ଷଣ ପାଇଁ । ଗାଁ ମାଇପିମାନେ କାନ୍ଦ ବୋବାଳି ଛାଡୁ ଛାଡୁ ହାଣ୍ଡି ମାଠିଆ ଧରି ସେଠି ରୁଣ୍ଡ ହୁଅନ୍ତି । ହାଣ୍ଡି ଫାଣ୍ଡି ମଶାଣିରେ ଫୋପାଡ଼ି ଦେଇ ପାଖ ପୋଖରୀରେ ଗାଧୋଇ ପାଧୋଇ ପୁଣି କାନ୍ଦି କାନ୍ଦି ଫେରି ଯାଆନ୍ତି ଯେ ଯାହା ଘରକୁ । ଦିନେ ଦି'ଦିନ କାନ୍ଦନ୍ତି । କାନ୍ଦଣା ଥମିଆସେ । କିଛି ଦିନ ପରେ ପୁଣି ହସ ଖୁସି । ଯିଏ ମଲା ସିଏ ଗଲା । ତା'ର ଦେହ ନରିପୁର ମଶାଣିରେ ମାଟି ହୋଇ ମିଶି ଘାସ ବା ଗଇସ ଗଛକୁ ସାର ଯୋଗାଇଲା । ଆଉ ତା'ର ଆତ୍ମା ? କିରସ୍ତାନମାନେ କହିବେ, ସବୁ ଆତ୍ମାଯାକ ଯାଇ ପ୍ରକାଣ୍ଡ ଗୋଟାଏ ଘରେ ଅପେକ୍ଷା କରି ରହିବେ । କଳ୍ପ ଶେଷରେ ସେମାନଙ୍କ ବିଚାର ହେବ । ତା'ପରେ କେହି ଅନନ୍ତକାଳ ପାଇଁ ନରକ ଯିବେ । କେହି ବା ସ୍ୱର୍ଗ । ନାସ୍ତିକମାନେ କହିବେ, ଭସ୍ମୀଭୂତସ୍ୟ ଦେହସ୍ୟ ଆତ୍ମା କୁଆଡୁ ଆସିଲା ? ଗୀତା କହେ, ଆତ୍ମା ଅମର ! ପଣ୍ଡିତେ ଯିଏ ଯାହା କହନ୍ତୁ, ନରିପୁର ଲୋକେ ପ୍ରତ୍ୟକ୍ଷ ପ୍ରମାଣ ପାଇଛନ୍ତି ଯେ ଅନେକ ଭସ୍ମୀଭୂତ ଦେହ ଭୂତ ହୋଇ ନିଜ ଘର ବା ଘର ଲୋକର ମାୟା ଛାଡ଼ି ନପାରି ଏଇ ବଟ ମହାପୁରୁଷଙ୍କ ଦେହରେ ଆଶ୍ରା କରି ରହିଯାଆନ୍ତି । ସ୍ୱର୍ଗକୁ ଯିବାକୁ ବି ଇଚ୍ଛା କରନ୍ତି ନାହିଁ । ଏଇ ତ ସେଦିନ ଅନ୍ତା, ଗଜାଟୋକାଟା, ଗଜାଟୋକୀ ବୋହୂଟାକୁ ଛାଡ଼ି ଗୋଟାଏ ଝାଡ଼ା ପରେ ଚାଲିଗଲା । ଏଇ ଶ୍ମଶାନରେ ତା ବୋହୂ କାନ୍ଦି କାନ୍ଦି ମୂର୍ଚ୍ଛାଯାଇଥିଲା । ତା ଶବ ଦାହ କରି ଲୋକେ ଫେରୁଥିବାବେଳେ ଦେଖିଲେ- ବଟ ମହାପୁରୁଷଙ୍କ ଗୋଟାଏ ମୋଟା ଡାଳ ମଟ ମଟ କରି ଭାଙ୍ଗି ପଡ଼ିଗଲା, ଅଥଚ ବତାସ ଫତାସ

କିଛି ନାହିଁ । ସମସ୍ତେ ଜାଣିଲେ, ବୋହୂ-ମାୟା ଛାଡ଼ି ନ ପାରି ଅନ୍ତା ବଟ ମହାପୁରୁଷଙ୍କ ଗୋଟାଏ ଡାଳରେ ବସା ବାନ୍ଧି ରହିଲା । ମାସେ ନ ପୂରୁଣୁ ଅନ୍ତାବୋହୂ ରାମ ପ୍ରଧାନ ସାଙ୍ଗରେ କଲିକତା ପଳେଇଲା । ଅନେକେ କୁହାକୁହି ହେଲେ, କଥାଟି ବି ଜଣାପଡ଼ିଗଲା, ରାମ ପ୍ରଧାନ କୁଶିକ୍ଷାରେ ଅନ୍ତାବୋହୂ ଅନ୍ତାକୁ ବିଷ ଦେଇ ମାରି ଦେଇଚି । ତଥାପି ଏପର୍ଯ୍ୟନ୍ତ ଅନ୍ତା ବଟ ମହାପୁରୁଷଙ୍କ ଡାଳରେ ଅଛି, ଲୋକେ ଦେଖୁଛନ୍ତି । ଏମିତି କେତେ ଯେ ଭୂତ ବଟ ମହାପୁରୁଷଙ୍କ ଦେହରେ ରହିଲେଣି, କିଏ ତା'ର କଳନା କରିବ ! କେହି କେହି ଦେଖିଚନ୍ତି ରାତି ଅଧରେ ଅସଂଖ୍ୟ ଭୂତ ସେ ଗଛରୁ ଓହ୍ଲାଇ ସଡ଼କେ ସଡ଼କେ କୁଆଡ଼େ ଯାଆନ୍ତି । ଖାଲି ଯେ ନରିପୁର ଭୂତମାନେ ବଟ ମହାପୁରୁଷଙ୍କଠି ଅଛନ୍ତି ତା ନୁହେଁ, ଆଖ ପାଖ ପଚିଶଖଣ୍ଡ ଗାଁର ଭୂତମାନେ ମଧ ସେଠି ରହନ୍ତି; ଏମିତି ଶୁଣାଯାଏ ।

ବଟ ମହାପୁରୁଷଙ୍କ ତଳେ ବର୍ଷା ଟୋପାଏ କି ଖରା ଚେନାଏ ବି ପଡ଼େ ନାହିଁ । ଶୀତଦିନରେ ମଧ ତାଙ୍କ ତଳଟି ଉଷୁମ, ମା'କୋଳ ଭଳି । ଘୋର ବର୍ଷା ଆସିଲେ ଗାଈଆଳ ପିଲାଏ ଗାଈ ଗୋଠକୁ ବିଲରୁ ବା ଦଣ୍ଡାରୁ ଘଉଡ଼େଇନେଇ ଆସନ୍ତି ବଟ ମହାପୁରୁଷଙ୍କ ତଳକୁ । ଗାଈ, ଛେଳି, ମେଣ୍ଢା ଆଦି ଶହ ଶହ ପଶୁ ନିରାପଦରେ ଶୁଖିଲାରେ ଗଛତଳେ ଚାରିକାତ ମେଲେଇଦେଇ ଦେହକୁ ଦେହ ଲଗେଇ ଦେଇ ଅଳସ ଭାଙ୍ଗନ୍ତି, ପାକୁଳି କରନ୍ତି । ଗାଈଆଳ ପିଲାଏ ବଟ ମହାପୁରୁଷଙ୍କ ରାସ୍ତାପରି ଲମ୍ବା ଚଉଡ଼ା ଡାଳମାନଙ୍କରେ ଦୌଡ଼ାଦୌଡ଼ି କରନ୍ତି ଆନନ୍ଦରେ । କେହି ବା ଗୋଟାଏ ଡାଳରେ ଶୋଇ ଆନନ୍ଦରେ ଗୀତ ଛାଡ଼େ, କହ କହ ବାଳା କାହାର ଅବଳା, କିମ୍ବା ଏକା ବସି କାନ୍ଦୁଚୁରେ, କହ କହ ବାଳା... । ଆଉ କେହି ବା ଗୋଟାଏ ଓହଳରେ ଦୋଳି ଖେଳେ । ଖରା ଦିନର ଉଦୁଉଦିଆ ଖରାବେଳେ ବାଟୋଇ ଦୌଡ଼ୁଥାଏ ବଟ ମହାପୁରୁଷଙ୍କୁ ଲକ୍ଷ୍ୟ କରି । ପାଖ ହୋଇଗଲା ମାତ୍ରେ ବଟ ମହାପୁରୁଷଙ୍କ ଦେହରୁ ଛଲକାଏ ହେମାଳ ପବନ ବାଟୋଇକୁ ପାଛୋଟି ଆଣେ । ବାଟୋଇ ମୁଣ୍ଡରୁ ଠେକାଟା ଫିଟାଇ ଦେଇ ଝାଳ ପୋଛି ଥକାମାରି ଗୋଟାଏ ଓହଳକୁ ଡେରି ବସିଯାଏ ଦଣ୍ଡେ । ତା'ପରେ ପାଣିଛତ୍ରରୁ ଲଙ୍କାମରିଚ ଗୋଳା ହୋଇଥିବା ଥଣ୍ଡା ତୋରାଣିରୁ ଏକା ନିଶ୍ୱାସକେ ପେଟେ ପିଇ ବଟ ମହାପୁରୁଷଙ୍କ ଗୋଟାଏ ପାଦରେ ମୁଣ୍ଡ ରଖି ବେହୋସ୍ ହୋଇ ଶୋଇଯାଏ । ଉଠେ ଛାଇ-ନେଉଟାଣି ବେଳକୁ । ମହାପୁରୁଷଙ୍କ ପାଦଛୁଇଁ ଜୁହାର ହୋଇ ଚାଲିଯାଏ ବାଟେ ବାଟେ । ଶୀତଦିନ ରାତିରେ ମହାଜନମାନଙ୍କ ୩୦/୪୦ ଖଣ୍ଡ ମାଲବୁହା ବଳଦଗାଡ଼ିର କେଁ କଟର ବନ୍ଦ ହୋଇଯାଏ ବଟ ମହାପୁରୁଷଙ୍କ ଆସ୍ଥାନ ତଳେ । ବଳଦମାନଙ୍କୁ ଫିଟାଇ ଦେଇ ଓହଳମାନଙ୍କରେ ବାନ୍ଧି ଦେଇ ରୋଷେଇ କରିବାରେ ଲାଗିଯାଆନ୍ତି । ଖିଆପିଆ ପରେ ବଳଦମାନଙ୍କୁ ଖାଇବାକୁ ଦେଇ ଆରାମରେ ଶୋଇଯାଆନ୍ତି ବଟ ମହାପୁରୁଷଙ୍କ ତଳେ । ବାହାରର ଥଣ୍ଡା ସେମାନଙ୍କୁ ସ୍ପର୍ଶ କରିପାରେ ନାହିଁ, ବଟ ମହାପୁରୁଷ ଖଣ୍ଡେ ଅଦୃଶ୍ୟ ଉଷୁମ କମ୍ବଳ ସମସ୍ତଙ୍କୁ ଘୋଡ଼ାଇ ଦିଅନ୍ତି । ସକାଳୁ ଉଠି ସେମାନେ ମହାପୁରୁଷଙ୍କ ଆସ୍ଥାନ ପରିଷ୍କାର କରିଦେଇ ଜୁହାର ହୋଇ ଚାଲିଯାଆନ୍ତି ।

ଏ ମହାପୁରୁଷଙ୍କୁ ଆଣିଥିଲେ ବଟବିହାରୀ । ସେ ଚାରିପୁରୁଷ ଆଗ କଥା । ବଟବିହାରୀ ଥିଲେ ଅତି ଧାର୍ମିକ, ସତ୍ୟବାନ୍, ନିଷ୍ଠାବାନ୍ ଅଥଚ ନୀରବ ମୌନୀ ଲୋକ । ଗାଁ ଗାଁ ଭିତରେ ଯେତେବେଳେ କନ୍ଦଳ କ୍ରମେ କ୍ରମେ ବୃଦ୍ଧି ପାଇବାକୁ ଲାଗିଲା, ସେତେବେଳେ ସେ ବ୍ୟଥିତ ହୋଇ ଚାଲିଗଲେ ହିମାଳୟକୁ ତପସ୍ୟା କରିବାକୁ । ସେ ଯୁଗରେ ସମାଜରେ ପାପବୃଦ୍ଧି ହେଲେ ନେତା

ଗୋଷ୍ଠୀବାଦ, ସମାଜବାଦ, କୂଟନୀତି, ରାଜନୀତି, ପେଞ୍ଚ ପ୍ରୟୋଗ କରୁ ନ ଥିଲେ । ସମସ୍ତଙ୍କ ପାପକୁ ନିଜର ପାପ ବୋଲି ଧରି ନେଇ ତାକୁ ଦୂର କରିବାକୁ ତପସ୍ୟା କରୁଥିଲେ, ଉପବାସ କରୁଥିଲେ । ଏବଂ ତପସ୍ୟା ପରେ ଆସି ପୁଣି ଧର୍ମ, ଆଧ୍ୟାତ୍ମିକତା ସଂସ୍ଥାପନ କରିବାକୁ ଲାଗିଯାଉଥିଲେ । ବର୍ତ୍ତମାନ ଯୁଗରେ ନେତାଏ ପ୍ରଚାର କରୁଛନ୍ତି, ଧର୍ମ, ଆଧ୍ୟାତ୍ମିକତା ଫିଙ୍ଗିଦିଅ, ବିଜ୍ଞାନଯୁଗରେ ସେ ସବୁର ସ୍ଥାନ ନାହିଁ, ଶିଳ୍ପ ବ୍ୟବସାୟଦ୍ୱାରା ଅର୍ଥ ଉପାର୍ଜନ ବଢ଼ାଅ, ତାହାହିଁ ଜୀବନର ଏକମାତ୍ର ଲକ୍ଷ୍ୟ । ଧର୍ମ ଅଳୀକ କଳ୍ପନା, ଅର୍ଥ ବାସ୍ତବ ସତ୍ୟ । କିଏ ଭଲ, କିଏ ଠିକ୍, ମହାକାଳ କେବଳ ଜାଣନ୍ତି ! ହୁଏତ ମିଥ୍ୟାଟା ହିଁ ସତ୍ୟ, ସତ୍ୟଟା ହିଁ ମିଥ୍ୟା ! ହୁଏତ ସେ କଳ୍ପନା ମଣିଷକୁ କରାଏ ଦେବତା, ଆଉ ସେ ସତ୍ୟ କରାଏ ରାକ୍ଷସ । ବର୍ଷେକାଳ ହିମାଳୟରେ ତପସ୍ୟା କରିବା ପରେ ବଟବିହାରୀ ଫେରିଲେ ନରିପୁର, ସାଙ୍ଗରେ ବରଗଛର ଚାରା ଧରି । ଆଖପାଖ ପଚିଶଖଣ୍ଡ ଗାଁର ଲୋକେ ମହାଉତ୍ସାହରେ ଓ ସମ୍ଭ୍ରମରେ ବଟ ମହାପୁରୁଷଙ୍କୁ ସ୍ଥାପନା କଲେ । ସାତଦିନ ଧରି ଧୂମ୍‌ଧାମ୍‌ରେ ଖିଆପିଆ ଚାଲିଲା । ସେଇ ଚାରା ଆଜି ବିରାଟ ବଟ ମହାପୁରୁଷ । ତାଙ୍କରି ଯୋଗୁଁ ସମସ୍ତ ଦାଦବିବାଦ ଭୁଲି ପୁଣି ମିଳିତ ହେଲେ ତାଙ୍କରି ଶତଶତ ବାହୁଛାୟା ତଳେ । ବଟବିହାରୀ ଦେହତ୍ୟାଗ କଲା ପରେ ସ୍ୱର୍ଗ ନଯାଇ ରହିଗଲେ ବଟ ମହାପୁରୁଷଙ୍କ ଦେହରେ । ଏ ପର୍ଯ୍ୟନ୍ତ ତାଙ୍କ ବଂଶରୁ କେହି ହେଲେ ଜଣେ ଖରାଦିନରେ ବଟ ମହାପୁରୁଷଙ୍କ ତଳେ ପାଣିଛତ୍ର ଦିଅନ୍ତି । ବଟମହାପୁରୁଷଙ୍କ ଲଗାଏତ ବଟେଶ୍ୱର ମହାଦେବଙ୍କ ପୂଜା କରନ୍ତି । ତାଙ୍କ ବଂଶର ବଟସୁନ୍ଦର ଯେତେବେଳେ ମନ୍ଦିର ଭିତରେ ଶିବାଷ୍ଟକ ବୋଲୁଥିଲେ-

''ଗିରିରାଜସୁତାନ୍ୱିତବାମତନୁ, ତନୁନିନ୍ଦିତରାଜିତକୋଟିବିଧୂମ୍,
ବିଧି ଖଣ୍ଡବିମଣ୍ଡିତଭାଲତଟମ୍, ପ୍ରଣମାମି ଶିବମ୍‌ଶିବକଳ୍ପତରୁମ୍ ।''

କିମ୍ବା ରାବଣଙ୍କ ଶିବତାଣ୍ଡବ ବୋଲୁଥିଲେ-

''ଜଟାଟବୀଗଳଜ୍ଜଳପ୍ରବାହପ୍ଲାବିତସ୍ଥଳେ,
ଗଳେଽବଲମ୍ବ୍ୟଲମ୍ବିତାମ ଭୁଜଙ୍ଗତୁଙ୍ଗମାଳିକାଂ,
ଡମଡମ ଡମଡମ ନିନାଦ ବଡ୍‌ଡମର୍ବୟଂ,
ଚକାରଚଣ୍ଡତାଣ୍ଡବମ୍ ତନୋତୁ ନଃ ଶିବଃ ଶିବମ୍ ।''

ସେତେବେଳେ ମନ୍ଦିର ଭିତର ଗମଗମ ହୋଇଉଠୁଥିଲା । ବଟ ମହାପୁରୁଷ ମଧ୍ୟ ଆବେଗରେ କମ୍ପି ଉଠୁଥିଲେ । ବଟସୁନ୍ଦରଙ୍କ ମରକଳେବର ନରିପୁର ମଶାଣିରେ ମିଶିଯାଇଚି । କିନ୍ତୁ ସେ ବି ନରିପୁର ମାୟା ନଛାଡ଼ି ରହିଯାଇଚନ୍ତି ବଟ ମହାପୁରୁଷଙ୍କ ଦେହରେ ।

ପ୍ରତ୍ୟେକ ବର୍ଷ ଦ୍ୱିତୀୟା ଓଷା ଦିନ ବଟ ମହାପୁରୁଷଙ୍କ ମାର୍ଜନା, ସ୍ନାନ ହୁଏ । ପୂଜା ହୁଏ । ଢୋଲ ମହୁରି ବାଜେ । ଗୁଡ଼ପଣା ଭୋଗ ହୁଏ । ଗାଁ ମାଇପିମାନଙ୍କ ଶଙ୍ଖ ହୁଳହୁଳି ଶବ୍ଦରେ ବଟ ମହାପୁରୁଷ ଆନନ୍ଦରେ କମ୍ପିଯାଆନ୍ତି । ସ୍ନାନ ହୁଏ । ତା'ପରେ ବଟ ମହାପୁରୁଷ ପିନ୍ଧନ୍ତି ନୂଆଲୁଗା । ତାଙ୍କର ପ୍ରତ୍ୟେକ ଓହଳରେ ଓ ମୂଳରେ ସିନ୍ଦୂରଲାଗି ହୁଏ । ଧୂପଝୁଣା ବାସନାରେ ବଟ ମହାପୁରୁଷଙ୍କ ଆସ୍ଥାନ ମହକି ଉଠେ । ତା'ପରେ ଚାଲେ ଭୋଜି ଭାତ । ପଚିଶ ଖଣ୍ଡ ଗାଁର ଲୋକେ, ଏପରି କି ଅହମ୍ମଦପୁରର ପଠାଣମାନେ ବି, ଏକାଠି ବସି ଖାଆନ୍ତି । ଦିନରାତି ବଟ ମହାପୁରୁଷଙ୍କ ତଳେ ଯାତ୍ରା, ବାଦି ପାଲା, ଦୋକାନପତ୍ର ବସେ । ଇୟେ ହେଲା ତାଙ୍କର ବାର୍ଷିକ ପୂଜା କିନ୍ତୁ କାହାରି ମିଳା ହେଲେ,

ବା କାହାରି ମନସ୍କାମନା ପୂର୍ଣ୍ଣ ହେଲେ, ପୁଅ ଚାକିରି ପାଇଲେ ବାହାଘର ହେଲେ, ସେ ପୂଜା କରାଏ । ଏମିତି ପୂଜା ଲାଗିଥାଏ ବର୍ଷସାରା । ବଟ ମହାପୁରୁଷଙ୍କୁ କେନ୍ଦ୍ରକରି ପଚିଶଖଣ୍ଡ ଗାଁ ଭେଦାଭେଦ ଦୂରକରି ମିଳିମିଶି ଚଳନ୍ତି ।

ହିମାଳୟର ଏ ମହୀରୁହ ହିମାଳୟପରି ନରିପୁର ସୀମାରେ ଏବଂ ପଚିଶ ଖଣ୍ଡ ଗାଁର କେନ୍ଦ୍ରସ୍ଥଳରେ ବିରାଜମାନ ଚାରିପୁରୁଷ ହେବ ।

ନରିପୁର ଗାଁ ମଶାଣିକୁ ଲାଗି ଉତ୍ତରପଟେ ହଳଦିଆ ଗାଁ । ବଡ଼ ଗାଁଟାଏ । ହଳଦିଆର ଲୋକେ ନରିପୁରିଆମାନଙ୍କ ଠାରୁ ଅଧିକ ଶିକ୍ଷିତ ଓ ଥିଲାବାଲା । ନରିପୁରରେ ଗୋଟିଏ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ମାଇନର ସ୍କୁଲରେ ପରିଣତ ହୋଇପାରିନାହିଁ । ତା'ର ଦରକାର ପଡ଼ିନାହିଁ, କାରଣ ପିଲାଏ, କଳାକଳେବର କହ୍ନାଇ ସଙ୍ଗେ ରୋହିଣୀ ସୁତ.... ବୋଲି ଶିଖୁ ନ ଶିଖୁଣୁ ବଳଦଲାଙ୍ଗୁଡ଼ ମୋଡ଼ି ହେଃ ହେଃ ଶଳା ବଳଦ ମୋର.... କହୁ କହୁ ବିଲକୁ ଦୌଡ଼ନ୍ତି ସକାଳୁ । କିନ୍ତୁ ହଳଦିଆର ମାଇନର ସ୍କୁଲ ଉଚ୍ଚ ବିଦ୍ୟାଳୟରେ ପରିଣତ ହେଲାଣି ଅନେକ ଦିନୁ । ଆଉ ଅଳ୍ପ ଦିନ ଭିତରେ ସେ କଲେଜରେ ପରିଣତ ହେବ । ହଳଦିଆର ଅଧିକାଂଶ ଚାକିରିଆ ଓ ବଡ଼ ବ୍ୟବସାୟୀ । ସେମାନଙ୍କ ଭିତରୁ ଅନେକ ବଡ଼ ବଡ଼ ଚାକିରିଆ ବି ଅଛନ୍ତି । ବିଧାନସଭାର ସଭ୍ୟ, ସରପଞ୍ଚ, ପଞ୍ଚାୟତ ସମିତି ଚେୟାରମେନ୍ ମଧ୍ୟ ହଳଦିଆର ଲୋକେ । ନରିପୁରରେ ଖାଲି ନୁଆଣିଆ ଅନ୍ଧାରୁଆ ଚାଳଘର । ମଣିଷ ରହିବା ଘରଠାରୁ ଗାଈଗୋରୁ ରହିବା ଘର ବଡ଼ । କିନ୍ତୁ ହଳଦିଆରେ ଅନେକ କୋଠାବାଡ଼ି ।

ହେଲେ, ନରିପୁରର ଗର୍ବ ତା'ର ବଟ ମହାପୁରୁଷ । ଯେତେ ବଡ଼ ଗାଁ ହେଉନା ପଛକେ ତାକୁ ମୁଣ୍ଡ ନୁଆଇଁବାକୁ ହେବ ନରିପୁରର ବଟ ମହାପୁରୁଷଙ୍କ ତଳେ । କଳ୍ପତରୁ ସେ । ପ୍ରତ୍ୟକ୍ଷ ଦେବତା ।

କିନ୍ତୁ ହେଲେ କଅଣ ହେଲା, ଯୁଗ ବଦଳୁଛି । ପଞ୍ଚାୟତରାଜ ଚାଲିଚି । ଲୋକେ ଶିକ୍ଷିତ ହେଲେଣି । ଦେଶର ଭଗୀରଥ ବିଦେଶମାନଙ୍କରୁ ଟଙ୍କାସ୍ରୋତ ସବୁ ମୁହେଁଇ ଦିଲ୍ଲୀକୁ ଆଣିଲେଣି । ସେଠି ସବୁ ଠୁଳ କରି ପୁଣି ମୁହେଁଇ ଦିଆ ହେଉଚି ସବୁ ରାଜ୍ୟକୁ । ପୁଣି ରାଜ୍ୟରୁ ପ୍ରତ୍ୟେକ ଗାଁକୁ ସୁଅ ଚାଲିଚି । କେଉଁ କେଉଁ ରାଜ୍ୟର ଭଗୀରଥମାନେ ପୁଣି ସିଧାସଳଖ ବିଦେଶରୁ ସେ ସୁଅକୁ ନିଜ ନିଜ ରାଜ୍ୟକୁ ଆଣିବାକୁ ଚେଷ୍ଟା କରୁଛନ୍ତି । ଅନେକ କପଟି ମହାଦେବ ବା ଜାନୁମୁନି ସେ ସୁଅକୁ ଜଟରେ ଛପାଇ ଦେଉଛନ୍ତି ବା ଚଳୁ କରି ଦେଉଛନ୍ତି । କିନ୍ତୁ ସେଥିରେ କିଛି ଯାଏ ଆସେ ନାହିଁ । ସୁଅ ତ ମାଡ଼ି ଆସୁଛି । କିଏ କେତେ ଛପାଇ ରଖୁଛି, କିଏ କେତେ ଚଳୁ କରୁଚି କରୁ । ଦେଖାଯିବ ପରେ । କ୍ୟା ପରୱା ।

ହେଲେ, ଗୋଳମାଳ ହେଲା, ଫାଇଦା ଉଠାଇ ନ ପାରିବା ଲୋକେ ଯେତେବେଳେ ହଠାତ୍ ଦେଶପ୍ରେମୀ- କର୍ମୀ ହୋଇ ଉଠିଲେ, ମୁଣ୍ଡରେ ଧଳା ଟୋପି ନାଇଲେ, କାନ୍ଧରୁ ମୁଣା ଝୁଲାଇଲେ ଓ ଆଣ୍ଠୁ ଉପରକୁ ମୋଟ ଧୋତି ପିନ୍ଧିଲେ । ନରିପୁରର ବଟକୃଷ୍ଣ ଦିନେ ଏମିତି ବେଶ ବଦଳେଇଲେ । ସେ କଲିକତାରେ ଝୋଟକଳରେ କଅଣ କାମ କରୁଥିଲେ । ଶାଗୁଣା ମଡ଼ଗନ୍ଧ ପାଇ ଛୁଟିଲାପରି ସେ କଲିକତା ଛାଡ଼ି ଗାଁକୁ ଆସି ଆସ୍ଥାନ ଜମାଇଲେ । ନିମେଷକେ ସେ ଅବସ୍ଥାଟା ହୃଦୟଙ୍ଗମ କଲେ ଯେ ଯେଉଁ ସୁଅ ହଳଦିଆକୁ ଚାଲିଚି ତା'ର ଗୋଟାଏ ଧାର ନରିପୁରକୁ ଆଣିବାକୁ ହେଲେ ବେଶ୍ କିଛି ବୁଦ୍ଧି ଖରଚ କରିବାକୁ ପଡ଼ିବ ।

ତେଣୁ ସେ ପ୍ରଥମେ ସ୍ଥାପନ କଲେ, 'ବଟ ମହାପୁରୁଷ ଉନ୍ନତି ସମିତି' । ସଭା ବସିଲା । ପଚିଶଖଣ୍ଡ ଗାଁର ଲୋକେ ସଭାରେ ଯୋଗ ଦେଲେ । ନିୟମ ହେଲା ପ୍ରତ୍ୟେକ ଗାଁବାଲା ମାସକୁ ଅଣାଏ ଚାନ୍ଦା ଦେବେ । ଯିଏ ବଟ ମହାପୁରୁଷଙ୍କ ସ୍ପେସିୟାଲ୍ ପୂଜା କରାଇବ ସେ ଦୁଇଟଙ୍କା ଦେବ । ପ୍ରତ୍ୟେକ ଚୈତ୍ରରେ ବଟ ମହାପୁରୁଷଙ୍କ ନୂତନ କଳେବରବେଳେ ଯେଉଁ ହିମାଳୟ ପ୍ରମାଣ ପତର ଝଡ଼େ, ତାକୁ ଆଉ ଧୋବଣୀ ପାଲୁଣୀମାନେ ମାଗଣା ନେଇ ପାରିବେ ନାହିଁ, ଟୋକେଇକୁ ଏକ ନୂଆପଇସା ମାସୁଲ ଦେବେ, ଇତ୍ୟାଦି । ବଟକୃଷ୍ଣ ସମିତିର ସେକ୍ରେଟେରି ହେଲେ । ଖୁବ୍ ଟଙ୍କା ଆଦାୟ ହେଲା । ବଟ ମହାପୁରୁଷଙ୍କ ମୂଳ ଚାରିପଟେ ପ୍ରକାଣ୍ଡ ଚଉତରା ଗଢ଼ା ହେଲା ଏବଂ ପ୍ରତ୍ୟେକ ଓହଳ ଚାରିପଟେ ବି ସାନ ସାନ ଚଉତରା ଗଢ଼ା ହେଲା । ତା ସାଙ୍ଗେ ସାଙ୍ଗେ ବଟକୃଷ୍ଣଙ୍କ ଆଶ୍ରମ ମଧ୍ୟ ପକା ହେଲା । ବଟକୃଷ୍ଣ ବଟ ମହାପୁରୁଷଙ୍କ ଆୟ ଆହୁରି ଏକ ଅଭିନବ ଉପାୟରେ ବଢ଼ାଇବାକୁ ଲାଗିଲେ । ଅମନ୍ମଦପୁରର ଜାନମହମ୍ମଦ ହେଉଚନ୍ତି ଗଣକବି । 'ଶାଶୁ-ବୋହୂ କଳି', 'କଟକିଆଣୀ' ଆଦି କବିତା ଲେଖି ଛପାଇ ସେ ଗ୍ରାମେ ଗ୍ରାମେ ବୁଲି ବିକନ୍ତି । ଅନ୍ତାବୋହୂ ଅନ୍ତାକୁ ବିଷ ଦେଇ ମାରି ରାମ ପ୍ରଧାନ ସହିତ କଲିକତା ପଳେଇ ଯିବା କାହାଣୀ ସେ କବିତାରେ ଲେଖି ଛପାଇ ଗ୍ରାମେ ଗ୍ରାମେ ବୁଲି ପ୍ରଚାର କରିଥିଲେ । ସେ ବହି ତାଙ୍କର ଭାରି କାଟତି ହୋଇଥିଲା, ପ୍ରତ୍ୟେକ ଗାଁର ବୋହୂମାନେ ତାକୁ କିଣି ପଢ଼ିଚନ୍ତି । ବଟକୃଷ୍ଣ ତାକୁ ଧରିଲେ 'ବଟ ମହାପୁରୁଷ ମାହାତ୍ମ୍ୟ' ଲେଖି ପ୍ରଚାର କରିବାକୁ । 'ବଟ ମହାପୁରୁଷ ମାହାତ୍ମ୍ୟ' ଲେଖା ହେଲା, ସେଥିରେ ଭଣିତା ହେଲା 'ଦୀନ ସେବକ ବଟକୃଷ୍ଣ' । ବଟ ମହାପୁରୁଷଙ୍କ ନାନା ଅଲୌକିକ କାହାଣୀ ଶୁଣି ଯାତ୍ରୀ ବଢ଼ିଲେ । ସେ ଦିଗରୁ ବେଶ୍ କିଛି ଅର୍ଥ ବଟକୃଷ୍ଣଙ୍କ ହାତପେଠ ହେଲା ଏବଂ ବଟ ମହାପୁରୁଷଙ୍କ ମାହାତ୍ମ୍ୟ ସହିତ ବଟକୃଷ୍ଣଙ୍କ ମହାତ୍ମ୍ୟ ମଧ୍ୟ ପ୍ରଚାରିତ ହେଲା ।

ବଟକୃଷ୍ଣ ଅଙ୍ଗୁଳି ପ୍ରବେଶ କରାଇଲେ ପଞ୍ଚାୟତରେ ସାମାନ୍ୟ ମେମ୍ବରଟିଏ ହୋଇ । କିଛିଦିନ ପରେ ଜନରବ ହେଲା ଯେ ସରପଞ୍ଚଙ୍କ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଆସିବ । ସରପଞ୍ଚ ହେଉଚନ୍ତି ହଳଦିଆର ବଟୁକ । ତାଙ୍କ ଦୋତାଲାର ମୁଣ୍ଡି ମରାହୋଇନାହିଁ । ସେ ପ୍ରମାଦ ଗଣିଲେ । ବଟୁକ ମାମଲାବାଜ ଲୋକ । ସେ ଦାଉ ସାଧନ୍ତି ଆଇନ ଅଦାଲତ ଜରିଆରେ । ତାଙ୍କ ହାତ ମୁଠାରେ ଅନେକ ସାକ୍ଷୀ ଅଛନ୍ତି, ଯେଉଁମାନେ ଅଦାଲତରେ 'ନିୟମ କରୁଚି ଯାହା କହିବି ସତ କହିବି, କିଛି ମିଛ କହିବି ନାହିଁ, କିଛି ଲୁଚାଇବି ନାହିଁ' ଶପଥ ନେଲା ପରେ ମଧ୍ୟ 'ଆମେ କାହିଁକି ମିଛ କହିବୁ, ଆମେ ମିଛ କହିଲାବାଲା ନହୁଁ,' ଯୋଡ଼ି ଦେଇ ଅନର୍ଗଳ ମିଛ କହିଯାଆନ୍ତି, ଆଉ ଜେରାରେ ଧରା ପଡ଼ିଲେ ମଧ୍ୟ ନିର୍ଲଜ୍ଜ ଭାବରେ ମିଛ କହିଯାଆନ୍ତି ଓ ସାକ୍ଷ୍ୟ ଦେଇ ସାରିବା ପରେ ଦୁଇଟଙ୍କା ପାରିଶ୍ରମିକ ନେଇ ହୋଟେଲରେ ମାଗଣା ଖାଇ ଘରକୁ ଫେରନ୍ତି । ବିଚାରକ ବିଚରା ଜବାନବନ୍ଦୀ ପଢୁ ପଢୁ ଭାବୁଥାଏ-

ଚନ୍ଦ୍ର ନ ଦିଶେ ମେଘାଛନେ,
ମିଥ୍ୟା ବଚନେ ସତ୍ୟ ଯେହ୍ନେ ।

ବଟୁକକୁ ତେଣୁ ସମସ୍ତେ ଭୟ କରନ୍ତି । ପଞ୍ଚାୟତ ସଭା ବସିବା ଆଗରୁ ସେ ବଟକୃଷ୍ଣଙ୍କ ନାମରେ ନାରୀଧର୍ଷଣ, ଚୋରୀ, ଠକେଇ ଆଦି ପିଙ୍ଗଳକୋର୍ଟର ବଡ଼ ବଡ଼ ଦଫାରେ ଚାରି ପାଞ୍ଚଟା ମାମଲା ଯୋଡ଼ିଦେଲେ । ବଟକୃଷ୍ଣ ବଟ ମହାପୁରୁଷଙ୍କ ପାଖରେ ଅଧିଆ ପଡ଼ିଲେ । ଆହୁରି ଜୋର

ସୋରରେ 'ବଟ ମହାପୁରୁଷ ମାହାତ୍ମ୍ୟ' ପ୍ରଚାର ଚଳାଇଲେ । ବଟ ମହାପୁରୁଷଙ୍କ ପାଣ୍ଠିରୁ ମକଦ୍ଦମା ଖରଚ ଚଳାଇଲେ, ସାକ୍ଷୀ ଭଙ୍ଗେଇଲେ । ପଞ୍ଚାୟତ ସଭାରେ ବଟୁକ ହାରିଗଲେ । ବଟକୃଷ୍ଣ ସରପଞ୍ଚ ହେଲେ । ବଟକୃଷ୍ଣ କିନ୍ତୁ କହିଲେ, ବଟ ମହାପୁରୁଷ ଜିଣିଲେ । ନରିପୁର ଆଉ ହଳଦିଆ ଗାଁ ଭିତରେ ବିବାଦ ତେଜି ଉଠିଲା । ଖାଲି ସେତିକି ନୁହେଁ, ସବୁ ଗାଁ ଭିତରେ ଫାଟ ଦୃଶିଲା ।

ବଟୁକ ଏଥର ଭଲକରି ଅଣ୍ଟା ଭିଡ଼ିଲେ । ସେ ମଧ ଅନାସ୍ଥା ପ୍ରସ୍ତାବ ଆଣିବାପାଇଁ ଯୋଗାଡ଼ ଚଳାଇଲେ । ମେମ୍ବରମାନଙ୍କୁ ଟଙ୍କା ପଇସା ଦେଇ ହାତକରି ରାତାରାତି ଗୋଟାଏ ଟ୍ରକରେ ଭୁବନେଶ୍ୱର ଯାଇ ମନ୍ତ୍ରୀଙ୍କ ପାଖରେ ଶପଥ କରାଇ ଲିଙ୍ଗରାଜଙ୍କ ପାଖରେ ମହାପ୍ରସାଦ ଛୁଆଁଇ ଶପଥ କରାଇ ରାତି ନ ପାହୁଣୁ ଓ୍ୱାପସ ।

ତଳେ ତଳେ ଗଲା ତଳ ଗଡ଼ିଶା,
କେହି ନ ଜାଣିଲେ ସାଇ ପଡ଼ିଶା !

କିନ୍ତୁ ଲିଙ୍ଗରାଜଙ୍କ ପ୍ରଭାବ ନରିପୁର ପର୍ଯ୍ୟନ୍ତ ପଡ଼େନାହିଁ ବୋଧହୁଏ । ଏଠି ବଟ ମହାପୁରୁଷ ସର୍ବେସର୍ବା । ଦାସ କାଠିଆ ଦଳ, ପାଲାବାଲା, ଜାନ୍ ମହମ୍ମଦ ସମସ୍ତେ ଗାଁ ଗାଁ ବୁଲି ମହାପୁରୁଷଙ୍କ ମାହାତ୍ମ୍ୟ ଓ ତା ସହିତ ବଟକୃଷ୍ଣଙ୍କ ମାହାତ୍ମ୍ୟ ପ୍ରଚାର ଚଳାଇଛନ୍ତି । ସେ ପ୍ରଚାର ପ୍ରାଚୀର ଭେଦ କରି ଲିଙ୍ଗରାଜ ପଶିପାରିଲେ ନାହିଁ କି ମନ୍ତ୍ରୀଙ୍କ ମନ୍ତ୍ରୀତ୍ୱ ମଧ କାଟୁ କଲାନାହିଁ । ବଟକୃଷ୍ଣ ବଟ ମହାପୁରୁଷଙ୍କ ମାହାତ୍ମ୍ୟ ପ୍ରଚାର କରି ବରଗଛ ସଙ୍କେତ ଧରି ପଞ୍ଚାୟତ ସମିତି ଚେୟାରମେନ୍ ପଦକୁ ଆଖୋଉ ଆଖୋଉ ପାଖେଇଲେଣି ।

ଏତେଦିନକେ ବଟୁକଙ୍କ ଚେତା ପଶିଲା । ସେ ବୁଝିଲେ ଯେ ପ୍ରଥମେ ବଟ ମହାପୁରୁଷଙ୍କ ମାହାତ୍ମ୍ୟ ଖର୍ବ କରିବାକୁ ହେବ ।

ଦିନେ ହଠାତ୍ ଦେଖାଗଲା ହଳଦିଆ ଗାଁ ମଶାଣିରେ ଏକ ବାବାଜି ଆସ୍ଥାନ ଜମାଇ ବସିଚନ୍ତି । ତାଙ୍କ ନାଁ ବଟିଆ ବାବା । ପ୍ରଚାର ହୋଇଗଲା ବଟିଆ ବାବା ଜଣେ ଭାରି କାଳିସାଧକ । ପ୍ରତି ଅମାବାସ୍ୟା ରାତିରେ ସେ ଶବ ସାଧନା କରନ୍ତି । ବୀର ପେଷି ଜାଣନ୍ତି ବି । ଆଉ ତାଙ୍କ ବଟୁଆରୁ ଟିକିଏ ଟିକିଏ ହୋମ ପାଉଁଶ ଦେଇ ସବୁ ରୋଗ ଭଲ କରି ଦେଇ ପାରନ୍ତି । ଅଳ୍ପଦିନ ଭିତରେ ପଚିଶି ଖଣ୍ଡ ଗାଁରେ ଏ ସମ୍ବାଦ ବିଜୁଳି ଭଳି ଖେଳିଗଲା । ଲୋକସୁଅ ଲାଗିଲା ବଟିଆ ବାବା ପାଖକୁ ।

କେତେକ ଦିନ ପରେ ଗାଁ ଗାଁରେ ଏକ ନୂଆ ଆତଙ୍କ ସୃଷ୍ଟି ହେଲା । ରାତି ଅଧରେ ଅନେକଙ୍କ ଘରେ ଟେକା ଭୂଷା ଘୁଅ ପଡ଼ିବାକୁ ଲାଗିଲା । କେଉଁଠୁ ପଡୁଚି କେହି ଧରି ପାରିଲେ ନାହିଁ । ଲୋକେ ବଟିଆ ବାବାଙ୍କୁ ଧରିଲେ ଏହାର କାରଣ ଜାଣିବାକୁ ଓ ପ୍ରତିକାର କରିବାକୁ । ବଟିଆ ବାବା ପୂଜା କଲେ । ପୂଜାରୁ ଉଠି ସେ କାରଣ ଜଣାଇଲେ । ଲୋକେ ଶୁଣି ତାଟଙ୍ଗା । କାରଣ କଣ ! କାରଣଟା ହେଉଚି ଏଇଆ, ଆଜି ପର୍ଯ୍ୟନ୍ତ ପଚିଶ ଖଣ୍ଡ ଗାଁର ଭୂତମାନେ ବଟ ମହାପୁରୁଷଙ୍କ ଦେହରେ ଏକାନ୍ନବର୍ତ୍ତୀ ପରିବାର ପରି ରହି ଭୋଗ ଦଖଲ କରି ଆସୁଥିଲେ । ଏଥିକୁ ନରିପୁରିଆ ଭୂତମାନେ ଗୁଣ୍ଡା ଓ ଦୁଷ୍ଟ ପ୍ରକୃତିର ଓ ଦଙ୍ଗାବାଜ ଓ ମାମଲାବାଜ ଥିବାରୁ ବେଆଇନଭାବେ ଦଳବଦ୍ଧ ହୋଇ ଏକାଏକା ବଟ ମହାପୁରୁଷଙ୍କୁ ଭୋଗ ଦଖଲ କରିବା କୁଇଚ୍ଛାରେ ଓ ଅହମ୍ମଦପୁରର ଖବିସମାନଙ୍କ କୁପରାମର୍ଶରେ ଅନ୍ୟାନ୍ୟ ଗ୍ରାମର ଭୂତମାନଙ୍କୁ ବଟ ମହାପୁରୁଷଙ୍କ ଦେହରୁ ବେଦଖଲ କରିବାସତ୍ତ୍ୱେ ଅନ୍ୟାନ୍ୟ ଗ୍ରାମର ଭୂତମାନେ ଅନାଥ ହୋଇ ସ୍ଥାନ ଅଭାବରୁ ଉପଦ୍ରବ କରୁଅଛନ୍ତି । ଉପାୟ ?

ପ୍ରତ୍ୟେକ ଗ୍ରାମରେ ବରଗଛ ରୋପି ଭୂତମାନଙ୍କୁ ରଖିବାକୁ ହେବ । ଠିକ୍ ଠିକ୍ । ସମସ୍ତଙ୍କ ମନକୁ କଥାଟା ପାଇଲା । ବଟୁକଙ୍କ ପ୍ରଧାନ ସାକ୍ଷୀ ଓ ସହକର୍ମୀ ଧୂଳିଆ ନିଭୃତରେ ବଟୁକଙ୍କୁ ପଚାରିଲା, ''ଆଜ୍ଞା ନରିପୁରିଆ ଭୂତମାନଙ୍କ ନାଁ'ରେ ଗୋଟାଏ 147, 447, 426, 323, 500, 504, 325, 354, 379 ଦଫା ମକଦ୍ଦମା ଯୋଡ଼ିଦେଲେ କେମିତି ହୁଅନ୍ତା ? ଆମ ଡାକ୍ତର ତ ଅଛନ୍ତି ଡାକ୍ତର ମାଇଁନା ସାର୍ଟିଫିକେଟ ଦେବାକୁ ? ଖାଲି ମାଡ଼ରଙ୍ଗଟା ଯା ଗୋଳମାଳ କରି ଦିଅନ୍ତି, ତା ନ ହେଲେ ତ ଭଲ ସାର୍ଟିଫିକେଟ ଦିଅନ୍ତି । ମୁଁ ତ ଅଛି ସାକ୍ଷ୍ୟ ଦବାକୁ, ସାକ୍ଷୀ ଯୋଗାଡ଼ କରିବାକୁ ।'' ବଟୁକ ରାଗିଯାଇ କହିଲେ, ''ଭାଗ୍ ଶଳା !''

କଥା ହେଲା, ବଟିଆ ବାବା ପ୍ରଥମେ ହଳଦିଆ ଗ୍ରାମରେ ବରଗଛ ରୋପିବେ, ହଳଦିଆ ଶ୍ମଶାନରେ । ଏ ବରଗଛ ନାଁ ହେବ 'ବଟ ମହାରାଜ' । ଯୋଗାଡ଼ଯନ୍ତ୍ର ଚାଲିଲା । ବଟୁକ ଗଲେ ଗୟା କଳ୍ପବଟରୁ ଗୋଟିଏ ଡାଳ ଆଣିବାକୁ । ବଟକୃଷ୍ଣ ବୁଝିପାରିଲେ ବଟୁକଙ୍କ କାଇଦାଟା । ସେ ଲାଗିପଡ଼ିଲେ ତାକୁ ବ୍ୟର୍ଥ କରିବାକୁ । ତା କରିବାକୁ ବେଶୀ ଡେରି ଲାଗିଲା ନାହିଁ । ନରିପୁରର ବଟୀ ବେଓ୍ବା । ସେମିତି ସୁନ୍ଦରୀ ନ ହେଲେ କଅଣ ହେଲା ମହା ମହା ଲୋକଙ୍କୁ ଗଢ଼େଇ ପକେଇଚି ସେ, କେତେ ଲୋକଙ୍କୁ ଜିଅଲ ଯିବା ମୁହଁରୁ ଖଲାସ କରି ଆଣିଚି । ନେହୁରା ହୋଇ କହିଲେ ବିପଦ ଆପଦକୁ ମାଡ଼ିଯିବା ମାଇକିନିଆ ସେ । ଦି ଚାରି ରାତି ବଟିଆ ବାବାଙ୍କ ପାଖକୁ ଯିବା ଆସିବା କରିବା ପରେ ବଟିଆ ବାବା ହଳଦିଆ ଛାଡ଼ି ଚାଲିଯାଇ ନରିପୁରରେ ଆଶ୍ରମ ଜମେଇଲେ ।

ବଟୁକ ଗୟାରୁ ଫେରି ଦେଖନ୍ତି ତ ଇୟେ କାଣ୍ଡ । ଉକ୍ତଚାଉଳ ଚୋବେଇ ରହିଲେ । ଗୟାରୁ ସେ ବରଗଛ ଚାରା ଆଣିପାରି ନଥିଲେ । ଲୋକେ ପଚାରିବାରୁ କହିଲେ, ''ବାଟରେ ମୋତେ ସ୍ୱପ୍ନ ହେଲା ଯେ ବଟ ମହାପୁରୁଷଙ୍କ ଡାଳରେ ଗଛ ନହେଲେ ଭୂତମାନେ ଅନ୍ୟ କୌଣସି ବରଗଛରେ ରହିବେ ନାହିଁ । ଆଉ ପ୍ରତ୍ୟେକ ଗାଁର ତ ଅଧିକାର ଅଛି ବଟ ମହାପୁରୁଷଙ୍କ ଦେହର ଡାଳ ନେବାକୁ, ତା'ଛଡ଼ା ସେ ଗଛ ମୋର, ଆଜିକୁ ପାଞ୍ଚବର୍ଷ ହେବ ମୁଁ ସପନିଙ୍କଠାରୁ ଟ୫୦୦ଙ୍କା ଜରସମନରେ ସେ ଜମି କବଲା କରିନେଇ ଖଜଣା ପ୍ରତିବର୍ଷ ଦେଇ ଆସି ପାଉତି ହାସଲ କରି ଆସୁଅଛି । ମୁଁ କିନ୍ତୁ ସେ ଜମି ଓ ଗଛ ପଚିଶଖଣ୍ଡ ଗାଁକୁ ଦାନ କରୁଚି । ତୁମ୍ଭେମାନେ ସମସ୍ତେ ଯାଇ ଖଣ୍ଡେ ଖଣ୍ଡେ ଡାଳ ନେଇ ନିଜ ନିଜ ଗାଁରେ ପୋତି ଭୂତମାନଙ୍କଠାରୁ ଉଦ୍ଧାର ପାଅ ।'' ଗାଁବାଲାମାନେ ବଟୁକ ପ୍ରଧାନଙ୍କ ମହାନ୍ ଦାନରେ ଚମତ୍କୃତ ହେଲେ । ତାଙ୍କ ପ୍ରସ୍ତାବଟା ସେମାନଙ୍କ ମନକୁ ପାଇଲା । କଥାଟା କିନ୍ତୁ ଗୁପ୍ତ ରହିଲା ।

ଦିନେ ରାତି ଅଧରେ ବଟ ମହାପୁରୁଷଙ୍କ ଆସ୍ଥାନରେ ଦୁମ୍‌ଦ୍ରୁମ୍ ପାହାର ଶୁଣି ବଟକୃଷ୍ଣ ଦୌଡ଼ି ଯାଇ ଦେଖିଲେ ଯେ ହଳଦିଆର ଓ ଅନ୍ୟାନ୍ୟ ଗ୍ରାମର ଲୋକେ ବଟ ମହାପୁରୁଷଙ୍କ ଡାଳ କାଟୁଛନ୍ତି । ସାଙ୍ଗେ ସାଙ୍ଗେ ଖବରଟା ନରିପୁର ଗାଁ ଯାକ ଖେଳିଗଲା । ମୁହୂର୍ତ୍ତକେ ନରିପୁରିଆମାନେ ଲାଠି, ଟେଣ୍ଟା, କଟୁରି, କୁରାଢ଼ୀ ଆଦି ଧରି ଜମା ହୋଇଗଲେ । ସେ ପଟରୁ ମଧ ସେମିତି ଲୋକେ ଜମା ହୋଇଗଲେ । ମଡ଼ ମଡ଼ କରି ବଟ ମହାପୁରୁଷଙ୍କ ଗୋଟାଏ ବାହୁ ଛିଡ଼ି ପଡ଼ିଲା କୁରାଢ଼ି ଚୋଟରେ । ବଟେଶ୍ୱର ମହାଦେବଙ୍କ ମନ୍ଦିର ଭିତରେ ସେ ଶବ୍ଦ ପ୍ରତିଧ୍ୱନିତ ହୋଇ ଉଠିଲା । ସତେ କି ମହାକାଳ ଗର୍ଜି ଉଠିଲେ ।

ତା'ପରେ ଲାଗିଲା ଦୁଇଦଳଙ୍କ ଭିତରେ ପିଟାପିଟି । ବଟ ମହାପୁରୁଷ ବାରମ୍ବାର ଥରିବାକୁ

ଲାଗିଲେ । କାଳ ଭୈରବୀ ଡାକଦେଲା ପରି ବଟେଶ୍ୱରଙ୍କ ମନ୍ଦିର ଭିତରୁ ଖାଲି ହୋ ହୋ ଶବ୍ଦ ବାହାରୁଥାଏ । ଏଇ ସମୟରେ ଅହମ୍ମଦପୁରର ପଠାଣ ଆଠ ଜଣ ଖଣ୍ଡା ବୁଲାଇ ବୁଲାଇ ଦୌଡ଼ି ଆସିଲେ । ବଟୁକ ସେମାନଙ୍କୁ ପଇସା ଦେଇ ଜାଗତିଆର କରି ରଖିଥିଲେ । ଅହମ୍ମଦପୁରିଆଙ୍କ ରାଗ ଥିଲା ନରିପୁରିଆମାନଙ୍କ ଉପରେ, କାରଣ ବଟକୃଷ୍ଣଙ୍କ ଶିକ୍ଷାରେ ସେମାନେ ପଠାଣମାନଙ୍କୁ ବଟ ମହାପୁରୁଷଙ୍କ ପାଖରୁ ଭିନ୍ନ କରିଦେଇଥିଲେ । ପଠାଣମାନେ ଖଣ୍ଡା ଧରି ଦୌଡ଼ି ଆସୁଥିବାର ଦେଖି ଯେ ଯୁଆଡ଼େ ଛିନ୍‌କାନିଆ ହୋଇ ପଳେଇଲେ ।

ଗଲାବେଳେ ଧୂଳିଆ ବଟୁକ ଶିକ୍ଷାମତେ ବଟ ମହାପୁରୁଷଙ୍କ ପାଦତଳେ ଅତି କଟୁବିଷ ପୋତି ଦେଇଗଲା ।

ପରଦିନ ଦେଖାଗଲା ଆଠଜଣଙ୍କ ମୃତଦେହ ବଟ ମହାପୁରୁଷଙ୍କ ତଳେ ପଡ଼ିଚି । ଆଉ ପନ୍ଦରଜଣ ସାଂଘାତିକ ଭାବରେ ଜଖମ ହୋଇ ପଡ଼ିଛନ୍ତି । ଯେଉଁମାନେ ଅପେକ୍ଷାକୃତ ଅଳ୍ପଜଖମ ହୋଇଥିଲେ, ସେମାନେ କୌଣସିମତେ ପଳାଇ ପାରିଛନ୍ତି ।

ପୁଲିସ ଆସିଲା । ବଟ ମହାପୁରୁଷଙ୍କ ଆସ୍ଥାନ ଉପରେ ୧୪୪ ଧାରା ଜାରିହେଲା । ସବୁ ଗାଁରୁ ପ୍ରାୟ ଶହେ ସରିକି ଲୋକ ହାତକଡ଼ା ପିନ୍ଧି ଧରା ହୋଇଗଲେ । ବଟୁକ ଓ ବଟକୃଷ୍ଣ ମଧ୍ୟ ଧରା ହେଲେ । ଧୂଳିଆ ଭୂତମାନଙ୍କ ବିପକ୍ଷରେ ଯେଉଁ ଦଫାମାନ ଯୋଡ଼ି ମକଦ୍ଦମା କରିବାକୁ ବଟୁକଙ୍କୁ ପରାମର୍ଶ ଦେଇଥିଲା, ସେ ଦଫାମାନଙ୍କରୁ ଅନେକ ଓ ତା ସହିତ ହତ୍ୟାପାଇଁ ୩୦୨ଦଫା ଯୋଡ଼ା ହୋଇ ମକଦ୍ଦମା ଚାଲିଲା । ମଢ଼ ପଡ଼ିଥିବାର ଦେଖି ଶାଗୁଣା ବିଲୁଆ କୁକୁରମାନେ ଯେମିତି ଗଦା ହୋଇ ପଡ଼ନ୍ତି, ସେମିତି ଟାଉଟର ଆଦିମାନେ ଗଦା ହୋଇପଡ଼ି ଟଙ୍କା ଶୋଷିବାକୁ ଲାଗିଲେ । ବଟୁକ ଓ ବଟକୃଷ୍ଣଙ୍କ ଧନ ନିଆଁ ପୁଆଁରେ ଯିବାକୁ ଲାଗିଲା ।

ଏ ଘଟଣାର ଅଳ୍ପଦିନ ପରେ ବଟ ମହାପୁରୁଷ ଝାଉଁଳି ପଡ଼ିଲେ । ବିରାଟ ମହୀରୁହ ସତେ ଯେପରି ଧ୍ୟାନମଗ୍ନ । ଅତୀତର କଥା ମନେ ପକାଇ ସେ ବୋଧହୁଏ ଧ୍ୟାନମଗ୍ନ ଭବିଷ୍ୟତ ଚିନ୍ତାରେ । ମହାକାଳ ମଧ୍ୟ ଲୋକମାନଙ୍କର କଲ୍ୟାଣପାଇଁ ବିଷପାନ କରିଥିଲେ । ବଟ ମହାପୁରୁଷ ମହାକାଳ ବଟେଶ୍ୱରଙ୍କୁ ମନେ ମନେ ପ୍ରଣାମ କରି ମହାପ୍ରୟାଣ କଲେ । ନାରାୟଣ ପ୍ରାପ୍ତି ତ ନୁହେଁ, ହତ୍ୟା ! କିନ୍ତୁ ଗଛର କି ପ୍ରାଣ ଅଛି ଯେ ତାଙ୍କୁ ମାରିଲେ ମଣିଷ ତିଆରି ପିଙ୍ଗଳ କୋର୍ଟର ୩୦୨ ଦଫା ଲାଗିବ । ଆହା ବୋଲିବାକୁ ମଧ୍ୟ କେହି ନାହିଁ ।

ସରକାର ସେ ଗଛକୁ ନିଲାମ କରାଇଦେଲେ । ନରିପୁର, ହଳଦିଆ ଆଦି ଗ୍ରାମର ଲୋକମାନଙ୍କ କ୍ଷମତା ନାହିଁ ସେ ବିରାଟ ଗଛକୁ ନିଲାମ ଧରିବାକୁ । ସବୁ ପଇସା ତ ନିଆଁପୁଆଁରେ ଯାଇଚି । ଅହମ୍ମଦପୁରର ପଠାଣମାନେ କିନ୍ତୁ ନିଲାମ ଧରିଲେ । ବାକିତକ ଗାଁବାଲାମାନେ ଘୁଷଘାଷ୍ ଦେଇ ଚୋରେଇ ବୋହି ନେଇ ଚାଲିଲେ । ଦୁଇଦିନ ଭିତରେ ସବୁ ସଫା ! ବଟ ମହାପୁରୁଷଙ୍କ ଆସ୍ଥାନ ଶୁନଶାନ୍ । ଗୋଟାଏ ସଭ୍ୟତା ଗଲା, ଆଉ ଗୋଟିଏ ସଭ୍ୟତା ଆସିଗଲା । କିଛି ଡରିବାର ନାହିଁ । ମହାକାଳ ସଦା ଜାଗ୍ରତ ।

ଆଜି ପର୍ଯ୍ୟନ୍ତ ବି ରାତିରେ ବଟବିହାରୀଙ୍କୁ ଲୋକେ ସେଠି ବୁଲୁଥିବାର ଦେଖିଚନ୍ତି । ତା'ଙ୍କ କଠଉ ଠକ୍ ଠକ୍ ଓ ଦୀର୍ଘନିଶ୍ୱାସ ପକାଇବାର ଶବ୍ଦ ଅନେକ ଶୁଣିଚନ୍ତି ।

# ଲଡ୍‌ଡୁ

ଚୌଧୁରୀବଜାର ଡେଇଁବା ମାତ୍ରକେ ପରେଶବାବୁ ଆଉ ବାଁ ଆଡ଼କୁ ମୁହଁ କରନ୍ତି ନାହିଁ । ବଜାରଥଳିଟି ଜୋରରେ ହଲେଇ ବେଗେ ବେଗେ ପାହୁଣ୍ଡ ପକାଇ ଡାହାଣ ଆଡ଼କୁ ଅନେଇ ଅନେଇ ଚାଲିଯାଆନ୍ତି । ଦେଖିଲେ ମନେହୁଏ ବାଁ କାନ୍ଧରେ ବୋଧହୁଏ ରଜା ପଶିଚି । ମ୍ୟୁନିସିପାଲିଟି ବଜାର ନିକଟ ହେଲେ ଯାଇ ସେ ମୁହଁ ଫେରାନ୍ତି । ଆଜି କିନ୍ତୁ ଗୋଟାଏ ଗାଈ ଶିଙ୍ଘ ବାଗେଇ ହଠାତ୍ ମାଡ଼ିଆସିବାରୁ ସେ ଚମକିପଡ଼ି ଚାହିଁଛନ୍ତି କି ନାହିଁ, ଗୋଟାଏ ପ୍ରକାଣ୍ଡ ଷଣ୍ଢ ସଁ-ସଁ କରି ମାଡ଼ିଆସିଲା । ପରେଶବାବୁ ପ୍ରାଣଭୟରେ ସେହି ଦୋକାନ ଉପରକୁ ଉଠିଗଲେ, ଉଠିଯିବାକୁ ବାଧହେଲେ । ବଜାରିଆମାନେ ଖେଁ-ଖେଁ କରି ହସି କହିଲେ, ‘‘ଏକମୁହାଁ ବାବୁ ଧପାଲିଚନ୍ତି, ଇୟାଡ଼େ ଗାଈ ତାଡିରହିଚି ଖିଆଲ ନାହିଁ.....’’ ଇତ୍ୟାଦି ।

ପରେଶବାବୁଙ୍କ କାନକୁ କିନ୍ତୁ ସବୁ କଥା ଗଲାନାହିଁ । ତାଙ୍କ ଛାତି ଭିତରୁ ଅତଡ଼ା ଖସିପଡ଼ିଲା, କାନ ଲାଲ ପଡ଼ିଗଲା । କପାଳରେ ବିନ୍ଦୁ ବିନ୍ଦୁ ଝାଳ ଫୁଟି ଉଠିଲା । ଭୟରେ ନୁହେଁ, ଲୋଭରେ । ଅସହ୍ୟ ଲୋଭ । ଏହି ଲୋଭର ଦାଉ ଏଡ଼ିବା ପାଇଁ ସେ ନିଇତି ବଜାର କରି ଯିବା ସମୟରେ ଏ ଦୋକାନକୁ ନ ଚାହିଁ ଶୀଘ୍ର ଶୀଘ୍ର ଚାଲିଯାଆନ୍ତି । ମ୍ୟୁନିସିପାଲିଟି ଯିବା ପାଇଁ ଅନ୍ୟ ଅନେକ ବାଟ ଅଛି; କିନ୍ତୁ ପରେଶବାବୁ ଏହି ବାଟ ଦେଇ ନ ଯାଇ ମଧ ରହିପାରନ୍ତି ନାହିଁ । ତାଙ୍କ ପାଦ ଛାଏଁ ଛାଏଁ ଚାଲିଆସେ, ତାଙ୍କୁ ଆକର୍ଷଣ କରି ଆଣେ ସେହି ଲଡ୍‌ଡୁ । ଆଜି ଏ ଲୋଭ ଦୁର୍ଦ୍ଦମନୀୟ ହୋଇଉଠିଚି । ଲୋଭ ସହିତ ପ୍ରଥମ ଇନ୍ଦ୍ରିୟଟା ମଧ କିପରି ଜାଗ୍ରତ ହୋଇଚି ।

ଭାଇସ୍‌ରାୟ ଲର୍ଡ କ୍ୟାନିଙ୍ଗଙ୍କ ପତ୍ନୀ ଲେଡ଼ି କ୍ୟାନିଙ୍ଗ୍ ଲୋଭରେ ପଡ଼ିଥିଲେ । କୋଉ ଯୁଗର କଥା ସେ, ଲର୍ଡ କ୍ୟାନିଙ୍ଗ୍ ଓ ତାଙ୍କ ପତ୍ନୀ ଖତ ହୋଇ, ବ୍ଲାକ୍‌ବେରି ବା ଷ୍ଟ୍ର’ବେରି ଫଳେଇ, ସେହି ଫଳ ରୂପେ ପୁଣି ଆଉ କାହା ମଧରେ ପ୍ରବେଶ କରି, ସେ ଲୋକ ପୁଣି ମରି ଏହିପରି କେତେ ଜନ୍ମ ତାଙ୍କର ହୋଇଗଲାଣି । ବ୍ରିଟିଶ ରାଜତ୍ୱ ଯାଇ ଭାରତ ସ୍ୱାଧୀନ ହେଲାଣି; କିନ୍ତୁ ଲେଡି କ୍ୟାନିଙ୍ଗ୍ ଅମର ରହିଗଲେ ତାଙ୍କର ଲୋଭ ପାଇଁ । ତାଙ୍କର ଅର୍ଥର ଅଭାବ ନ ଥିଲା; ତେଣୁ ଗୋଟିଏ ପ୍ରକାର ମିଷ୍ଟାନ୍ନ ଲୋଭରେ ପଡ଼ି ସେ ସେହି ମିଷ୍ଟାନ୍ନ ପ୍ରଚୁର ପରିମାଣରେ କିଣି ଖାଇବାକୁ ଲାଗିଲେ । ତାଙ୍କର ନାମାନୁସାରେ ସେ ମିଠେଇର ନାଁ ହେଲା ଲେଡ଼ି କ୍ୟାନିଙ୍ଗ୍ ବା ଲେଡ଼ିକେନି ।

ପରେଶବାବୁଙ୍କ ଲୋଭ ପାଇଁ ସେ ଅମର ହୋଇପାରିବେ ନାହିଁ । ଭାଇସ୍‌ରାୟ ବା ପ୍ରେସିଡେଣ୍ଟ ତ ଛାଡ଼ନ୍ତୁ, ସାମାନ୍ୟ ହେଡ୍ କିରାଣି ବି ସେ ନୁହନ୍ତି । ପଚାଶ ଟଙ୍କା ଦରମାରେ ଅଦାଲତ କିରାଣି ସେ । ତାଙ୍କର ବଜେଟ୍ ଭିତରେ ଯେଉଁ ସାମାନ୍ୟ କେତୋଟି ଡିପାର୍ଟମେଣ୍ଟ ଅଛି, ସେମାନଙ୍କ

ଭିତରେ ରସନେନ୍ଦ୍ରିୟର କୌଣସି କାର୍ଯ୍ୟ ନାହିଁ । ଜିଭ ଅଛି ତାଙ୍କର କେବଳ ନେହୁରା ହେବାପାଇଁ - ସେ ସ୍ତ୍ରୀ ପାଖରେ ହେଉ ବା ହାକିମଙ୍କ ପାଖରେ ହେଉ, ମହାଜନଙ୍କ ପାଖରେ ହେଉ ବା ଭଗବାନଙ୍କ ପାଖରେ ହେଉ, ଅବଶ୍ୟ ସେ ନେହୁରାର ଫଳ ସବୁଠି ସମାନ ।

ଧର୍ମପତ୍ନୀଙ୍କ ହୁକୁମ, ପ୍ରତ୍ୟହ ବଜାର ଆଠ ଅଣାରୁ ବେଶି ହେବ ନାହିଁ ଏବଂ କଅଣ କଅଣ କିଣାହେବ, ସେ ବରାଦ କରିବାର ଅଧିକାର ମଧ୍ୟ ଧର୍ମପତ୍ନୀଙ୍କର ଏକଚାଟିଆ । ଯେଉଁ ତାଲିକା ସେ ଦିଅନ୍ତି, ସେ ସବୁ କିଣି ଗୋଟିଏ ପଇସା ମଧ୍ୟ ପାନ ପାଇଁ ବାହାର କରିବା ଦୁଃସାଧ୍ୟ । ଥରେ ସେ ଦୋକାନୀକୁ ସଜନା ଶାଗ ଦାମ୍‌ରୁ ଗୋଟିଏ ପଇସା କାଟିବା ପାଇଁ ନେହୁରା କରିଥିଲେ; କିନ୍ତୁ ଯେଉଁ ଅପମାନ ଦୋକାନୀ ସେଦିନ ତାଙ୍କୁ ଦେଇଥିଲା, ତା ପରଠୁଁ ସେ ଆଉ କେବେହେଁ ଦାମ୍ କାଟିବାକୁ ଚେଷ୍ଟା କରିନାହାନ୍ତି । ଆଉ ଥରେ ସେ ତାଲିକାରେ ଥିବା କୋଶଳା ଶାଗ ସେରେ ଜାଗାରେ ତିନି ପା' ଶାଗ ଆଣି ଦୁଇଟି ପଇସାର ଗୋଟିଏ ସିଗାରେଟ କିଣି ମନ ଆନନ୍ଦରେ ଧୂଆଁ ଛାଡ଼ି ଛାଡ଼ି ଘରକୁ ଫେରିଥିଲେ; କିନ୍ତୁ ସେ ଦିନ ଘରେ ଯାହା ଘଟିଥିଲା ତା' ପରେ ସେ ଚେଷ୍ଟା ମଧ୍ୟ ସେ ଛାଡ଼ିଛନ୍ତି । ଧର୍ମପତ୍ନୀ ସେ ଦିନ ଶାଗର ପରିମାଣ ଦେଖି ସନ୍ଦେହ କରି ପଡ଼ିଶାଘରୁ ସେରତରାଜୁ ଆଣି ଓଜନ କରିସାରିବାପରେ ଯେଉଁ ସବୁ ବାକ୍ୟବାଣ ମାରିଥିଲେ ସେଥିରେ ପରେଶବାବୁ ଅତି କ୍ଷୋଭ ଓ ଦୁଃଖରେ ମନେ ମନେ ହସି କହିଥିଲେ, ହ୍ୟାପ୍ କବିମାନେ ଖାଲି ନୟନବାଣ କଥା ଲେଖି ଯାଇଛନ୍ତି ।

ପରେଶବାବୁ ଦୋକାନ ଉପରକୁ ଉଠିଯାଇ ସେଇ ଲଡ଼୍‌ଡୁ ଆଡ଼େ ଚାହିଁଲେ । ମଟରରୁ ଓହ୍ଲାଇ ଜଣେ ଭଦ୍ରଲୋକ ସେ ଲଡ଼୍‌ଡୁରୁ ସେରେ କିଣି ନେଇ ମଟରରେ ବସିଥିବା ଜଣେ ଭଦ୍ରମହିଳାଙ୍କ ହାତକୁ ବଢ଼ାଇଦେଲେ । ଭଦ୍ରମହିଳାଙ୍କ ଆଖି ଓ ପାତଳା ଓଠରେ ଆନନ୍ଦ ଖେଳିଗଲା । ପରେଶବାବୁ ତରତର ହୋଇ ଦୋକାନରୁ ଚାଲିଯିବାକୁ ବାହାରିଲେ; କିନ୍ତୁ ପାଦ ତାଙ୍କର ଆଗେଇଲା ନାହିଁ । ଆଖି ତାଙ୍କର ସେହି ମିଠେଇରେ ଲାଖି ରହିଲା । ମିଠାଇର ବାସନା ନାକପୁଡ଼ିଆ ତାଙ୍କର ବାରମ୍ବାର ଫୁଲିଉଠିଲା ।

ବସନ୍ତୁ, କଅଣ ଦେବି ?-ଦୋକାନୀ ପଚାରିଲା ।

ନା, ସେ ଷଣ୍ଢଟା ମାରିଗୋଡ଼ାଇଲା ଯେ...

ସେଟା ଗଲାଣି....

ଏହା ପରେ ଦୋକାନରେ ଆଉ ରହିବାର କାରଣ ନାହିଁ; କିନ୍ତୁ ଦୋକାନରୁ ଚାଲି ମଧ୍ୟ ଯାଇପାରୁନାହାନ୍ତି । ଏମିତି କିଛି ନୂତନ ପ୍ରକାର ମିଠାଇ ନୁହଁ, ସେଇ ହଳଦିଆ ବୁନ୍ଦିଆରେ ଗୋଲ ଲଡ଼୍‌ଡୁ । କେବଳ ମଝିରେ ମଝିରେ ଗୋଟିଏ ଲାଲ ଓ ଗୋଟିଏ ଗୋଟିଏ ସବୁଜ ରଙ୍ଗର ବୁନ୍ଦିଆ ଦାନା ଓ ଲଡ଼୍‌ଡୁ ଉପରେ ଗୋଟିଏ ସୁନ୍ଦର ବଡ଼ କିସ୍‌ମିସ୍ ଓ କିଛି ପେସ୍ତା । ଏହି ରଙ୍ଗର ସମାବେଶ ଏପରି ସୁନ୍ଦର ଭାବରେ କରାହୋଇଚି ଯେ ସେ ସମସ୍ତ ଲଡ଼୍‌ଡୁଟିର ଆକର୍ଷଣୀ ଶକ୍ତି ଦୁର୍ବାର ହୋଇପଡ଼ିଛି । ସେଥିରେ ପୁଣି ଏହି ମିଠାଇଟିର ଥାଳିଟି ଯେପରି ସାଧାରଣତଃ ଗୁଡ଼ିଆ ଦୋକାନ ଆଲମାରିରେ ମିଠାଇ ଥାଳି ସବୁ ସଜା ହୋଇ ରହିଥାଏ ସେପରି ଭାବରେ ସଜାହୋଇନାହିଁ; ଗୋଟିଏ ବେଦିଂସୁଟ୍ ପରିହିତା, ସୁପୁଷ୍ଟନିତମ୍ବିନୀ ନାରୀ, ଥାଳିଟି ତାର ବେନି ଘନ ବକ୍ଷ ନିକଟରେ ଧରି ଥାଳିଟି

ଅର୍ପଣ କରିବା ଭଙ୍ଗୀରେ କାଚ ଆଲମାରୀ ମଧ୍ୟରେ ଛିଡ଼ା ହୋଇ ରହିଛି ।

ପରେଶବାବୁ ଘନ ଘନ ଦୁଇ ତିନି ଥର ସିଆଡ଼େ ଚାହିଁ ଦୋକାନରୁ ଓହ୍ଲାଇ ଯିବାକୁ ବସିଲେ । ତା'ପରେ ମନେହେଲା କାଚ ଆଲମାରି ମଧ୍ୟରୁ ସେଇ ନାରୀମୂର୍ତ୍ତି ଖିଲିଖିଲି ହସି କହୁଚି, ଆସନ୍ତୁ ନା । ପରେଶବାବୁଙ୍କ କାନ ଲାଲ ପଡ଼ିଗଲା । ଆଉ ଜଣେ ଭଦ୍ରଲୋକ ସେଇ ମିଠାଇ କିଣି ନେଇଗଲେ । ପରେଶବାବୁଙ୍କର ମନେ ହେଲା ମିଠାଇ ଯେପରି କହୁଚି ନାହଂ ଧନହୀନେନ ଲଭ୍ୟ । ସେ ଦୋକାନରୁ ବାହାରି ଆସି ପାହାଚ ଉପରେ ଛିଡ଼ା ହେଲେ । ଅଦୂରରେ ରାସ୍ତା ଉପରେ ଗାଈଟି ଅପେକ୍ଷାରେ ନୀରବରେ ଛିଡ଼ା ହୋଇ ରହିଚି ଏବଂ ଷଣ୍ଢଟି ବାରମ୍ବାର ତାର ଗ୍ରୀବା ଲେହନ କରୁଚି ଏବଂ ମଝିରେ ମଝିରେ ହଠାତ୍ ବ୍ୟସ୍ତ ହୋଇ ପଡୁଚି । ପରେଶବାବୁ ଜଣେଇ ସେଆଡ଼େ ଥରେ ଚାହିଁ ପୁଣି ଦୋକାନ ଭିତରେ ଥିବା ସେଇ ମିଠାଇଥାଳିଟିକୁ ଚାହିଁଲେ । ଆଉ ଲୋଭ ସମ୍ଭାଳି ନ ପାରି ସେ ଦୋକାନ ଉପରକୁ ଉଠିଯାଇ ପଚାରିଲେ, ଇୟା ଦାମ୍ କେତେ ?

-କାହାର, 'ଦିଲମୋହିନୀ' ? ଛ' ଟଙ୍କା ।

ପରେଶବାବୁ ଅପ୍ରସ୍ତୁତ ଭାବରେ କହିଲେ-ନାଁ, ମୁଁ ଗୋଟି ପଚାରୁଥିଲି ।

-ଗୋଟିକୁ ଛ' ଅଣା ।

ଦାମ୍ ଶୁଣି ପରେଶବାବୁ ମୁହଁ ମେଲା କରି ଚାହିଁ ରହି ଭାବିବାକୁ ଲାଗିଲେ ।

ଛ' ଅଣା ! ଦୁଇଅଣା ହୋଇଥିଲେ ବା ସେ ଦୋକାନୀକୁ ନେହୁରା-ନେହୁରି କରି କିଛି ଦାମ୍ କଟାକଟି କରାଇ ପାରନ୍ତେ । ଛ' ଅଣା ! ସେତକ ସେ କେଉଁଠୁ ଯୋଗାଡ଼ କରିବେ ! ଅସମ୍ଭବ । ଛାଡ଼ଃ ।

ଆଉ ଜଣେ ଦୁଇ ସେର 'ଦିଲ୍ମୋହିନୀ' ନେଇଗଲେ । ପରେଶବାବୁ ଆଲମାରି ଭିତରକୁ ଚାହିଁଲେ । ନିତମ୍ବିନୀର ଥାଳିରେ ଆଉ ଅଳ୍ପ କେତୋଟି ମିଠେଇ ପଡ଼ିରହିଚି । ନିତମ୍ବିନୀ ବିମ୍ବୋଷ୍ଠରେ ଓ ଏଣୀନୟନରେ ଆହ୍ୱାନର ହାସ୍ୟ । ପରେଶବାବୁ ମୁହଁ ଫେରାଇ ନେଇ ଅନ୍ୟ ଆଡ଼େ ଚାହିଁଲେ । ଷଣ୍ଢ ସଫଳତା ଲାଭ କରିଚି ।

ପରେଶବାବୁ ମନ ଭିତରେ ବୈରାଗ୍ୟ ଆଣିବାକୁ ଚେଷ୍ଟାକଲେ ।

.....ସର୍ବଦା ସଂଯୁକ୍ତ ଓ ତୁଲ୍ୟନାମବିଶିଷ୍ଟ ଦୁଇଟି ପକ୍ଷୀ ଗୋଟିଏ ବୃକ୍ଷର ଆଶ୍ରୟ ନେଇଅଛନ୍ତି । ସେମାନଙ୍କ ମଧ୍ୟରୁ ଗୋଟିଏ ବିଚିତ୍ର ଆସ୍ୱାଦଯୁକ୍ତ ଫଳ ଭକ୍ଷଣ କରେ ଏବଂ ଅପରଟି ଭକ୍ଷଣ ନ କରି କେବଳ ଦର୍ଶନ କରେ । ଏହି ଦେହବୃକ୍ଷରେ ଜୀବ ନିମଗ୍ନ ରହି ମୋହ ହେତୁ ଶୋକ କରିଥାଏ । ସେ ଯେତେବେଳେ ବିଶ୍ୱବ୍ୟାପୀ ପରମାତ୍ମାଙ୍କୁ ହୃଦୟଙ୍ଗମ କରେ, ସେତେବେଳେ ସଂସାର ଅତିକ୍ରମ କରେ ।

.....ପୃଥିବୀରେ ଯେତେ ଜୀବ ସୃଷ୍ଟି ହୋଇଛନ୍ତି, ସମସ୍ତଙ୍କ ଦେହରେ ପଞ୍ଚେନ୍ଦ୍ରିୟ ଅଛି; କିନ୍ତୁ ଅନ୍ୟାନ୍ୟ ଜୀବମାନଙ୍କଠାରେ ପଞ୍ଚେନ୍ଦ୍ରିୟର ଆକର୍ଷଣୀ ଶକ୍ତି ରୋଧ କରିବାପାଇଁ ଚିନ୍ତା ଶକ୍ତି, ବୁଦ୍ଧି ବା ଇଚ୍ଛା ନାହିଁ । ମନୁଷ୍ୟ କିନ୍ତୁ ପଞ୍ଚେନ୍ଦ୍ରିୟର ଶକ୍ତି ବିରୁଦ୍ଧରେ ଯୁଦ୍ଧ କରିବାର ଇଚ୍ଛା ପାଇଚି ଏବଂ ସେହି ଇଚ୍ଛା ଚରିତାର୍ଥ କରିବା ପାଇଁ ଧର୍ମ, ଦର୍ଶନ ଓ ଆଦର୍ଶ ସୃଷ୍ଟି କରିଚି । ଏ ସବୁର ଜୀବନଧାରଣ ସହିତ କୌଣସି ସମ୍ପର୍କ ନାହିଁ; ତେଣୁ ଏସବୁ ମିଥ୍ୟା କୁହାଯାଇପାରେ; କିନ୍ତୁ ଏ ମିଥ୍ୟାରେହିଁ ମନୁଷ୍ୟତ୍ୱ

ନିହିତ । ଏହି ମିଥ୍ୟାନିହିତ ବସ୍ତୁ ପାଇବାର ଇଚ୍ଛାଦ୍ୱାରା କ୍ରମବିକାଶ-ନିୟମାନୁସାରେ ମନୁଷ୍ୟ ଦିନେ ଦେବତା ନ ହେବ, କିଏ କହିପାରେ ! ଏହି ଆଦର୍ଶ ଅନୁସାରେ ଆମର ଅର୍ଥନୀତି, ଅର୍ଥନୀତି କାହିଁକି ଶିକ୍ଷା, ଶାସନ ସବୁ ଚାଳିତ ହେବା ଉଚିତ; କିନ୍ତୁ ବର୍ତ୍ତମାନ ତାର ଠିକ୍ ଓଲଟା ହେଉଚି । ମନୁଷ୍ୟ କିପରି ବେଶି ରୋଜଗାର କରିବ ସେହି ଲକ୍ଷ୍ୟାନୁସାରେ ଶିକ୍ଷା, ଶାସନ, ଅର୍ଥନୀତି ଚାଲିଚି.... ସାଂସାରିକ ଦୃଷ୍ଟିରୁ ଦେଖିବାକୁ ଗଲେ ମଧ୍ୟ ମୋର ଏ ମିଠାଇ ଖାଇବା ଅନ୍ୟାୟ । ମୋର ସଂସାରର ସମସ୍ତଙ୍କର ଲୋଭ ଚରିତାର୍ଥ କରିବାର ଭାର ମୋ ଉପରେ । ମୁଁ ଯଦି ଲୋଭରେ ପଡି ମୋ ଲୋଭ ଚରିତାର୍ଥ କରେ, ତେବେ ମୁଁ ଖାଲି ଯେ ଅନ୍ୟାୟ କରିବି ତା ନୁହେଁ, ବ୍ୟଭିଚାରୀ ମଧ୍ୟ ହେବି । ସରକାର ଯଦି ଲୋଭରେ ପଡେ, ତେବେ ସେ ରାଜତନ୍ତ୍ର ହେଉ ବା ଗଣତନ୍ତ୍ର ହେଉ ବା ସମାଜବାଦୀ ହେଉ ବା କମ୍ୟୁନିଷ୍ଟ ହେଉ, ସେ ସରକାର ବ୍ୟଭିଚାରୀ.... ।

ପରେଶବାବୁ ଅନେକ ବହି ପଢ଼ିଛନ୍ତି ଓ ଅନେକ କଥା ଜାଣନ୍ତି । ତାଙ୍କର ଚିନ୍ତାଶକ୍ତି ମଧ୍ୟ ଅଛି; କିନ୍ତୁ ଶୁଷ୍କ ଚିନ୍ତା ଓ ବିଶ୍ଳେଷଣ ତାଙ୍କର ଏକ ଦିଗରେ ଚାଲିଲା ଏବଂ ତା ସହିତ ଲୋଭ ମଧ୍ୟ ଅନ୍ୟ ଦିଗରେ ଚାଲିଲା । ଚିନ୍ତା କରୁ କରୁ ହଠାତ୍ ତାଙ୍କ ମନରେ ପ୍ରଶ୍ନ ଜାଗିଲା, ଏ ପରମାତ୍ମା -ଲୋଭ, ନୈରାଶ୍ୟ ବା ଅକ୍ଷମତାଜନିତ ବୈରାଗ୍ୟରୁ କଅଣ ଲାଭ ହୁଏ ?

ଆଉ ଜଣେ ଭଦ୍ରଲୋକ ସେରେ 'ଦିଲମୋହିନୀ' ନେଇଗଲେ; ମାତ୍ର ଦୁଇଟି ପଡ଼ି ରହିଚି । ଆଉ ସମୟ ନାହିଁ । ଦର୍ଶନ ଓ ବିଶ୍ଳେଷଣର ବେଳ ନାହିଁ । ଶୀଘ୍ର, ଅତି ଶୀଘ୍ର କିଛି ବ୍ୟବସ୍ଥା କରିବାକୁ ହେବ ।

ପରେଶବାବୁ ପୁଣି ଦୋକାନ ପାହାଚ ଉପରକୁ ଉଠିଲେ । ଦର୍ଶନ ବିଶ୍ଳେଷଣ ପରିବର୍ତ୍ତେ ଭୟରେ ତାଙ୍କର ପାଦ ଆଉ ଚଳିଲାନାହିଁ । ଏହାପରେ ଶୂନ୍ୟ ଥଳିରେ ଘରକୁ ଫେରିଗଲେ ଯାହା ଅବସ୍ଥା ହେବ, ସେହି ଦୃଶ୍ୟ ତାଙ୍କ ଆଖି ସାମନାରେ ଖେଳିଗଲା ।

....ନାଃ, ଦରିଦ୍ରର ଏ ଅଧିକାର ନାହିଁ । ଦରିଦ୍ର ପାଇଁ ଅଛି ଆତ୍ମା, ପରମାତ୍ମା, ଧର୍ମ, ତ୍ୟାଗ, ସଂଯମ । ସରକାର ଯେତେ ଉପଦେଶ ଦେଉଛନ୍ତି, ସେ ସବୁ ତ ଆମରି ପାଇଁ । ଆମେ ଟିକିଏ ଲୋଭରେ ପଡ଼ି କିଛି କଲେ ତ ଉପଦେଶ, ପୁଲିସ୍ ଶାସନ ଆମରି ଉପରେ ଅଜାଡ଼ି ପଡୁଚି । ନାଃ, ସଂଯମହିଁ ଆମର ଭଲ । ଆମରି ସଂଯମ ଉପରେ ତ ସରକାର ପ୍ରତିଷ୍ଠିତ । ଉପରେ ଜଣେ ଦୁଇଜଣ ଅସଂଯମୀ ହେଲେ କିଛି ଯାଏ ଆସେ ନାହିଁ । ତଳେ ଆମେ ଯଦି ଅସଂଯମୀ ହେବା...

ଜଣେ ଭଦ୍ରଲୋକ ତାଙ୍କୁ ଠେଲି ଭିତରକୁ ପଶିଯାଇ କହିଲେ, ଦିଲ୍ମୋହିନୀ ଗୋଟେ...

ଆଲମାରି ଭିତରକୁ ଚାହିଁ ପରେଶବାବୁ ଦେଖିଲେ ନିତମ୍ବିନୀର ଘନବକ୍ଷ ନିକଟରେ ଆଉ ଗୋଟିଏ ମାତ୍ର "ଦିଲମୋହିନୀ" । ତାଙ୍କର ଆଉ କାଣ୍ଡଜ୍ଞାନ ରହିଲା ନାହିଁ । ସବୁ ଦର୍ଶନ, ସବୁ ଚିନ୍ତା କୁଆଡ଼େ ଭାସିଗଲା । ଦୋକାନ ଭିତରକୁ ପଶିଯାଇ ଗୋଟିଏ ଚୌକିରେ ବସି ପଡ଼ି କହିଲେ, "ମୋତେ ବି ଗୋଟାଏ ।"

କେହି ନାହାନ୍ତି ତାଙ୍କ ଆଦେଶ ଶୁଣିବା ପାଇଁ । କିଛି କ୍ଷଣ ଅପେକ୍ଷା କଲେ ସେ । ତଥାପି କେହି ଆସିଲେ ନାହିଁ । ପୁଣି ଦ୍ୱିଧାରେ ପଡ଼ିଲେ ପରେଶବାବୁ । ଅସହ୍ୟ ଏ ଦ୍ୱିଧା ।

କେଉଁ ନାରୀର ଲାଲ୍ ଦୋପଟ୍ଟା ଉଡ଼ିଯାଉଚି, ସେ ଆନନ୍ଦରେ ଚିତ୍କାର କରି ସମସ୍ତଙ୍କୁ

ଏ ବିଷୟ ଜଣାଇ ଗାଉଚି, ମେରେ ଲାଲ୍ ଦୋପଟ୍ଟା ଉଡ଼୍‌ଯାଏ ...ଦୋକାନୀ ମସ୍‌ଗୁଲ ହୋଇ ତାହା ଶୁଣୁଚି । ପରେଶବାବୁ ମଧ୍ୟ ଗୀତ ଶୁଣିବାକୁ ଲାଗିଲେ । ଶୁଣୁ ଶୁଣୁ ତାଙ୍କର ଚିନ୍ତା ସେଇଆଡ଼େ ଚାଲିଗଲା... ଧନ୍ୟରେ ବମ୍ବେଇ ଫିଲ୍‌ମ, ଧନ୍ୟରେ ଆଧୁନିକା ! କେଳା ଯେମିତି ମାଙ୍କଡ଼କୁ ନଚେଇବା ସମୟରେ କୁହେ, ବାବୁକୁ ପେଟ ଦେଖେଇଥା, ପଇସା ଦେବେ, ସେମିତି ଏ ନାରୀ ପିଚା ହଲେଇ, ପେଟ-ପେଟ ଦେଖେଇ ପଇସା ଟାଣୁଚି । ସରକାରଙ୍କର ଏଥିପ୍ରତି ତ ଦୃଷ୍ଟି ନାହିଁ ...ମନୁଷ୍ୟତ୍ୱ ଯୁଆଡ଼େ ଯାଉ ପରବାଏ ନାହିଁ । ପଇସା ରୋଜଗାର କର, ଜାତୀୟ ଧନ ବଢ଼ାଅ.... ଏହି ଲକ୍ଷ୍ୟ । ଏକଆଡ଼େ କାମ, ଲୋଭ ଆଦି ଚରିତାର୍ଥ କରିବାର ଉପାୟ ବଢ଼ିବାରେ ଲାଗିଚି, ଅନ୍ୟଆଡ଼େ ସେ ସବୁ ତ୍ୟାଗ କରିବାର ଉପଦେଶ ମଧ୍ୟ ଅଜାଡ଼ି ପଡୁଚି ଶିକ୍ଷା, ବକ୍ତୃତାରେ । ମଣିଷ ମଲା ତ ଦ୍ୱିଧାରେ ପଡ଼ି !

ଆଉ ଜଣେ ପ୍ରବେଶ କରି ଚୌକିରେ ବସିଲେ ତାଙ୍କ ପାଖରେ । ତାଙ୍କ ମୁହଁରୁ 'ଦି' ବାହାରିଚି କି ନାହିଁ ପରେଶବାବୁ ସମାଜଚିନ୍ତା ତ୍ୟାଗକରି ଉଦ୍‌କ୍ଷିପ୍ତ ଭାବରେ ଚିତ୍କାର କରି କହିଲେ, ମୁଁ କେତେବେଳୁ ଗୋଟାଏ ଦିଲ୍‌ମୋହିନୀ ମାଗୁଚି, କେହି ଶୁଣିବାକୁ ନାହିଁ ।

ତାଙ୍କ ଚିତ୍କାର ଶୁଣି ଦୁଇ ତିନିଜଣ ଧାଇଁ ଆସି ତରବର ହୋଇ ଆଲମିରାରୁ 'ଦିଲ୍‌ମୋହିନୀ' ବାହାର କରି ତାଙ୍କ ଆଗରେ ଥୋଇଲେ । ପରେଶବାବୁ ତରବର ହୋଇ ସେତକ ଖାଇଦେଇ ଦୋକାନୀ ସାମନାରେ ପଇସା ପକେଇ ଦେଇ ବାହାରି ଆସିଲେ । ନାନା ବିରୁଦ୍ଧାତ୍ମକ ଚିନ୍ତା, ଇଚ୍ଛା, ଅନିଚ୍ଛା ଇତ୍ୟାଦି ଭିତରେ ପଡ଼ି ସେ ଏତେ ଅଧୀର ହୋଇପଡ଼ିଥିଲେ ଯେ 'ଦିଲ୍‌ମୋହିନୀ' ସେ କେବଳ ଖାଇଲେ; କିନ୍ତୁ କିଛି ଆସ୍ୱାଦ ପାଇଲେ ନାହିଁ । ଏତେବେଳଯାଏ ସେ ପ୍ରାୟ ଅଚେତ ଥିଲେ କହିଲେ ଚଳେ ।

ବାହାରକୁ ଆସି ତାଙ୍କ ଚେତା ପଶିଲା । ବଜାର ଥଳିଆଡ଼େ ଚାହିଁଲେ । ଆଉ ମାର୍କେଟ୍ ଆଡ଼େ ନ ଯାଇ ବନାରସି ଖିଲିପାନ ଦୋକାନରୁ ଚାରି ପଇସା ଦେଇ ଗୋଟିଏ ଖିଲିପାନ ଓ ଆଉ ଚାରି ପଇସା ଦେଇ ଗୋଟିଏ ସିଗାରେଟ କିଣି ସେ ଘରଆଡ଼କୁ ଚାଲିଲେ । ପାଦ କିନ୍ତୁ ତାଙ୍କର ଚଳିଲା ନାହିଁ । ହେଲେ ଉପାୟ ନାହିଁ । ଦୋକାନ ଘଡ଼ିରେ ଦେଖିଲେ ଦଶ ବାଜିଚି । ସ୍ତ୍ରୀ-ଭୟଠୁ ଚାକିରି-ଭୟ ପ୍ରବଳତର ହୋଇଉଠିଲା । ଶୀଘ୍ର ଶୀଘ୍ର ପାଦ ପକେଇ ସେ ଚାଲିଲେ ।

କି କୈଫିୟତ ଦେବେ ଘରେ ? ସେ କିଛି ଭାବି ସ୍ଥିର କରିପାରିଲେ ନାହିଁ । ଥରେ ଭାବିଲେ ଆଉ ଘରକୁ ଯିବେ ନାହିଁ, ସିଧା ଷ୍ଟେସନ ଯାଇ ପଳେଇଯିବେ ହରଦ୍ୱାର, ସନ୍ନ୍ୟାସୀ ହେବେ । ଷ୍ଟେସନ ଆଡ଼େ କିଛିଦୂର ଗଲେ ବି ଚାଲି; କିନ୍ତୁ ମନ ତାଙ୍କର ବଳିଲା ନାହିଁ । ପୌରୁଷକୁ ତାଙ୍କର ବାଧିଲା । କାହା ଭୟରେ ସେ ସନ୍ନ୍ୟାସୀ ହେବେ, କାହିଁକି ?

ପରେଶବାବୁ ଫେରି ପୁଣି ଘରଆଡ଼େ ପାଦ ଚଳାଇଲେ । ଘର ଅଳ୍ପ ବାଟ ଅଛି, ଗତି ତାଙ୍କର ଶିଥିଳ ହୋଇଆସିଲା । କିଛିକ୍ଷଣ ଛିଡ଼ାହୋଇ ସେ ଉପାୟ ଭାବିବାକୁ ଲାଗିଲେ ।

....ହଁ । ବାଃ, ଠିକ୍, ଏଇ ଠିକ୍ ଉପାୟ, ଏକୁ ସନ୍ଦେହ ଯିଏ କରିବ ସେ ହ୍ୟାପ ପାଜି ! ମନେ ମନେ ସେ ହେଣ୍ଡିଟାଏ ମାରିଦେଲେ ।

ଗୋଟାଏ ଗଳି ଭିତରକୁ ଯାଇ ପରେଶବାବୁ ଏପଟ ସେପଟ ଚାହିଁ ଦେହରୁ କମିଜ ଓହ୍ଲାଇ କମିଜର ପିଠିପଟରେ କିଛି ନର୍ଦ୍ଦମା କାଦୁଅ ବୋଳିଦେଲେ ଏବଂ କମିଜଟି ପୁଣି ପିନ୍ଧି ଘରକୁ ଗଲେ ।

ଘରେ ପଶୁ ନ ପଶୁଣୁ ସେ ପାଟି କରି ଡାକିଲେ, ବୋଉ, ବୋଉ ମ..

ସେ 'ବୋଉ' ଡାକରେ ସେ ଯଥାସମ୍ଭବ ଭୟ ଓ ହତାଶା ଫୁଟେଇଲେ ।

ଜନନୀ ବ୍ୟସ୍ତହୋଇ ଠାକୁରପୂଜା ପାଖରୁ ବାହାରି ଆସି କହିଲେ, କିରେ ପରି, ଏମିତି କିଆଁ ଡାକୁଚୁ ! କଅଣ ହେଲା କିରେ ?

-ଆଉ କଅଣ, ବଞ୍ଚିଗଲି କହ । ପଙ୍ଖାରେ ଟିକିଏ ବିଞ୍ଚିଦେଲୁ ମୋତେ...

-ଇଲୋ ମୋର ପୁଅର କଅଣ ହେଲା ଲୋ.... ଏ ବୋହୂ, ଟିକିଏ ବିଞ୍ଚଣାଟା ଆଣ, ଇରେ ଗୋଟିଯାକ କାଦୁଅ କେମିତି ହେଲୁ ରେ....

-କହୁଚି, ଆଗେ ଟିକିଏ ପଙ୍ଖା କରିଦେ, ଦମ୍ ମାରେ....

ଜନନୀ ବ୍ୟସ୍ତ ହୋଇ ପଙ୍ଖା ଆଣି ବିଞ୍ଚିବାକୁ ଲାଗିଲେ ।

ଗୋଟାଏ ଦୁଇଟା ଦୀର୍ଘଶ୍ୱାସ ମାରି, ମୁଣ୍ଡରେ ପାଣି ଦେଇ ଗାମୁଛାରେ ପୋଛି ବୋଉ ଦେହକୁ ଆଉଜି ପଡ଼ି ପରେଶବାବୁ କହିଲେ, "ବଜାର କରି ଫେରୁଥିଲି । ଗୋଟାଏ ଷଣ୍ଢ କଅଣ କଲା ନା, ପଛରୁ ଧାଇଁଆସି ମୋ ଥଳିରୁ ଖଡ଼ାଯାକ ଟାଣି ନେଇଗଲା, ଥଳିଟା ମୋ ହାତରୁ ପଡ଼ି ପରିବାତକ ବିଞ୍ଚିଗଲା । ଆଉ ଦୁଇଟା ଷଣ୍ଢ, ଦୁଇଟା ଗାଈ, ଦୁଇଟା ବାଛୁରୀ କେଉଁଠି ଥିଲେ ଦଉଡ଼ିଆସିଲେ ପରିବା ଖାଇବାକୁ ..... (କହିଦେଇ କିନ୍ତୁ ତାଙ୍କର ସନ୍ଦେହ ହେଲା, ସଂଖ୍ୟାଟା ବୋଧହୁଏ ବେଶି ହୋଇଗଲା, ଆଉ ସଂଖ୍ୟାର ସାମଞ୍ଜସ୍ୟଟା ବି ଅବାସ୍ତବ ହେଲା !)

କିନ୍ତୁ ସୁଧାରିନେବାର ଆଉ ବାଟ ନାହିଁ । ସେ ସେମିତି କହିଚାଲିଲେ, ମୁଁ ସେମାନଙ୍କୁ ଘଉଡ଼ାଇଦେବା ପାଇଁ ଟେକା ଉଠାଇଲାବେଳେ ଗୋଟାଏ ଷଣ୍ଢ ତ ଭୁଷି ଦେଲା ମୋତେ ! ମୁଁ ତ ତଳେ ପଡ଼ିଗଲି । ଏତିକିବେଳେ ଗୋଟାଏ ମଟର ତ ଠିକ୍ ଆସି ମୋ ଛାତି ମାଡ଼େ ନ ମାଡ଼େ.... ତୋ ଆଶୀର୍ବାଦରୁ ବଞ୍ଚିଗଲି...

ଜନନୀ ଏକଥା ଶୁଣି ଅଧୀର ଭାବରେ କାନ୍ଦିପକାଇଲେ । ଦଉଡ଼ି ଯାଇ ଠାକୁରଙ୍କ ପାଖରୁ ଯେତେକ ଫୁଲ, ବେଲପତ୍ର ଓ ପାଦୁକ ଆଣି ପୁଅ ମୁଣ୍ଡ ଉପରେ ଅଜାଡ଼ିଦେଲେ ।

ସ୍ତ୍ରୀ ସବୁ ଶୁଣି ଗମ୍ଭୀର ଭାବରେ ସନ୍ଦିଗ୍ଧ ଦୃଷ୍ଟିରେ ଚାହିଁ ପଚାରିଲେ, "ସତ କହୁଚ..... ? କହିଲେ କଅଣ ନା, ଦୁଇଟା ଷଣ୍ଢ, ଦୁଇଟା ଗାଈ, ଦୁଇଟା ବାଛୁରୀ .... ସବୁ ଦି' ଦିଟା.... ମନେ ରହିଗଲା .... କଅଣ କୁହନ୍ତୁଟି...."

ପରେଶବାବୁ ଚିତ୍କାର କରି କହିଲେ, "ଦେଖୁଚୁ, ଦେଖୁଚୁ ବୋଉ, ଦେଖୁଚୁ ତୋ ବୋହୂକୁ, ଟିକିଏ ଦୟାମାୟା ନାହିଁ ।" କିନ୍ତୁ ମନେ ମନେ କହିଲେ, ଶଳା ବଦମାସ୍ ମାଇକିନିଆର କି ବୁଦ୍ଧି ଦେଖୁଚ ! ଟିକିଏ ଗର୍ବ ବି ହେଲା ସ୍ତ୍ରୀ ପାଇଁ; କିନ୍ତୁ ଧରାପଡ଼ିଯିବାରୁ ତାଙ୍କ ରାଗ ଆହୁରି ବଢ଼ିଗଲା । ଗର୍ଜନ କରି କହିଲେ, "ଚୁପ୍‌କର ବଦମାସ୍ କାହାଁକା, ନେହିଁ ତ..." ସ୍ତ୍ରୀ ମୁହଁ ଛିଞ୍ଚାଡ଼ି ଚାଲିଗଲେ ।

ଜନନୀଙ୍କ ମୁହଁରୁ ଅନର୍ଗଳ ଗାଳି ଚାଲିଲା ବୋହୂ ଉପରେ । ପରେଶବାବୁ ମଧ୍ୟ ସେଥିରେ ଯୋଗଦେଇ କହିଲେ, ମା' ବାପଠାରୁ ବଳି ଆଉ କେହି ନାହିଁ ଦୁନିଆରେ । ସମସ୍ତେ ଶୋଷିବାକୁ ଚାହାନ୍ତି । ମୋ ଜୀବନଠୁଁ ତାର ପଇସା ବେଶି ହେଲା । ସ୍ତ୍ରୀ କଥା ତ ଛାଡ଼, ସେ ତ ସବୁଆଡୁ ଶୋଷେ ।

ଏ କଥାରେ ସ୍ତ୍ରୀଙ୍କ ଆଖିରୁ ଅଗ୍ନି ବର୍ଷିବାକୁ ଲାଗିଲା । ସେ ତରାଟି ଚାହିଁ କହିଲେ, ''କଅଣ ଅଛି ଯେ ଶୋଷିବି, ସବୁଆଡୁ ତ ଶୁଖିଲା ।''

ପରେଶବାବୁ ଆଉ ସମ୍ଭାଳି ପାରିଲେ ନାହିଁ । ଏ ଅପମାନରେ ସେ କାଣ୍ଡଜ୍ଞାନ ହରାଇ ଦୌଡ଼ିଗଲେ ରୋଷେଇଘରେ ଭିତରକୁ ସ୍ତ୍ରୀଙ୍କୁ ମାରିବାକୁ । ମାରିବାପାଇଁ ହାତ ମଧ ଉଠାଇଲେ; କିନ୍ତୁ ପାରିଲେନାହିଁ । ଅକ୍ଷମ କ୍ରୋଧ ତାଙ୍କର ଯାଇ ପଡ଼ିଲା ଭାତହାଣ୍ଡି ଉପରେ । ଭାତହାଣ୍ଡି ଟେକି ଆଣି ସେ ଅଗଣାରେ କଚାଡ଼ି ଦେଲେ । ସ୍ତ୍ରୀ ଓଢ଼ଣା ଟାଣି ଚାଲିଗଲେ ଖଟ ଉପରକୁ ।

ଜନନୀ କେବଳ ଚିତ୍କାର କରିବାକୁ ଲାଗିଲେ, ''କଅଣ କହିଲୁ ଲୋ ଛତରଖାଇ ! ପୁଅକୁ ଶୋଷି ଖାଉନୁ ତୁ ? ଖାଉନୁ ? ଖାଉନୁ ? ପୁଅ ମୋର ଶୁଖିଯାଉଛି କାହିଁକି ? ଟିକିଏ ଦୁଧ ତ ଖାଇବାକୁ ପାଉନାହିଁ ମୋ ପୁଅ । ସବୁ ତ ତୁମରି ପିଛାରେ ଖରଚ କଲା ।''

ସ୍ତ୍ରୀ ଘର ଭିତରେ ଥାଇ କହିଲେ, ''ତୁମ ପୁଅ ଖାଇବାକୁ ପାଉନାହାନ୍ତି, ଆଉ ମୋ ପିଲା ?''

ପରେଶବାବୁ ତମତମ ହୋଇ କମିଜ ପିନ୍ଧି ବାହାରିଲେ କଚେରି । ଘଡ଼ିକୁ ଚାହିଁ ଦେଖିଲେ ସାଢ଼େ ଦଶ ବାଜିଗଲାଣି । ପରେଶ ବାବୁ ଧଇଁସଇଁ ହୋଇ ଦୌଡ଼ିଛନ୍ତି କଚେରି । ଘର କଳିଆ ତାଙ୍କର ଆଉ ମନେ ନାହିଁ, ସେ ଭାବୁଛନ୍ତି କଡ଼ା ହାକିମ କଥା । ଏତେ ଡେରି ପାଇଁ କି କାରଣ ଦେଖାଇବେ ସେ..... !

ଲୋଭର ଗୋଟାଏ ଛଡ଼ ବୋହିଗଲା ଯେମିତି । କଚେରିରେ ପହଞ୍ଚି ଦେଖିଲେ କିଛି ବିପଦ ଘଟିନାହିଁ । ନିଜ ଚୌକି ଉପରେ ବସି ପଙ୍ଖାଟାକୁ ପୂରା ଖୋଲିଦେଲେ । ଝାଳ ପୋଛୁ ପୋଛୁ ସମସ୍ତ ଘଟନାଟି ଉପରେ ଥରେ ଆଖି ବୁଲାଇ ଦେଇ ହସିପକାଇ ମନେ ମନେ କହିଲେ, ମୁଁ ଶଳାଟି ତ ଖରାପ ଲୋକ ନୁହେଁ, ଭଲ ଲୋକ । ମଲା, ଲୋଭ, ହିଂସା ଏସବୁ ଅଛି ବୋଲି କଅଣ ଭଲ ଗୁଣ ନାହିଁ ? ସେ ବି ତ ଅଛି । ମୋଟାମୋଟି ମୁଁ ଭଲ ଲୋକ ନା ନାହିଁ ? ତେବେ ହ୍ୟାପ୍, ମୁଁ ଏମିତି କାହିକି ହେଲି, ଆଏଁ ? ଛାଡ଼ଃ । ଦେଖ ତ ଗୋବିନ୍ଦଙ୍କ ଗତି, ଝୁଲା ପେଲି ତ ଚାଲିଛନ୍ତି !

ମନଟା ତାଙ୍କର ହଠାତ୍ ପ୍ରଶାନ୍ତ ହୋଇଗଲା । ମନରୁ ସବୁ ପୋଛି ଦେଇ ସେ କାମରେ ମନୋନିବେଶ କଲେ । ଆଉ ବଡ଼ବାବୁଙ୍କୁ ହସି ହସି କହିଲେ, ''ବଡ଼ବାବୁ, ଆଜିଠୁଁ ମୋତେ ଯେତେ ଇଚ୍ଛା ସେତେ କାମ ଦିଅନ୍ତୁ, ଅନ୍ୟମାନଙ୍କ ବଳକା କାମ ବି ଦିଅନ୍ତୁ । ମୁଁ ସବୁ ଚଟାପଟ୍ କରିଦେବି ଦେଖିବେ ।''

ବଡ଼ବାବୁ ଚଷମା ଉପରୁ କିଛିକ୍ଷଣ ତରାଟି ଚାହିଁ କହିଲେ, ''ମନ ଯଦି ସେମିତି ହେଉଚି ତେବେ ନିଜ କାମଟି ବାବୁ ଆହୁରି ଭଲ କରି କର । ପରକାମ କରି ବାହାଦୁରି ନେବାକୁ ଚେଷ୍ଟା କରନା, ବୁଝିଲ । ଆଉ, ମୁଁ କାହିଁକି ସେମିତି କରି ଅନ୍ୟମାନଙ୍କୁ ଖରାପ କରିବି ? ନିଜ କାମ ଖୁବ୍ ଭଲ କରି କର । ଆଉ ଅନ୍ୟର କାମ ଦେଲେ ବରଞ୍ଚ ନ କରିବାକୁ ପାଟିତୁଣ୍ଡ କର, ବୁଝିଲ କି ?''

ପରେଶବାବୁଙ୍କ ଛାତିରୁ ଅତଡ଼ା ଖସି ପଡ଼ିବାଭଳି ଲାଗିଲା ପୁଣି; କିନ୍ତୁ ସେ ସେମିତି ହସି ହସି କହିଲେ -''ବୁଝିଲି, ବୁଝିଲି ।''

# ନାରୀ ଓ କବି

ଶଙ୍ଖ ହୁଳହୁଳିରେ ଗୃହ ମୁଖରିତ ହୋଇ ଉଠିଲା । ଘୋର ବର୍ଷା; କିନ୍ତୁ ମନ୍ଦ ମଳୟ ବୋହିବାକୁ ଲାଗିଲା । ପିକକୁଳ କୁହୁ ରବ କରିଉଠିଲେ । ଆକାଶରେ ପୂର୍ଣ୍ଣଚନ୍ଦ୍ର ପ୍ରତିଭାତ ହେଲେ । ଏପରି ଋତୁ ବିପର୍ଯ୍ୟୟ ହଠାତ୍ କାହିଁକି ଘଟିଲା !! ଓଃହୋ, ଶ୍ରୀ ଚକ୍ରଧର ମହାପାତ୍ରଙ୍କ ମଧ୍ୟମପୁତ୍ର ଶ୍ରୀମାନ୍ ମୁରଲୀମୋହନଙ୍କ ସହିତ ଅଠାଠିକ୍ ଗ୍ରାମନିବାସୀ ଶ୍ରୀ ଜୀବନ ବଲ୍ଲଭ ଦାସଙ୍କ ଜ୍ୟେଷ୍ଠା କନ୍ୟା ଆୟୁଷ୍ମତୀ ଶ୍ରୀମତୀ ସୁଶୀଳା ଦେବୀଙ୍କ ଶୁଭପରିଣୟ ଘୋଷିତ ହୋଇଚି । କାଳେ ଏ କଥା କେହି ବିଶ୍ୱାସ ନ କରନ୍ତି ସେଥିପାଇଁ ପ୍ରମାଣ ପକ୍ଷେ ଯଥେଷ୍ଟ ବିବେଚିତ ହୋଇ କହୁଣି ପର୍ଯ୍ୟନ୍ତ ଗୋଟିଏ ନାରୀର ହାତ ସହିତ ତଦ୍ରୂପ ଗୋଟିଏ ପୁରୁଷର ହାତ ଛନ୍ଦାଛନ୍ଦି ଅବସ୍ଥାରେ ଅପାର୍ଥିବ ପୁଷ୍ପମାଳାରେ ବେଷ୍ଟିତ ହୋଇଥିବାର ଚିତ୍ର ମଧ୍ୟ ପ୍ରକାଶିତ ହୋଇଅଛି । ପତ୍ରଦ୍ୱାରା ନିମନ୍ତ୍ରଣ ତ୍ରୁଟି ମାର୍ଜନା କରି ସମସ୍ତ ବନ୍ଧୁବାନ୍ଧବ ଏବଂ ପତ୍ରଦ୍ୱାରା ନିମନ୍ତ୍ରିତ ହୋଇ ନ ଥିବାର ତ୍ରୁଟି ମାର୍ଜନା କରି ବହୁ ଅ-ବାନ୍ଧବ ଚକ୍ରଧରବାବୁଙ୍କର ମହାନଦିଆ ବଜାରସ୍ଥ ବାସଭବନରେ ଉପସ୍ଥିତ । ମୁରଲୀଙ୍କ ଭାଉଜ ଉପର୍ଯ୍ୟୁକ୍ତ ଋତୁ ବିପର୍ଯ୍ୟୟ ଗୋଲାପି କାଗଜରେ ନାଲି ଅକ୍ଷରରେ ଛପାଇ ପ୍ରଚାର କରିବା ସଙ୍ଗେ ସଙ୍ଗେ ପ୍ରାର୍ଥନା ଜଣାଇଛନ୍ତି, ହେ ଦୟାମୟ ବିଭୁ, ଏ ଦୁଇଟି ହୃଦୟର ଆଜି ଯେଉଁ ଅପୂର୍ବ ମିଳନ ଘଟିଲା ସେ ଦୁଇଟିକୁ ଏପରି ଭାବରେ ଯୋଡ଼ିଦିଅ ଯେ ଜନ୍ମ ଜନ୍ମ ଧରି .... ଇତ୍ୟାଦି ଇତ୍ୟାଦି ।

ସାଙ୍ଗମାନଙ୍କୁ ଛାଡ଼ି ଆସୁ ଆସୁ ଅନେକ ରାତି ହୋଇଗଲା । ମୁରଲୀ ଜାଣିଶୁଣି ମଧ୍ୟ ଡେରିକରି ଫେରିଲେ । କାରଣ ସେ କଳ୍ପନା କରୁଥିଲେ, ସୁଶୀଳା ତାଙ୍କୁ ଅପେକ୍ଷା କରି କରି ଅଭିମାନରେ ଖଟର ଗୋଟିଏ କଣରେ ବସିଥିବ, ରୁଦ୍ଧ ଅଭିମାନରେ ତାର ପାତଳା ଓଠ ଦୁଇଟି ଥରି ଉଠୁଥିବ, ସୁନ୍ଦର ଆଖି ଯୋଡ଼ିକ ଉଦ୍‌ଗତ ଅଶ୍ରୁରେ ଛଳ ଛଳ ହୋଇ ଆହୁରି ସୁନ୍ଦର ଦିଶୁଥିବ.....

କିନ୍ତୁ ଦୁଆର ଖୋଲି ଦେଖିଲେ ସୁଶୀଳା ପଲଙ୍କର ଗୋଟିଏ କଣରେ ନିଘୋଡ଼ ନିଦରେ ଶୋଇଚି । ପାଟି ଉପରେ ପଡ଼ିଥିବା ପଣତ କାନି ନିଶ୍ୱାସ ପ୍ରଶ୍ୱାସରେ ପଡୁଚି ଉଠୁଚି ଏବଂ ଗୋଟିଏ ଅଦ୍ଭୁତ ଶବ୍ଦ ନିର୍ଗତ ହେଉଅଛି । ମୁରଲୀର କଳ୍ପନା ଧୂଳିସାତ୍ ହୋଇଗଲା । କ୍ଷୋଭ ଓ ଅଭିମାନରେ ତାଙ୍କର ଦେହ ଥରି ଉଠିଲା । ପୁଣି ଭାବିଲେ, ଦୁଇ ଦିନର ଉପବାସରେ ବୋଧହୁଏ ସୁଶୀଳା କ୍ଳାନ୍ତ, ତାଙ୍କୁ ଅପେକ୍ଷା କରି କରି ବୋଧହୁଏ ସେ ସେଇଠି ଶୋଇପଡ଼ିଚି .....ଏ ଭାବନା ଆସିବା ପରେ ସେ ଟିକିଏ ଆଶ୍ୱାସନା ପାଇଲେ । ସୁଶୀଳାକୁ ନିଜର ଆଗମନ ବାର୍ତ୍ତା ଜଣାଇବା ଉଦ୍ଦେଶ୍ୟରେ ସେ ସଶବ୍ଦରେ ପଲଙ୍କ ଉପରେ ଶୋଇ ପଡ଼ିଲେ ।

ସୁଶୀଳା ତଥାପି ପୂର୍ବପରି । ମୁରଲୀଙ୍କ ମନରେ କ୍ରୋଧ ଜାତ ହେଲା । ପୁଣି ଭାବିଲେ, ସୁଶୀଳା ବୋଧହୁଏ ତାଙ୍କ ଉପରେ ପ୍ରତିଶୋଧ ନେବାପାଇଁ ଶୋଇବାର ଅଭିନୟ କରୁଚି । ଗୋଟିଏ

ସ୍ୱସ୍ତିର ନିଃଶ୍ୱାସ ପକାଇ ମୁରୁକି ହସି ମୁରଲୀ ମଧ୍ୟ ଶୋଇବାର ଅଭିନୟ କଲେ ଏବଂ ଉଦ୍‌ଗ୍ରୀବ ଭାବରେ ଅପେକ୍ଷା କରି ରହିଲେ ସୁଶୀଳାର ସଙ୍କେତମୟ ପରଶକୁ ।

ସୁଶୀଳା ତଥାପି ପୂର୍ବପରି । ମୁରଲୀ ମୁଣ୍ଡଟେକି କଣେଇ ଚାହିଁ ଦେଖିଲେ ଯେ ତାଙ୍କର ଆଗମନବାର୍ତ୍ତା ସୁଶୀଳାକୁ ଆଦୌ ଜଣାନାହିଁ । ମୁରଲୀ ଏଥର ରୀତିମତ ଭୟ ପାଇଲେ..... ତେବେ କଅଣ ସୁଶୀଳାର ମୋତେ ପସନ୍ଦ ହୋଇନାହିଁ ! ଏ ଚିନ୍ତା ଆସିବା ମାତ୍ରକେ ମୁଣ୍ଡରୁ ତାଙ୍କର ଝାଳ ବୋହିଗଲା.... ଆଚ୍ଛା, ଏତେଦୂର ସ୍ପର୍ଦ୍ଧା, ଆମେ ବି ଏହାର ପ୍ରତିଶୋଧ ନେବା ଜାଣୁ...

ମୂରଲୀ ନିଘୋଡ଼ ନିଦରେ ଶୋଇବାର ଅଭିନୟ କରି ବିଳିବିଳେଇବାକୁ ଲାଗିଲେ...... ରାଣୀ, ରାଣୀ, ତୁମେ ଆସ.... ଆସ ତୁମେ । ସୁଶୀଳା ତଥାପି ପୂର୍ବପରି ।

...ନା ରାଣୀ, ମୁଁ ବିବାହିତ ହେଲେ ବି, ତୁମେ ହିଁ ମୋର ସବୁ...

ସୁଶୀଳା କର ଲେଉଟାଇ ତକିଆ ଜାକି ଅଧିକ ଆରାମରେ ଶୋଇଲା । ସବୁ ବିଫଳ... ମୁରଲୀ ସେ ରାତିରେ ଆଉ ଶୋଇପାରିଲେ ନାହିଁ । ନାନା ଦୁଶ୍ଚିନ୍ତାରେ ସେ ରାତିଟି କଟିଲା ।

ଏହାପରେ ଦୀର୍ଘ ତିନିବର୍ଷ ବିତିଯାଇଚି । ମୁରଲୀ ଏପର୍ଯ୍ୟନ୍ତ ବୁଝିପାରିନାହାନ୍ତି ସୁଶୀଳା ତାଙ୍କୁ ଭଲପାଇଚି କି ନା । ମଝିରେ ମଝିରେ ତାଙ୍କର ଘୋର ସନ୍ଦେହ ଜାତହୁଏ, ସୁଶୀଳାର କଅଣ କୌଣସି ନାରୀସୁଲଭ ଗୁଣ ନାହିଁ ! ସୁଶୀଳାର ମନରେ ହିଂସା ଜାତ କରାଇବା ଉଦ୍ଦେଶ୍ୟରେ ସେ ଥରେ କହିବାକୁ ଲାଗିଲେ, ତାଙ୍କର ରାଣୀ ପ୍ରତି ପୂର୍ବ ପ୍ରେମକଥା । ସବୁ ଶୁଣି ସୁଶୀଳା ମୁରୁକି ହସି କହିଲା -ଏସବୁ ମିଛକଥା ମୁଁ ଜାଣେ ।

-କାହିଁକି ମିଛ କହୁଚ ?

-ଜାଣେ ତ, ପ୍ରେମରେ ପଡ଼ିଥିବା ପୁରୁଷର କଥା ଅଲଗା ।

-ତା ମାନେ ତୁମେ କହୁଚ ମୋତେ କୌଣସି ନାରୀ ପ୍ରେମ କରିପାରେନା । ବେଶ୍ ବେଶ୍ ବୁଝିଲି ତୁମ ମନକଥା ।

-ମୁଁ ସେ କଥା କହୁନାହିଁ । ତୁମେ ମିଛରେ 'ରାଣୀ' ବୋଲି ବିଳିବିଳେଇଥିଲ, ମୁଁ ଜାଣେ ।

କ୍ରୋଧରେ ମୁରଲୀଙ୍କ ଦେହ ଥରିଉଠିଲା । କିଛି ଗୋଟିଏ ଅଶୋଭନୀୟ କରିପକାଇବା ଭୟରେ ସେ ସେଠାରୁ ଚାଲିଗଲେ । କେତେ ଉପାୟରେ ସେ ସୁଶୀଳାକୁ ଆକୃଷ୍ଟ କରିବାକୁ ଚେଷ୍ଟାକରିଛନ୍ତି; କିନ୍ତୁ ଦିନେ ସୁଦ୍ଧା ସୁଶୀଳାର ଭାବାନ୍ତର ସେ ଲକ୍ଷ୍ୟ କରିପାରିଲେ ନାହିଁ । ଗମ୍ଭୀର ହୋଇ ଭର୍ତ୍ତାରୂପ ଧାରଣ କରିଛନ୍ତି । ନୀରବ ରହି ତାପସ ରୂପ ଧରିଛନ୍ତି । ଶେଷକୁ ସେ ଦିନେ ସାହିତ୍ୟ ଲେଖିବାକୁ ଆରମ୍ଭକଲେ । ତାଙ୍କର ଗୋଟିଏ କବିତା ପତ୍ରିକାରେ ପ୍ରକାଶ ପାଇଲା । ମୁରଲୀ ପତ୍ରିକାଟି ସୁଶୀଳାର ନଜରରେ ପଡ଼ିବା ଭଳି ଗୋଟିଏ ସ୍ଥାନରେ ରଖିଦେଇ କଚେରୀ ଚାଲିଗଲେ । କଚେରୀରୁ ଫେରି ଦେଖିଲେ, ସୁଶୀଳାର କୌଣସି ଭାବାନ୍ତର ନାହିଁ । କଚେରୀରୁ ସହଳ ଫେରିଚନ୍ତି ବୋଲି ସୁଶୀଳା ଜଳଖିଆ ପ୍ରସ୍ତୁତ କରିବାରେ ବ୍ୟସ୍ତ । ଦୁଇଦିନ ଗଲା, ତଥାପି ସୁଶୀଳା କବିତା ବିଷୟରେ କିଛି କହିଲାନାହିଁ ।

ଆଉ ସହି ନପାରି ଦିନେ ମୁରଲୀ କହିଲେ, ''ସୁଶୀ ମୋର ଗୋଟିଏ କବିତା ପ୍ରକାଶ ପାଇଛି, ଜାଣ ? ତାର ପ୍ରଶଂସା ବି ବାହାରିଚି କାଗଜରେ, ଦେଖ ।''

-ଦେଖେ ! ବାଃ, ମୋତେ ଆଜିଯାଏ ବି କହିନା ତମେ ! ମୁଁ ଆଜି ଦେଖାଇବି ଟୁପ ବୋଉକୁ । ଟୁପ ବାବା କଅଣ ଗୋଟିଏ ଲେଖିଛନ୍ତି ଯେ ଟୁପବୋଉ କେଡ଼େ ଗର୍ବରେ କାଲି ମୋତେ

କହୁଥିଲା ।

-ବାଃ, କହିବି କଅଣ ବା, ମୁଁ ତୁମରି ସାମନାରେ ଏତେ ରାତିଯାଏ ବସି ଲେଖୁଥାଏ, ତୁମେ ଜାଣନା ? ଜାଣିବ କେମିତି ! ଗଧଙ୍କ ଭଳି ତ ଶୋଇବ ।

-ମୁଁ କାହିଁକି ଜାଣନ୍ତି କଅଣ ଲେଖୁଚ, ଭାବେ ଅଫିସ କାମ କରୁଥିବ ।

-ରାତି ଗୋଟାଏ ପର୍ଯ୍ୟନ୍ତ ଅଫିସ କାମ କରୁଥାଏ ଭାବିଲ !

-ବାପା ତ କରନ୍ତି ! ତୁମେ ନ କରିବ କାହିଁକି ?

-ଆଚ୍ଛା, ମୁଁ କଅଣ ଲେଖେ ଦିନେ ବି ଜାଣିବାକୁ ତୁମର ଆଗ୍ରହ ହୋଇନାହିଁ ।

-କହିଲି ପରା, ଅଫିସ୍ କାମ ଥିବ ଭାବିଥିଲି । ତୁମର ଯେ ଏ ଗୁଣଅଛି ମୁଁ କେମିତି ଜାଣନ୍ତି ?

-ଆଉ କିଏସେ ଜାଣନ୍ତା ?

-ରାଗ ନାହିଁ, ଦିଅ ଖରାବେଳେ ମୁଁ ଟୁପବୋଉକୁ ଦେଖାଇବି ।

-ଟୁପବୋଉକୁ ନ ଦେଖାଇ ନିଜେ ପଢ଼ିଲେ ମୁଁ ଖୁସିହୁଅନ୍ତି ।

-ପଢ଼ିବି, ପଢ଼ିବି ।

ତା ପରଦିନ ମଧ୍ୟ ମୁରଲୀ ସହଳ କଚେରୀରୁ ଫେରିଲେ । ଫେରି ଦେଖିଲେ ସୁଶୀଳା ବୋଉର ଗୋଡ଼ ଘଷିଦେଉଚି । ବୋଉ ଉପରେ ମୁରଲୀଙ୍କର ଭାରି ରାଗ ହେଲା, ଏମାନେ ଚାହାନ୍ତି ଘରକୁ ଦାସୀ, ଆଉ କିଛି ନାହିଁ ।

ମୁରଲୀ ନିଜ ଘରକୁ ଯାଇ ଜିନିଷପତ୍ର ଫୋପାଡ଼ି ପାଟିକରି କହିଲେ, ଆରେ ମୋର କଲମ କିଏ ନେଲା ? ଗୋଟିଏ ଭାବନା ଆସିଚି, ଲେଖିବାକୁ ବସିଚି, ଆରେ କଲମ କିଏ ନେଲା-ଏ ଘରେ ପରା କିଛି ହବନାହିଁ ।

ଭାଉଜ ଆସି କହିଲେ, କାହିଁକି ପାଟିଟା କରୁଚ ? ସୁଶୀଳା ଆସୁଚି, ପାଟି କରନା । ବୋଉ ଦିନଯାକ ଖଟି ଖଟି ଟିକିଏ ଆରାମ କରୁଛନ୍ତି ।

-ମୁଁ ସେସବୁ ଜାଣେନା । ଡାକିଦିଅ ତାକୁ, ମୋ କଲମ ଦେଇଯାଉ । ମୁରଲୀ ଅଧିକ ଚିତ୍କାର କରି କହିଲେ ।

-କେମିତି ଅଲାଜୁକ ମ ତୁମେ ।-ସୁଶୀଳା ଆସି କହିଲା ।

-ସେ କଥା ଛାଡ଼-ପଢ଼ିଚ ?

-କଅଣ ?

-କଅଣ !

-କଅଣ ମ ? ଓହୋ ତମର ଲେଖା ? ଟୁପବୋଉ ଆସିଲାନାହିଁ ଆଜି । ମୋର ମନେପଡ଼ିଲାନାହିଁ । କଅଣ କରିବି, କାମକୁ ବେଳନାହିଁ, ତୁମ ଲେଖା ପଢ଼ିବି କେତେବେଳେ ?

-ବେଳ ନାହିଁ ! ପଢ଼ିନା ତେବେ ?

-ରାଗନା ମ । ପୁଅକୁ ଶୁଆଉ ଶୁଆଉ ତ ବେଳ ଗଲା । ଏତେ ଦୃଷ୍ଟ ସେ ହୋଇଚି, ତୁମପରି ମୋତେ ଶୋଇବ ନାହିଁ, ମୁଁ ତା ପାଖରେ ନ ଶୋଇଲେ । ଆଜି ରାତିରେ ତୁମେ ନିଜେ ମୋତେ ପଢ଼ି ଶୁଣାଇବ, ହେଲା ।

-ହଉ, ଆଜି ସହଳ କାମ ସାରି ଆସିବ ଶୋଇବାକୁ ।

ଘରକାମ ସାରି ସୁଶୀଳାର ଆସିବାକୁ ରାତି ବାରଟା ! ବହିଧରି ମୁରଲୀବାବୁ ଚେଇଁ ବସିଥାନ୍ତି ।

-ଆସିଲ ଏତେବେଳେ ! ହଉ, ଦୟାକରି ଶୁଣ !

-ଟିକିଏ କୁନକୁ ଶୋଇପକାଏ -ନ ହେଲେ ସେ ଶୁଣିବାକୁ ଦବ ନାହିଁ ।

-ନା, ସେ ବି ଶୁଣୁ । ସେ ଦିନେ କବି ହେବ ।

କୁନ ଧଡ଼କରି ବିଛଣାରୁ ଉଠିପଡ଼ି କହିଲା, ''ହଁ ବୋଉ, ମୁଁ କୋବି ଖାଇବି ।''

ସୁଶୀଳା କୁନକୁ ଚୁମ୍ବନ ପରେ ଚୁମ୍ବନ ଦେଉ ଦେଉ କହିଲା, ''ଦୂର୍ ଗଧ, ଏ ଖାଇବା କୋବି ନୁହଁରେ, ଆଉ ଜାତିକା କୋବି, ଅଖାଦ୍ୟ କୋବି ।''

-''ନା ମୁଁ ଖାଇବି'', କୁନ ମୁହଁ ଫୁଲାଇ କହିଲା ।

-ହଉ, ଖାଇବୁ । ବାପା ପଢୁଛନ୍ତି-ଶୁଣ୍ । ପଢ଼ ଏଥର...

-ମୋ ପାଖକୁ ଲାଗି ବସ । ମୁରଲୀ ଆଦରରେ ସୁଶୀଳାକୁ ଆଲିଙ୍ଗନ କରି ଟାଣିବାକୁ ଲାଗିଲେ । କୁନ ବୋଉର ପଣତ କାନି ଧରି ଟାଣି କହିଲା -ନାଇଁ ବୋଉ, ତୁ ଏଇଠି ଶୁଅ ।

-ହେଲା-ସୁଶୀଳା କୁନକୁ ପୁଣି ଚୁମ୍ବନ ଦେଇ ଗର୍ବର ସହିତ ଚାହିଁ କହିଲା ।

-ହଉ, ସେଇଠି ବସି ଶୁଣ ! ମୋ ଆଡ଼କୁ ଅନାଅ ।

...ରୂପ ନାହିଁ, ରସ ନାହିଁ, ନାହିଁ ଯେ ସୁବାସ ।

ପ୍ରଥମ ଧାଡ଼ିଟି ପଢ଼ି ଟିକିଏ ଥମକି ଚାହିଁ ମୁରଲୀ ଦେଖିଲେ ସୁଶୀଳାର ମଥା ଶେଯରେ ଲାଗିଗଲାଣି । କୁନ ବଲବଲ କରି ଚାହିଁଚି ବାପାଙ୍କ ଆଡ଼େ । ମୁରଲୀ ସୁଶୀଳାକୁ ଠେଲି ଉଠାଇବାକୁ ଚେଷ୍ଟାକଲେ । କିନ୍ତୁ ସୁଶୀଳା ପଥର ପାଲଟି ଯାଇ ସାରିଲାଣି ଇତି ମଧ୍ୟରେ ।

ରାଗରେ ସଶବ୍ଦରେ ବହି ଫୋପାଡ଼ିଦେଇ ମୁରଲୀ ଶୋଇପଡ଼ିଲେ । ନାନା ପ୍ରକାର ଚିନ୍ତାରେ ଆଖିରେ ତାଙ୍କର ପଲକ ପଡ଼ିଲାନାହିଁ । ସୁଶୀଳା ଆରାମରେ ଶୋଇଚି । କୁନ ଶୋଇପଡ଼ିଲାଣି । ଏତେ ନିଦରେ ବି ସୁଶୀଳାର ଗୋଟିଏ ହାତ ଟେକାହୋଇ କୁନକୁ ଆବୋରି ରଖିଚି ।

ରାତି ପ୍ରାୟ ଦୁଇଟା । ହଠାତ୍ କୁନ ବିଛଣାରୁ ଉଠିପଡ଼ିଲା । ସାଙ୍ଗେ ସାଙ୍ଗେ ସୁଶୀଳା ମଧ୍ୟ ଉଠିପଡ଼ିଲା । ମୁରଲୀ ଶୋଇବାର ଅଭିନୟ କରି ଆଖି ମୁଦିଲେ ।

କୁନ କହିଲା, ''ବୋଉ ମୁଁ ପଢୁଛି ଶୁଣୁ...''

ସୁଶୀଳା ଆନନ୍ଦରେ ଚେଇଁ ବସି କହିଲା, ''ସତେ ! ମୋ ପୁଅ ପଢ଼ିବ, କବି ହେବ..''

କୁନ ପଢ଼ିବାକୁ ଲାଗିଲା ଗମ୍ଭୀର ଭାବରେ ...କରୁମ କାରୁମ ମଖନ ଲଟପ ନାଇଁ... ବିଚୁଟ ଦେବେଦୁ ନାଇଁ ନାଇଁ ନାଇଁ ।

ସୁଶୀଳା ମୁଗ୍ଧ ଦୃଷ୍ଟିରେ ଅନାଇ ରହିଛି କୁନକୁ । କୁନର ଅଦ୍ଭୁତ କବିତା ଶୁଣି ଆନନ୍ଦର ଆତିଶଯ୍ୟରେ କୁନକୁ ଚୁମ୍ବନ ଦେଇ କହୁଚି... ଅଛି, ଅଛି, ସବୁ ଅଛି, କାଲି ସକାଳେ ଦେବି ।

ପୁଅ ଅନେକ କ୍ଷଣ ଧରି ତା'ର ଅଦ୍ଭୁତ କବିତା ପାଠ କରିବାକୁ ଲାଗିଲା । ତା'ର ଆବୃତ୍ତିରେ ମଧ୍ୟ ବିରାମ ନାହିଁ । ସୁଶୀଳାର ସେ କବିତା ଶୁଣିବାରେ ମଧ୍ୟ ଆଗ୍ରହର ଊଣା ନାହିଁ ।

ମୁରଲୀ ଦେଖି ଦେଖି ଦୀର୍ଘ ନିଃଶ୍ୱାସ ପକାଇ ଭାବିଲେ, ନାରୀ ପ୍ରେମିକା ନୁହେଁ, ଜନନୀ; ମୁଁ କବି ନୁହଁ - କୁନ କବି ।

# ମାନବ ଓ ଦାନବ

ଗଭୀର ରାତ୍ରିର ସୂଚୀଭେଦ୍ୟ ଅନ୍ଧକାର ବିଦାରଣ କରି ଶୁଭିଲା ଗୋଟିଏ ଦାନବୀୟ ଅଟ୍ଟହାସ୍ୟ ହାଃ-ହାଃ-ହାଃ-ହାଃ-ହୋଃ-ହୋଃ-ହୋଃ, ଲହରାଇ ଲହରାଇ ତୁହାକୁ ତୁହା ସେ ହସ ପର୍ବତ ବନାନୀର ପ୍ରଶାନ୍ତ ନୀରବତାକୁ ପ୍ରକମ୍ପିତ କରିବାକୁ ଲାଗିଲା ।

ମୁଁ ଓ ପ୍ରବୀର ମଞ୍ଚାରୁ ଓହ୍ଲାଇ ବନ୍ଧୁକ ଧରି ଟର୍ଚ୍ଚ ଆଲୁଅ ଢାଳି ଢାଳି ଧୀରେ ଧୀରେ ଅଗ୍ରସର ହେଉଥିଲୁ ନରଖାଦକ ବାଘର ଅନୁସନ୍ଧାନରେ । ସେ ଅଟ୍ଟହାସ୍ୟ ଆମକୁ ଧକ୍କା ମାରି ଅଟକାଇ ଦେଲା । ଭୟରେ ଆମେ ଦୁହେଁ ପାଖକୁ ପାଖ ଲାଗି ଛିଡା ହୋଇ ରହିଲୁ । ଆଲୁଅ ଜଳାଇ ରଖିବାର ସାହସ ହେଲାନାହିଁ ।

ଅଟ୍ଟହାସ୍ୟ ପର୍ବତମାଳାର କନ୍ଦରେ କନ୍ଦରେ ପ୍ରତିଧ୍ୱନିତ ହୋଇ ମିଳାଇ ଗଲା । ସମସ୍ତ କୋଳାହଳର ଆଦି ଓ ଅନ୍ତ ସେଇ ମହାନୀରବତାରେ । ଚାରିଆଡ଼େ ପୁଣି ନିସ୍ତବ୍ଧ, ନିଥର । ଭୟାବହ ସେ ନିସ୍ତବ୍ଧତା ।

ହଠାତ୍ ପୁଣି ଗୋଟିଏ କରୁଣ ଆର୍ତ୍ତନାଦ, ହୃଦୟବିଦାରକ କରୁଣ ଆର୍ତ୍ତନାଦ । ଆମେ ଦୁହେଁ ଭାରତବିଖ୍ୟାତ ଶିକାରୀ । ବର୍ଷକରୁ ଆଠମାସ ଆମେ ଥାଉଁ ଜଙ୍ଗଲରେ । ଭାରତର ପ୍ରତ୍ୟେକ ଜଙ୍ଗଲ ସହିତ, ପ୍ରତ୍ୟେକ ପଶୁଜାତି ସହିତ ଆମେ ଘନିଷ୍ଠ ଭାବରେ ପରିଚିତ; କିନ୍ତୁ ଏପରି ଅଦ୍ଭୁତ ଆର୍ତ୍ତନାଦ ଆମେ ଶୁଣି ନ ଥିଲୁ । ପୁତ୍ର-ବିୟୋଗବିଧୁରା ମାତାର କ୍ରନ୍ଦନ ସହିତ ଆଗ୍ନେୟଗିରିର ଗର୍ଜନ ମିଶାଇଲେ ସେ ଆର୍ତ୍ତନାଦର ତୁଳନା ହୋଇପାରେ ।

ଆର୍ତ୍ତନାଦ ପରେ ପୁଣି ସେହି ଭୟାବହ ନୀରବତା । ଭୀତତ୍ରସ୍ତ ପଲେ ହରିଣ ଆମ ଦୁହିଁଙ୍କ ଅତି ନିକଟ ଦେଇ ଦୌଡ଼ି ପଳାଇଗଲେ । ପରେ ପରେ ପଲେ ହାତୀ ଓ ତା' ପଛରେ ପ୍ରାୟ ଛ'ଟା ବାଘ ମଧ ଦୌଡ଼ି ପଳାଇଲେ । ଆମେ ନିକଟସ୍ଥ ଗୋଟାଏ ଗଛ ଉପରକୁ ଉଠିଗଲୁ । ଅଜ୍ଞାତ ଭୟରେ ଆମର ଛାତି ଥରୁଥାଏ । ମୁଁ ଆଲୁଅ ଜଳାଇବାକୁ ଯାଉଥିଲି, ପ୍ରବୀର ବାଧା ଦେଇ କହିଲା ଚୁପ୍ କରି ବସି ରହିବାକୁ । ପ୍ରଚଣ୍ଡ ଶୀତରେ ମଧ ଆମ ଦେହରୁ ଝାଳ ବୋହୁଥାଏ ।

କେତେକ୍ଷଣ ଏପରି ବସିଥିଲୁ ଖିଆଲ ନାହିଁ । ହଠାତ୍ ଚମକି ଦେଖିଲୁ ଅଦୂରରେ ଗୋଟାଏ ବୁଦା ଭିତରେ ଦୁଇଟି ନିଆଁହୁଲା । ପ୍ରତ୍ୟେକ ହୁଲା ଗୋଟିଏ ସାନ ଫୁଟବଲ୍ ଆକାରର । ଥରେ ଦୁଇଥର ନିଆଁ ପିଣ୍ଡୁଳା ଦୁଇଟି ଏପାଖ ସେପାଖ ହୋଇ ଆମ ଆଡ଼କୁ ମୁହାଁଇ ସ୍ଥିର ହୋଇ ରହିଲା ।

ସେ ନିଆଁ ପିଣ୍ଡୁଳା ଦେଖି ଆମ ଦୁହିଙ୍କର ଦେହରୁ ପାଣି ବୋହିବାକୁ ଲାଗିଲା । ଆମେ ଦୁହେଁ ଥରିବାକୁ ଲାଗିଲୁ । ଯେଉଁ ଡାଳରେ ଆମେ ଦୁହେଁ ବସିଥିଲୁ ତାହା ଭୂମିଠାରୁ ଅବଶ୍ୟ ଆଠ

ହାତ ଉଚ୍ଚରେ ହେବ; କିନ୍ତୁ ବେଶି ମୋଟ ନ ଥିବାରୁ ତାହା ଉପରେ ଆମର ସ୍ଥିତି ଦୃଢ଼ ନ ଥିଲା । ଆମେ ଅନ୍ୟ ଗୋଟିଏ ଗୋଟିଏ ଡାଳ ଦୃଢ଼ଭାବରେ ଧରି ବସିଥିଲୁ; କିନ୍ତୁ ସେ ଅଦ୍ଭୁତ ନିଆଁପିଣ୍ଡୁଳା ଦେଖି ଆମେ ଏତେ ଥରିବାକୁ ଲାଗିଲୁ । ଯେ ପ୍ରତ୍ୟେକ ମୁହୂର୍ତ୍ତରେ ପଡ଼ିଯିବାର ଭୟ ହେଉଥାଏ, ଅନ୍ୟ ଡାଳ ଉପରେ ଆମର ବାହୁବେଷ୍ଟନୀ ଶିଥିଳ ହୋଇ ଆସୁଥାଏ । ପ୍ରବଳ ଭୟହେତୁ ଆମର ଚିନ୍ତାଶକ୍ତି ହରାଇ ବସିଥାଉଁ ।

ଏହି ସମୟରେ ନିଆଁପିଣ୍ଡୁଳା ଦୁଇଟି ଥରେ ଅଳ୍ପ ସମୟ ପାଇଁ ଲିଭିଯାଇ ପୁଣି ଜଳି ଉଠିଲା ଏଥର ପୂର୍ବଠାରୁ ଅଧିକ ଉଜ୍ଜ୍ୱଳ ଭାବରେ । ଏଥର ଆମେ ପାଗଳ ହୋଇଗଲୁ । ପ୍ରବୀର ଆଉ ସମ୍ଭାଳି ନ ପାରି ଅନ୍ଧାଧୁନ୍ଧିଆ ଗୁଳି ଫୁଟାଇ ଦେଲା । ନିଆଁପିଣ୍ଡୁଳା ଦୁଇଟି ପୁଣି ଲିଭିଗଲା । ଯେଉଁ ବୁଦାଟି ଭିତରୁ ସେ ନିଆଁ ଦିଶୁଥାଏ ସେ ବୁଦାଟି ଖସ ଖସ ଶବ୍ଦରେ ଥରି ଉଠିଲା ଏବଂ ତା'ପରେ କିଏ ଯେପରି ଅତି ଭାରି ପଦକ୍ଷେପରେ ଚାଲିଗଲା ।

କିଛିକ୍ଷଣ ପରେ ଆମେ ଟିକିଏ ସୁସ୍ଥତା ଅନୁଭବ କଲୁ । ପକେଟରୁ ରୁମାଲ ବାହାର କରି ମୁହଁ ହାତ ପୋଛି ଆମେ ବନ୍ଧୁକରେ ଗୁଳି ଭର୍ତ୍ତିକଲୁ । ପ୍ରବୀର ମୋ କାନରେ କହିଲା, ''ରମା; ଏତିକିବେଳେ ଚାଲ୍ ପଳେଇବା । ଗାଁ ତ ଏଠୁ ମାଇଲିଏ ଭିତରେ...''

ପ୍ରବୀରର କଥା ଶେଷ ହୋଇ ନାହିଁ, ପୁଣି ସେଇ ଅଟ୍ଟହାସ୍ୟ, ହୋଃ- ହୋଃ-ହୋଃ-ହୋଃ । ଏଥର ଅତି ନିକଟରେ, ମନେ ହେଲା ଯେମିତି ବୁଦାଭିତରୁ । କି ତୀବ୍ର ଓ ପ୍ରଚଣ୍ଡ ସେ ଶବ୍ଦ ! ମନେ ହେଲା ଯେମିତି କାନପରଦା ଫାଟିଗଲା । ସେ ଶବ୍ଦର ପ୍ରତ୍ୟେକ ତରଙ୍ଗ ଆମକୁ ଧକ୍କା ଦେଲାଭଳି ମନେ ହେଉଥାଏ । ଡାଳକୁ ପ୍ରାଣପଣେ ଜାପୋଟି ଧରି ବସୁ ବସୁ ଆମ ଦୁଇଜଣଙ୍କର ବନ୍ଧୁକ ତଳେ ପଡ଼ିଗଲା ।

ଓଃ ସେ କି ମୁହୂର୍ତ୍ତ !! ଆମର ସେତେବେଳେ ଟିକିଏ ହେଲେ ବି ମାନସିକ ବା ଶାରୀରିକ ଶକ୍ତି ନ ଥାଏ । ଯାହା କରୁଥାଉ ବା ଶୁଣୁଥାଉ ବା ଦେଖୁଥାଉ ତାହା କେବଳ ପ୍ରବୃତ୍ତି ହେତୁରୁ । ଏକଦମ୍ ପାଗଳ ହୋଇ ନ ଥାଉ, ଯାହା ଦେଖୁଥାଉ ବା ଶୁଣୁଥାଉ ତାକୁ ବିଚାର କରିବାର କ୍ଷୀଣ ଶକ୍ତି ଥାଏ । ଆଉ ସେଇ ବିଚାରଶକ୍ତି ହୋଇଥାଏ ଅତି ପୀଡ଼ାଦାୟକ । ଏକଦମ ପାଗଳ ହୋଇ ଯାଇଥିଲେ ବରଞ୍ଚ ଢ଼େର ଭଲ ହୋଇଥାଆନ୍ତା ସେତେବେଳେ !! ଏପରି ଦୁର୍ବିସହ ଭାବରେ ଭୟାବହ ସେ ପରିସ୍ଥିତି ।

ଭଗବାନ ବୋଲି ଯଦି କେହି ସତରେ ଥାଆନ୍ତି (ଯେଉଁମାନେ ଅଛନ୍ତି ବୋଲି କହୁଚନ୍ତି ସେମାନଙ୍କ କଥା ଯଦି ସତ ହୁଏ, ) ଏବଂ ଘାସପତରଟିଏ ହଲିବାଠାରୁ ଯାବତୀୟ ଘଟଣାର ନିୟନ୍ତା ଯଦି ସେ ହୁଅନ୍ତି, ତେବେ ତାଙ୍କ ବିଷୟରେ ମୋର କିଛି ଖେଦୋକ୍ତି ଏଠି କହି ରଖେ । ଆପଣ ଯଦି କେବଳ ନିଛକ ଘଟଣାଟି ଶୁଣିବାକୁ ବ୍ୟଗ୍ର ହେଉଥାଆନ୍ତି, ତେବେ ଏତକ ବାଦ୍ ଦେଇ ପାରନ୍ତି; କିନ୍ତୁ ଘଟଣାବଳୀରୁ ଯଦି କିଛି ତତ୍ତ୍ୱ ନିରୂପଣ କରିବାକୁ ବ୍ୟଗ୍ରତା ଥାଏ, ତେବେ ମୋ କଥା ବିଚାର କରି ପରେ ଦେଖିବେ । ବୁଦ୍ଧ, ଯୀଶୁଖ୍ରୀଷ୍ଟ, ମହମ୍ମଦ, ଚୈତନ୍ୟ, ପରମହଂସ, ବିବେକାନନ୍ଦ, ରବୀନ୍ଦ୍ରନାଥ,ଗାନ୍ଧିଜୀ ଆଦି ମହାବିପ୍ଳବୀମାନେ (ସେମାନେ ହିଁ କେବଳ ବିପ୍ଳବୀ -ରାଜନୈତିକ, ଯୁଦ୍ଧବିଶାରଦ ବା ଶିଳ୍ପପତି ନୁହନ୍ତି- କାରଣ ସେମାନେ ମଣିଷ ମନକୁ ଏକ ନୂଆ ବାଟରେ ପକାଇ ପାରିଛନ୍ତି ) କହନ୍ତି ଭଗବାନଙ୍କ ଉପଲବ୍ଧି ଜୀବନର ଚରମ ପରିଣତି; କାରଣ କେବଳ ସେଇହିଁ

ସବୁଠାରୁ ଉତ୍କୃଷ୍ଟ, କିନ୍ତୁ ମୁଁ କହେ; ଅନ୍ତତଃ ପରବର୍ତ୍ତୀ ଘଟଣାରୁ ଏହା ସତ୍ୟ ବୋଲି ମନେ ହୁଏ । ଭଗବାନଙ୍କର ସ୍ଥାନ-କାଳ-ପାତ୍ର-ଜ୍ଞାନ ନାହିଁ । ଅଥବା; କୁରୁକ୍ଷେତ୍ର ଭଳି ମହାଯୁଦ୍ଧବେଳେ କଠିନ ଦର୍ଶନ ବିଷୟରେ ଦୀର୍ଘ ବକ୍ତୃତା ଯିଏ ଦେଇଥିଲେ ତାଙ୍କ ପକ୍ଷରେ ଏହା ବିଚିତ୍ର କଅଣ !

ଆମେ ଯେତେବେଳେ ଏପରି ଭୟାବହ ପରିସ୍ଥିତିରେ ପଡିଥାଉ, ସେତେବେଳେ ଆଉ ଏକ ବିପଦ ଭଗବାନଙ୍କ କ୍ରୁର ପରିହାସ ରୂପେ ଦେଖାଦେଲା । ଆମେ ଯେଉଁ ଡାଳକୁ ଆଶ୍ରୟ କରି ବସିଥାଉ ସେଇ ଡାଳରେ, ଆମର ଟିକିଏ ଆଗରେ, ଦୁଇଟି ଜୁଳୁଜୁଳିଆ ପୋକଭଳି କଅଣ ଆଗେଇ ଆସୁଥାଏ ଆମ ଆଡକୁ । ଦୁର୍ଭାଗ୍ୟବଶତଃ, ମୁଁ ଆଗରୁ କହିଚି କ୍ଷୀଣ ଭାବରେ ହେଲେ ବି ଆମର ବିଚାରଶକ୍ତି ତଥାପି ଥାଏ । ମନେ ମନେ ବିଚାରକରି ଦେଖିଲୁ ଯେ ସେ ଦୁଇଟି ଜୁଳୁଜୁଳିଆ ପୋକ କଦାପି ହୋଇ ନପାରେ; କାରଣ ଗୋଟିକଠାରୁ ଅନ୍ୟଟିର ଦୂରତ୍ୱ ସର୍ବଦା ସମାନ ରହିଚି । ତେବେ ନିଶ୍ଚୟ କୌଣସି ଜୀବ ! ସେତେବେଳକାର ପରିସ୍ଥିତିରେ ସାମାନ୍ୟ ଗୋଟିଏ ପିମ୍ପୁଡି ଚଢ଼ିଗଲେ ମହାବିପଦ ବୋଲି ମନେ ହେଉଥାଏ । ସେଥିରେ ପୁଣି ଏ ଏକ ଜୀବ ଯାହାର କ୍ଷୁଦ୍ର ଆଖି ଯୋଡିକ ଜାଜ୍ୱଲ୍ୟମାନ !!

ପ୍ରବୀର ଭୟରେ ଚିତ୍‌କାର କରି କହିଲା; ''ମୁଁ ଜାଣେ, ଏ ଟାରାଣ୍ଟୁଲା, ଟାରାଣ୍ଟୁଲା ! ହେ ଭଗବାନ୍ ! ପ୍ରବୀର ପ୍ରାଣିବିଜ୍ଞାନରେ ଡକ୍ଟର ଉପାଧିଧାରୀ । ତାହାର ଜ୍ଞାନୋଦୟରେ ସେ ନିଜେ କେବଳ ଭୟ ପାଇଲାନାହିଁ, ମୋତେ ବି ଭୟାତୁର କରିଦେଲା । ଟାରାଣ୍ଟୁଲା କଅଣ ମୁଁ ଜାଣିଥିଲେ ବି ପଚାରିଲି, ସେ କି ଜୀବ, କଅଣ ମାରାତ୍ମକ ସେ ? ଜ୍ଞାନ ଆହରଣ କରିବା ପାଇଁ ମୋର ଏ ପ୍ରଶ୍ନ ନ ଥିଲା; ଏ କଥା ପ୍ରବୀରର ବୁଝିବା ଉଚିତ ଥିଲା । ଅଥବା, ମଣିଷ ଯେତେ ବିପଦରେ ପଡିଲେ ମଧ୍ୟ ଅନ୍ୟଠାରୁ ସେ ଧନ-ମାନ-ଜ୍ଞାନରେ ବଡ, ଏହା ପ୍ରମାଣ କରିବାର ସୁଯୋଗ ପାଇଲେ ତାହାର ପୂର୍ଣ୍ଣ ବିନିଯୋଗ କରେ ।

ପ୍ରବୀର ମୋତେ ବୁଝାଇବାକୁ ଲାଗିଲା; ''ଟାରାଣ୍ଟୁଲା ଏକ ପ୍ରକାଣ୍ଡ ବଡ ବିଷାକ୍ତ ବୁଢ଼ିଆଣୀ । ସେ କାମୁଡିଲେ ବିଷର ପ୍ରକୋପରେ ମଣିଷ ନାଚି ନାଚି ମରେ ।''

ବନ୍ଧୁକ ତ ହାତରୁ ପଡି ଯାଇଚି, ହାତରେ ଆଉ କୌଣସି ଅସ୍ତ୍ର ନ ଥାଏ । କେବଳ କାନ୍ଧରୁ ଝୁଲୁଥାଏ ଲମ୍ବା ଟର୍ଚ୍ଚବତୀ । ଟାରାଣ୍ଟୁଲା ଧୀରେ ଧୀରେ ଆଗେଇ ଆସୁଥାଏ, ତା'ର ଜ୍ୱଳନ୍ତ ଦୃଷ୍ଟି ଆମ ଆଡେ ସ୍ଥିର ରଖି । ତେବେ କଅଣ ଏପରି ପରିସ୍ଥିତିରେ ଆମକୁ ନାଚିବାକୁ ପଡିବ । ଭଗବାନଙ୍କର ଏ କଅଣ କ୍ରୁର ପରିହାସ ନୁହେଁ ? ତେବେ ମୁଁ ତାଙ୍କୁ ମଙ୍ଗଳମୟ, ଆର୍ତ୍ତତ୍ରାଣ କହିବି କାହିଁକି ?

'ଆତଙ୍କନାଶନ ତୋ ବାନା
ବାରେ ତୁ ହୁଅ ବଜ୍ରସେନ୍‌ହା' ,

ଗଜ କୁମ୍ଭୀର ଦାଉରେ ପଡିଥିଲା ବେଳେ- ଏହା ବୋଲି ଯେତେବେଳେ ସ୍ତୁତି କଲା, ସେତେବେଳେ ଭଗବାନ୍ କୁଆଡେ ସୁଦର୍ଶନ ଚକ୍ର ପେଶି ତାକୁ ଆଦେଶ ଦେଲେ -

''ଚକ୍ର ତୁ ଅତି ବେଗେ ଯିବୁ,
କୁମ୍ଭୀର ତଣ୍ଟିରେ ପଡିବୁ;
ଛିଣ୍ଡିବ ଖଣ୍ଡ ଖଣ୍ଡ ହୋଇ,
ମୋ ଗଜ ଦେବୁ ମୁକୁଳାଇ ।''

ଆଉ ତାହା ମଧ୍ୟ କୁଆଡେ ଘଟିଥିଲା ବୋଲି ଅତିବଡି ଜଗନ୍ନାଥ ଦାସ ଲେଖିଛନ୍ତି; କିନ୍ତୁ ଏ ଆତଙ୍କ-ନାଶନ, ନା ଆତଙ୍କବର୍ଦ୍ଧନ କାମ ? ହଁ, ଆପଣ କହି ପାରନ୍ତି, ଆମେ ଯାଇଥିଲୁ କ୍ରୀଡାଛଳରେ ନିରୀହ ଜନ୍ତୁବଧ କରି ସେମାନଙ୍କର ମୃତ୍ୟୁଯନ୍ତ୍ରଣାରେ ଉଲ୍ଲସିତ ହେବାକୁ, ତେଣୁ ଆମର ଏହା ପ୍ରାପ୍ୟ । ସେ ଶିକ୍ଷା ଅନ୍ୟ ପରିସ୍ଥିତିରେ ଏବଂ ଏମିତି ବୁଲେଇ ନ ଦେଇ ସିଧାସଳଖ ଭାବରେ ଦେଇଥିଲେ ଅଧିକ ବୁଦ୍ଧିମତ୍ତାର ପରିଚୟ ମିଳନ୍ତା ଓ ଶିକ୍ଷା ନିଶ୍ଚିତ ଫଳପ୍ରଦ ହୁଅନ୍ତା । ଅନେକ କହନ୍ତି ପୂର୍ବଜନ୍ମର ପାପରୁ ଏ ଜନ୍ମରେ ଅନେକ କୁଷ୍ଠାଦ ନାନା ରୋଗରେ ଯନ୍ତ୍ରଣା ପାଆନ୍ତି । ଯେତେ କହିଲେ ବି ମନ ମାନେ କି ?

ଟାରାଣ୍ଟୁଲା ଧୀରେ ଧୀରେ ଆଗେଇ ଆସୁଥାଏ । ଚରମ ବିଷାଦରେ କୁଆଡେ ମଣିଷ ନିରୁପାୟଭାବରେ ହସେ । ପ୍ରବୀର ବୋଧହୁଏ ସେଇ ହସ ହସିଲା । ଆଉ ମଣିଷ ବି ବୋଧହୁଏ ସେତେବେଳେ ଦାର୍ଶନିକ ହୋଇଯାଏ;କାରଣ ମୁଁ ଭାବୁଥାଏ, ଏତେ ବୀଭତ୍ସ, କଦାକାର, ବିଷାକ୍ତ ଜୀବର ସୃଷ୍ଟିର କି ଉଦ୍ଦେଶ୍ୟ ଥାଇପାରେ । ଭଗବାନ କଅଣ ସତେ ଏସବୁ ସୃଷ୍ଟି କରୁଛନ୍ତି ! ଯିଏ ଏପରି ବୀଭତ୍ସଜୀବ କଳ୍ପନା କରି ପାରିଚନ୍ତି ସେ ନିଶ୍ଚୟ ସେପରି ନ ହୋଇଥିବେ କାହିଁକି ? କିନ୍ତୁ କିଏ ଯେପରି ମୋର ମନରେ ଥାଇ ଉତ୍ତର ଦେଲା, ତା ଯଦି କହ, ତେବେ ମଣିଷ କଅଣ ଊଣା ବୀଭତ୍ସ, କଦାକାର, ବିଷାକ୍ତ କି ? ଏଇ ମଣିଷ ଅର୍ଥ, ଯଶ, ମାନ, ପ୍ରତିପତ୍ତିପାଇଁ, ଏବଂ କିଛି ନ ପାଇ ମଧ, କେତେ କ୍ରୁର ହତ୍ୟା ନ କରୁଚି, କେତେ ବିଷାକ୍ତ ଅସ୍ତ୍ର ଉଦ୍ଭାବନ ନ କରୁଚି, କେତେ ଶଠତା ଉଦ୍ଭାବନ ନ କରୁଚି, ଅନ୍ୟକୁ କେତେ ନଚେଇ ନଚେଇ ନ ମାରୁଚି ? କହ ? ! ଏହାର ଉତ୍ତର ଦିଅ ! କିଛି ଉତ୍ତର ଦେଇ ପାରିଲି ନାହିଁ, ଅନ୍ତତଃ ଆଜିକାଲିକାର ପରିସ୍ଥିତି ଏ ଅଭିଯୋଗ ପ୍ରମାଣ କରୁଚି । ବଡ ବଡ କଥା କହି ସବୁ ସୁଖ ମାରି ନେଇ ଅନ୍ୟକୁ ସତ୍ ସ୍ୱାର୍ଥତ୍ୟାଗୀ ହେବାକୁ ଉପଦେଶ, ନ ହେଲେ ମାଡ ! ଭାବୁ ଭାବୁ ଟିକିଏ ଅନ୍ୟମନସ୍କ ହୋଇ ଯାଇଥିଲି । ହଠାତ୍ ଆଖି ପଡିଗଲା ଟାରାଣ୍ଟୁଲା ଉପରେ । ଦେଖିଲି ଆମର ଅତି ନିକଟରେ ସେ ।

ଦଶମୀର ଚାନ୍ଦ ସେତେବେଳକୁ ଉଇଁ ସାରିଥାଏ । ପ୍ରତ୍ୟେକ ଗଛର ପତ୍ରେ ପତ୍ରେ ଅଜସ୍ର ମୁକ୍ତାବିନ୍ଦୁ ଝଲସୁଥାଏ । ଗୋଟାଏ କୋଇଲି ହଠାତ୍ ନିଦରୁ ଉଠି ଏ ଦୃଶ୍ୟ ଦେଖି ଆନନ୍ଦରେ ଅଧୀର ହୋଇ ଗାଇବାକୁ ଲାଗିଲା କୁହୂ କୁହୂ କ-ଉ-ଉ-ହୂ । ଆଉ ଗୋଟାଏ ପକ୍ଷୀ ' ପିୟୁ କାହାଁ ହେ,, ପିୟୁ କାହାଁ ହେ ' କହୁ କହୁ ଉଡିଗଲା, ସେଇ ଅଦେଖା ଅପହଞ୍ଚର ଚିର ଅନ୍ୱେଷଣରେ ବୋଧହୁଏ ଦୂରରୁ ଅତି କ୍ଷୀଣକଣ୍ଠରେ ଅଥଚ ସ୍ୱଷ୍ଟ ଭାବରେ ଭାସି ଆସିଲା ଉଦାତ୍ତ ସ୍ୱରରେ ଗୀତ-

କୋଟି ସୂର୍ଯ୍ୟ କିରୀଟମ୍, ଲଲାଟେ
କସ୍ତୁରୀ ତିଲକମ, ପଦ୍ମନାଭମ୍ ସୁନ୍ଦରମ୍...

ଗୋଟାଏ ହୁଁ ହାଁ ପକ୍ଷୀ ଆମର ମୁଣ୍ଡ ଉପର ଡାଳରୁ କହି ଉଠିଲା ହୁମ୍, ହୁଁ ଉଁ ଉଁ ଉଁ ଉଁ ହୁଁ ଃ..

ଟାରାଣ୍ଟୁଲାର ଧୀର, ଭୀତିପ୍ରଦ ଭାବରେ ଧୀର ଗତି ଥମକି ଗଲା । ତା'ର ବୀଭତ୍ସ ଉଜ୍ଜ୍ୱଳ ଦୃଷ୍ଟି କିନ୍ତୁ ଆମ ଉପରେ ସ୍ଥିର ରହିଲା । ଆମେ ମଧ୍ୟ ମନ୍ତ୍ରମୁଗ୍ଧଭାବରେ ଅନାଇ ରହିଲୁ ତା ଆଡେ ଅପଲକ ଦୃଷ୍ଟିରେ, କଷ୍ଟରେ ଆଖିରୁ ପାଣି ଝରିପଡୁଥିଲେ ମଧ୍ୟ ।

ଚମକି ପଡିଲି ପ୍ରବୀରର ଧୀର ଆଙ୍ଗୁଳି ସ୍ପର୍ଶରେ । ପ୍ରବୀର ହାତଠାରି ଦେଖାଇଦେଲା

ସେଇ ବୁଦାଆଡେ । ପୁଣି ସେଇ ଅଗ୍ନିପିଣ୍ଡ ଯୋଡିକ ! ଏଥର ସେ ଯୋଡିକ ଧୀରେ ଧୀରେ ଉଠିବାକୁ ଲାଗିଲା । ଏବଂ ଉଠୁଉଠୁ ଆମ ଆଡକୁ ଧୀରେ ଧୀରେ ଆଗେଇବାକୁ ଲାଗିଲା ।

ନିଆଁପେଣ୍ଡୁ ଯୋଡିକ ଯେତେବେଳେ ଭୂମି ଉପରୁ ସାତଆଠ ଫୁଟ ଉଚ୍ଚରେ, ସେତେବେଳେ ଆମେ ବୁଝିପାରିଲୁ ଯେ ସେ ଦୁଇଟି ଏକ ଅଦ୍ଭୁତ ଜୀବର ଦୁଇଟି ଆଖି । ଅସ୍ପଷ୍ଟ ଜହ୍ନ ଆଲୁଅରେ ସେ ଜୀବର ଅଣ୍ଟାଠୁ ଉପରକୁ ଦିଶୁଥାଏ । ଆଉ କିଛି ଦେଖି ନ ପାରିଲେ ମଧ୍ୟ ତା'ର ଦେହଯାକ ଯେ ବଡ ବଡ ବାଳରେ ପୂର୍ଣ୍ଣ ତା ସ୍ପଷ୍ଟ ଅନୁମାନ କରିପାରୁଥିଲୁ ।

ଆଉ ଦୁଇତିନି ହାତ ଆଗେଇ ଆସିବାପରେ ସେ ଏଥର ବୋଧହୁଏ ଦଣ୍ଡାୟମାନ ହେଲା । ସେତେବେଳେ ସେ ଥାଏ ଆମଠୁ ପ୍ରାୟ ଚାରି ପାଞ୍ଚ ହାତ ଛଡାରେ । ତା'ର ସେଇ ପ୍ରକାଣ୍ଡ ଆଖିଯୋଡିକ ପ୍ରାୟ ଆମ ସାମନାରେ, ଅତି ନିକଟରେ । ହାତଯୋଡିକ ତା'ର ଦୁଇଟି ପ୍ରକାଣ୍ଡ ଶାଳଖମ୍ବ ପରି କାନ୍ଧରୁ ଝୁଲୁଥାଏ । ଯେ କୌଣସି ମୁହୂର୍ତ୍ତରେ ସେ ଆମକୁ ଧରି ପିମ୍ପୁଡି ଭଳି ଦଳି ଦେଇପାରେ ।

ଟାରାଣ୍ଟୁଲା ସେତେବେଳେ ତା'ର ଉଜ୍ଜ୍ୱଳ ନୀଳାଭ ଆଖି ଯୋଡିକ ଆମ ଉପରେ ନିବଦ୍ଧ ରଖି ଆଉ ଟିକିଏ ଘୁଞ୍ଚି ଆସିଲା । ଉପରକୁ ତଳକୁ ଓ ବାମକୁ ଡାହାଣକୁ ତା'ର ଗୋଲ ଗୋଲ ଆଖି ଯୋଡିକ ଦି ଚାରିଥର ବୁଲାଇ ଆମ ଉପରେ ପୁଣି ସ୍ଥିର କଲା । ହୁଁ- ହାଁ ପକ୍ଷୀଟା ପୁଣି ରାବିଲା ହୁଁ, ହୁଁ, ହୁଁ, ହୁଁ । ଆମର ଠିକ୍ ମନେ ହେଲା ବଦମାସ୍ ବିଶ୍ୱାସଘାତକ ପେଚା ଯେମିତି ଏଇ ଦୁଇ ଅଦ୍ଭୁତ ଜୀବକୁ ଉତ୍ସାହ ଦେଉଥାଏ ଆମକୁ ମାରି ଦେବାକୁ । ମନେ ମନେ ପ୍ରତିଜ୍ଞା କଲି, ଏଥିରୁ ଯଦି ନିସ୍ତାର ପାଏ ତେବେ ମୋର ଜୀବନର ଏକମାତ୍ର ବ୍ରତ ହେବ ପେଚାବଂଶ ଧ୍ୱଂସକରିବା । ମନର ଗତି ମନ ହିଁ ଜାଣେ ।

ଅଗ୍ନିକନ୍ଦୁକାକ୍ଷ ଜୀବ ପାଦ ପକାଇ ଆଗେଇ ଆସିଲା । ତା'ର ପ୍ରତି ପଦକ୍ଷେପରେ ଆମ ଗଛ ଥରି ଉଠିଲା । ତା'ର ଆଖି ଆମ ଆଖିଠାରୁ କେବଳ କେତେ ଇଞ୍ଚ ଛଡା ମାତ୍ର । ତା'ର ନିଃଶ୍ୱାସ ଆମ ମୁଣ୍ଡ ଉପରେ ପଡୁଥିବାରୁ ଆମ ଟୋପି ଉଡିଯାଇ ମୁଣ୍ଡବାଳ ଉଡିବାକୁ ଲାଗିଲା । ଟାରାଣ୍ଟୁଲା ସେତେବେଳେ ଆମଠାରୁ ଦୁଇତିନି ଇଞ୍ଚ ଛଡ଼ାରେ ମାତ୍ର । ଆମେ ସ୍ପଷ୍ଟ ଦେଖିଲୁ ସେ ତା'ର ସାମନା ଦାନ୍ତ ଦୁଇଟିକୁ ସାମନା ଗୋଡ଼ ଦୁଇଟିରେ ଘଷୁଥାଏ । ଆମକୁ କାମୁଡ଼ିବା ଆଗରୁ ଦାନ୍ତ ପଜାଉଥାଏ ବୋଧହୁଏ । ଗୋଟାଏ ଅଦ୍ଭୁତ ଚର୍‌ର ଚର୍‌ର ଶବ୍ଦ ହେଉଥାଏ ।

ଏହି ସମୟରେ ନିକଟରେ ମଣିଷ କଣ୍ଠର ଆହ୍ୱାନ ଶୁଣାଗଲା, ସୁକଣ୍ଟକ ! ଛିଃ, ଆସ ସଖା, ଏ କଅଣ !!

ଉଃ । କି ଅଦ୍ଭୁତ ସେ ପରିସ୍ଥିତି । ଭୟ ସାଙ୍ଗକୁ ମିଶିଲା ଏକ ଆଶ୍ଚର୍ଯ୍ୟ ଭାବ ! କିଏ ଏ !! ଦେବ ନା ମାନବ !! ଦେବତା ଯଦି ହୁଏ, ତେବେ ଆମର କଅଣ କରିବା ଉଚିତ, କିପରି ଭାବରେ ଅଭିବାଦନ କରିବା ଉଚିତ । ମନ୍ତ୍ରୀ ବା ସେକ୍ରେଟାରୀ ବା କଲେକ୍ଟରଙ୍କ ସାମ୍‌ନାରେ କିପରି ଗୋଡ଼ ଭାଙ୍ଗି ହାତଯୋଡ଼ି (ମାନସିକ ଓ କାୟିକ) ଛିଡ଼ାହେବାକୁ ହୁଏ ଏବଂ ନ ହେଲେ କି ପରିଣତି ଘଟେ, ତାହା ଆମ ଉତ୍ତମରୂପେ ଶିକ୍ଷା ପାଇଚୁ ଏବଂ ସେଥିରେ ଆମେ ଅଭ୍ୟସ୍ତ; କିନ୍ତୁ ଦେବତାଙ୍କ ପାଖରେ କଅଣ ସେହିପରି ବ୍ୟବହାର କରିବାକୁ ହେବ ?

ଏଥର ଅତି ନିକଟରେ ଡ଼ାକ ଆସିଲା, ଆସ ବନ୍ଧୁ ସୁକଣ୍ଟକ, ଆସ ମୋ ସହିତ ଖେଳିବ ।

ଏମାନେ ତୁମର କ୍ରୀଡ଼ା ବୁଝିପାରିବେ ନାହିଁ !!

ପୁଣି ଗଗନ ପବନ ମନ୍ଥନ କରି ସେଇ ଅଟ୍ଟହାସ୍ୟ । ହୋଃ-ହୋଃ-ହାଃ-ହାଃ-ହାଃ-ହାଃ-ହାଃ-ହାଃ-ଫଡ଼ ଫଡ଼ କରି ଓହ୍ଲାଇ ଆସି ଟାରାଣ୍ଟୁଲାଟାକୁ ଝାମ୍ପି ନେଇଗଲା ଗୋଟାଏ ପେଚା । ତା ପ୍ରତି କୃତଜ୍ଞତାରେ ମନ ଭରିଗଲା ।

ସେ ଅଟ୍ଟହାସ୍ୟ ଧକ୍କାରେ ଆମେ ତଳେ ପଡ଼ିଗଲୁ । ପଡ଼ିଗଲା ପୂର୍ବରୁ ଆମର ଯେତିକି ଜ୍ଞାନ ଥିଲା, ସେଥିରେ ଦେଖିଲୁ ଜଣେ ମନୁଷ୍ୟ ସୁକଣ୍ଟକ ନାମକ ସେଇ ବିଭତ୍ସ ଜୀବର ହାତ ଧରି ଗାଇ ଗାଇ ଯାଉଛି-

''ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତଃ,
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।''

ତା'ପରେ କଅଣ ଘଟିଛି ଆମେ ଜାଣୁନା ।

• • •

ପରଦିନ ସକାଳେ ଆମେ ଯେତେବେଳେ ଉଠିଲୁ , ଦେଖିଲୁ ଆମେ ଏକ କୁଡ଼ିଆ ଭିତରେ ଶୋଇଛୁ । ଆଖି ମଳି ଉଠି ଆମେ ପୂର୍ବକଥା ସ୍ମରଣ କରିବାକୁ ଚେଷ୍ଟା କଲୁ । କିଛି ସ୍ପଷ୍ଟ ମନେପଡ଼ିଲା ନାହିଁ । କେବଳ ଦୂରରୁ ଭାସି ଆସିଲାପରି କାନରେ ଶୁଭିଲା, ଯଦା ଯଦା ହି... । ପ୍ରବୀର ହାତ ଯୋଡ଼ି ନମସ୍କାର କଲା । ତାହାର ପ୍ରାଣିତତ୍ତ୍ୱରୁ ସେ କି ନୂତନତତ୍ତ୍ୱ ପାଇଲା କେଜାଣି, ନିରୀଶ୍ୱର ଓ ବସ୍ତୁବାଦୀ ବୈଜ୍ଞାନିକ ପ୍ରବୀରକୁ ମୁଁ ଅଜ୍ଞାତର ଉଦ୍ଦେଶ୍ୟରେ ନମସ୍କାର କରିବାର ଦେଖି ବଲ ବଲ କରି ଚାହିଁଲି ।

ବାହାରକୁ ଆସି ଆମେ ଦେଖିଲୁ ଆମେ ଯେଉଁଠି ଅଛୁ ତା'ର ଚାରିପଟେ ନିବିଡ଼ ଜଙ୍ଗଲ । ସେ ଜଙ୍ଗଲ ଭିତରକୁ ଦଳ ଦଳ ହୋଇ ଯୁବକମାନେ ଯାଉଥାଆନ୍ତି ତେଣ୍ଟା, ବଲମ, ଖଣ୍ଡା, କଟୁରୀ ଆଦି ଅସ୍ତ୍ର ଧରି ଓ ଢୋଲ ମହୁରୀ ବଜାଇ, ମଝିରେ ମଝିରେ ଗୋଟାଏ ହିଂସ୍ର କିଳିକିଳା ଶବ୍ଦ କରି ସେମାନେ ଡେଉଁ ଥାଆନ୍ତି ।

ଏଇ ସମୟରେ ଦୂରରୁ ଶୁଭିଲା, ଭାଇମାନେ ମୋର ଫେରିଆସ ! ଫେରିଆସ !

ଅନାଇ ଦେଖିଲୁ -ଏକ କମନୀୟକାନ୍ତି ଯୁବକ । ମୁହଁରେ ତାଙ୍କର ସ୍ନିଗ୍ଧ ହାସ୍ୟ, ହସ୍ତରେ କମଣ୍ଡଳୁ, ଅଙ୍ଗରେ କୌପୀନ ବ୍ୟତିରେକ ଆଉ କିଛି ନାହିଁ ।

ଯୁବକମାନେ ଅମକି ଛିଡ଼ାହେଲେ । ମନରେ ସେମାନଙ୍କର ଦ୍ୱିଧା । କ୍ରମେ କ୍ରମେ ଗୋଟି ଗୋଟି ହୋଇ ସେମାନେ ଫେରିଲେ ଯୁବକଆଡ଼େ । ନବାଗତ ଯୁବକକୁ ଘେରି ସେମାନେ ପଚାରିଲେ, କାହିଁକି ଡ଼ାକିଲ ତୁମେ ? ତୁମେ କିଏ ?

କୁଆଡ଼େ ଯାଉଚ ଭାଇମାନେ ? ଯୁବକ ପଚାରିଲେ ।

ଆମେ ଯାଉଚୁ ଗୋଟାଏ ଦାନବକୁ ମାରିବାକୁ ।

ମନର ଦାନବକୁ ଆଗେ ମାର, ତା'ପରେ ବାହାରର ଦାନବ ମାରିବ, ଯୁବକ ସ୍ନିଗ୍ଧ ଅଥଚ ଦୃଢ଼କଣ୍ଠରେ କହିଲେ ।

ଆମେ ସେ ସବୁ ବୁଝୁନା, ସେ ସବୁ ବାଜେ କଥା, ଆମେ ତାକୁ ଆଜି ମାରିବୁ.....ମାରିବୁ....ତା'ର ମାଂସ ଆମେ ଖଣ୍ଡ ଖଣ୍ଡ କରି ଖାଇବୁ, ତା'ର ରକ୍ତରେ ଗାଧୋଇବୁ ।

ବଡ଼ ଶିକାର ମିଳିଚି ଆଜି । ଯୁବକମାନେ ଅସ୍ତ୍ର ସବୁ ନଚାଇ କିଳିକିଳା ନାଦ କରି ନାଚିବାକୁ ଲାଗିଲେ ।

ସେ ତ କା'ର କ୍ଷତି କରିନାହିଁ.... ଯୁବକ କହିଲେ ।

ତୁମେ ତାକୁ ଦେଖିଚ ? କେଉଁଠି ସେ ?

ବାଃ ପ୍ରତି ରାତ୍ରରେ ଦେଖୁଚି ତାକୁ । ଚାଲ, ତାକୁ ନ ମାରି ଏଇ ଗାଁର ଆଉ ଗୋଟିଏ ପୁଅ କରିନେବା, ଯୁବକ ସ୍ନିଗ୍ଧ ହାସ୍ୟ କରି କହିଲେ ।

ସେଇ ହିଂସ୍ର ଅସୁରକୁ ? ସମସ୍ତେ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲେ ସମସ୍ୱରରେ ।

ନିଶ୍ଚୟ, ଦୃଢ଼ତା-ବ୍ୟଞ୍ଜକ ସ୍ୱରରେ ଯୁବକ କହିଲେ ।

ଆମେ ଦୁହେଁ ସେତେବେଳକୁ ଅନ୍ୟମାନଙ୍କ ସହିତ ଯୋଗ ଦେଇଥାଉ । ମୁଁ ପଚାରିଲି, ସେ ହିଂସ୍ର ପଶୁ, ଆପଣଙ୍କ ଗୀତାରେ ତ ଭଗବାନ୍ କହିଚନ୍ତି ଶତ୍ରୁକୁ ଜୟ କରିବାକୁ ।

ଯୁବକଙ୍କ ଆଖି ଛଳଛଳ ହୋଇଗଲା । ସେ କହିଲେ, ବନ୍ଧୁ , ଏ ଭ୍ରାନ୍ତ ଧାରଣା । ଅର୍ଜୁନଙ୍କ ହିଂସା, ଦ୍ୱେଷ, ମାନ ଗର୍ବ, ଅହମିକା ଦୂର କରାଇ ସମ୍ପୂର୍ଣ୍ଣରୂପେ ଜ୍ଞାନୋଦୟ କରାଇ ଭଗବାନ୍ ଶ୍ରୀକୃଷ୍ଣ, ତାଙ୍କ ପାଦତଳେ ମୋର କୋଟି କୋଟି ନମସ୍କାର, କହିଲେ, 'ସଖା ଏଥର ତୁମେ ଯୁଦ୍ଧ କର ବା ନକର ତୁମ ଇଚ୍ଛା ।' ଆପଣ ଆଗେ ମନର ଦାନବମାନଙ୍କୁ ଜୟ କରନ୍ତୁ, ପରେ ବାହାରର ଦାନବ କଥା ଭାବିବେ । ଆଉ ଅସୁର ବା କିଏ ଭାଇମାନେ 'ବିଶ୍ୱସ୍ୟ ସ୍ରଷ୍ଟାରମ୍ ଅନେକରୂପମ୍ ।' ନାନା ରୂପରେ ସେ ଭିତରେ ଓ ବାହାରେ ଅଛନ୍ତି । ତାଙ୍କର ସବୁ ରୂପକୁ ମୋର କୋଟି କୋଟି ନମସ୍କାର । ଚାଲ ଭାଇମାନେ, ଆମେ ତାକୁ ଏ ଗାଁର ପୁଅ କରିନେବା, ଆମରି ପରି ଜଣେ ସେ ।

ମୁଁ ମନେ ମନେ କହିଲି, ଏସବୁ ପାଗଳାମି ।

ଜନତାଭିତରୁ କିନ୍ତୁ ଜଣେ ଉତ୍ସାହୀ ହୋଇ ପଚାରିଲା, ତା କି ସମ୍ଭବ ହୋଇପାରେ ?

ଯୁବକଙ୍କ ଆଖି ପୁଣି ଛଳଛଳ ହୋଇଗଲା, ସେ କହିଲେ, ଭଗବାନ୍ ଶ୍ରୀକୃଷ୍ଣ ମଦନଦହନ ନୁହନ୍ତି, ମଦନମୋହନ । ଆଉ ମୋହନଚାନ୍ଦ ଗାନ୍ଧି ମଧ୍ୟ ଏକଥା ପ୍ରମାଣକରି ଯାଇଛନ୍ତି । ଭିତରେ କୂଟନୀତି ରଖି ଛଳନାକଲେ ତା' ଅସମ୍ଭବ । ହେ ଅମୃତର ପୁତ୍ରମାନେ, ଧନ, ମାନ, କ୍ଷମତା, ପ୍ରତିପତ୍ତି ତୁମର ମାନବତ୍ୱର ବିକାଶ କରିବ ନାହିଁ, ଦାନବତ୍ୱ ବୃଦ୍ଧିପାଇବ । ହେ ଅମୃତର ପୁତ୍ରମାନେ, ତୁମେ କହ ଆମେ ଅମୃତର ପୁତ୍ର ।

କିଏ ଯେମିତି ଆମର କଣ୍ଠରେ ଥାଇ ଆମକୁ କୁହାଇଲେ; ଆମେ ଅମୃତର ପୁତ୍ର, ଆମେ ଅମୃତର ପୁତ୍ର । କଣ୍ଠରୁ ସେ କଥା ବାହାରିବା ପରେ ଦେହର ପ୍ରତି ଲୋମକୂପରେ ଏକ ଅପୂର୍ବ ଶିହରଣ, ଅଦ୍ଭୁତ ଆନନ୍ଦମୟ ସାହସର ସଞ୍ଚାର ହେଲା । ଆମେ ବାରମ୍ବାର ସେ କଥା କହି ଆନନ୍ଦରେ ଡ଼ଳିବାକୁ ଲାଗିଲୁ ।

ଯୁବକ ସେଇପରି ଧ୍ୟାନମଗ୍ନ । ଅଧରରେ ତାଙ୍କର ସ୍ମିତହାସ୍ୟ ସ୍ଥିରପ୍ରଭା ଭଳି ବିରାଜୁଥାଏ ।

# ନିମନ୍ତ୍ରଣ

ଚିଠି ପଢ଼ ହୋ !

ରବୀନ୍ଦ୍ର ଚିଠିଟି ରେଣୁ ହାତକୁ ବଢ଼ାଇ ଦେଲା । ରେଣୁ ଚିଠିଟି ପଢ଼ି ମୁଣ୍ଡରେ ହାତ ଦେଇ ଚୌକିରେ ବସି ପଡ଼ିଲା ଏବଂ ସାଙ୍ଗେ ସାଙ୍ଗେ ଚମକି ଉଠି ପଡ଼ିଲା । ଗୋଟିଏ ବଡ଼ ଦୁର୍ଘଟଣାରୁ ସେ ଅଳ୍ପକେ ବଞ୍ଚିଗଲା । ଘରେ ଏହି ଗୋଟିଏ ମାତ୍ର ଚୌକି । ବହୁଦିନ ଧରି ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ବିରୁଦ୍ଧରେ ଯୁଦ୍ଧ କରି ସେ କ୍ଷତ ବିକ୍ଷତ । ସେ ଆଉ ମନୁଷ୍ୟକୁ ପୃଥିବୀର ସେ ଅଦୃଶ୍ୟ ଶକ୍ତିରୁ ବଞ୍ଚାଇ ରଖି ଆରାମ ଦେବାକୁ ନାରାଜ । ଜାଳେଣି କାଠପାଇଁ ବ୍ୟବହାର କଲେ ଅଧିକତର ଲାଭପ୍ରଦ ଏବଂ ନିରାପଦ ହୁଅନ୍ତା; କିନ୍ତୁ ଘରେ ଚୌକି ଥିବାର ଯେଉଁ ଗର୍ବ ବା ସନ୍ତୋଷ ସେ ରେଣୁକୁ ଦେଉଚି, ତାହା ଯେ କୌଣସି ଚୌକିଦାରର ଗର୍ବ ବା ସନ୍ତୋଷଠାରୁ ଊଣାନୁହେଁ । ଏହି ଟିକିଏ ମାନସିକ ଦୁର୍ବଳତା ପାଇଁ ରେଣୁ ବହୁ କଷ୍ଟରେ ଯୋଡ଼ାଯୋଡ଼ି କରି ଚୌକିର ଚୌକିତ୍ୱ ବଜାଏ ରଖିଚି । ବସିବାକୁ ଗଲେ ପ୍ରଥମେ ଖୁବ ମନୋଯୋଗ ସହ ଚୌକିର ତତ୍‌କାଳୀନ ଶାରୀରିକ ଅବସ୍ଥା ପରୀକ୍ଷା କରି ଅତି ସନ୍ତର୍ପଣରେ ଶରୀର ଭାରର କେତେକ ଅଂଶମାତ୍ର ରଖିବାକୁ ହୁଏ । ରେଣୁ ଚିଠିଟି ପଢ଼ି ହଠାତ୍ ଦୁର୍ଭାବନାରେ ସବୁ ଭୁଲି ଯାଇଥିଲା ।

ଚିଠିଟି ଆସିଚି ତାର ସାନ ଭଉଣୀ ମଲ୍ଲିକା ପାଖରୁ । ଭଉଣୀ ବିବାହ କରିଚି ଖୁବ ଧନୀ ଘରେ । ତାର ସ୍ୱାମୀ ଧନଞ୍ଜୟ ବାବୁ ଧନୀର ଏକମାତ୍ର ପୁତ୍ର ଏବଂ ଉଚ୍ଚପଦସ୍ଥ କର୍ମଚାରୀ ମଧ୍ୟ । ବିବାହ ବାର୍ଷିକରେ ମଲ୍ଲିକା ରେଣୁ ଓ ରବୀନ୍ଦ୍ରକୁ ନିମନ୍ତ୍ରଣ ପଠାଇଚି । ଖାଲି ନିମନ୍ତ୍ରଣ ନୁହେଁ, ବହୁ ଅନୁନୟ ବିନୟ କରି ଯିବାକୁ ମଧ୍ୟ ଲେଖିଚି । ଏହା ପୂର୍ବରୁ ସେମାନେ ଅନେକ ଥର ନିମନ୍ତ୍ରଣ ପାଇଅଛନ୍ତି । ଆନନ୍ଦ ପରିବର୍ତ୍ତରେ ଏ ନିମନ୍ତ୍ରଣ ଦେଇଚି ମାନସିକ ଯାତନା । ପ୍ରତ୍ୟେକ ଥର ବହୁ ଆଲୋଚନା ପରେ ଗୋଟିଏ ବିଶ୍ୱାସଯୋଗ୍ୟ କାରଣ ଦର୍ଶାଇ ମାନସିକ ଯାତନା ଏଡ଼ାଇ ନ ପାରିଲେ ମଧ୍ୟ ନିମନ୍ତ୍ରଣ ଏଡ଼ାଇବାକୁ ସମର୍ଥ ହୋଇଚନ୍ତି । ଏଥର ଅଧିକ ଦୁଶ୍ଚିନ୍ତାର କାରଣ ହେଉଚି ଧନଞ୍ଜୟ ବାବୁ କିଛିକ୍ଷଣ ପରେ ନିଜେ ମଟର ନେଇ ଆସିବେ ନେବାକୁ । ରବୀନ୍ଦ୍ର ଓ ରେଣୁ ଥାଆନ୍ତି ତେଲେଙ୍ଗା ବଜାରର ଗୋଟିଏ ସଂକୀର୍ଣ୍ଣ ଗଳିର ଶେଷ ମୁଣ୍ଡରେ, ଗୋଟିଏ କ୍ଷୁଦ୍ର ଘର ଭଡ଼ା ନେଇ । ଗୃହର କ୍ଷୁଦ୍ରତା, ଗଳିର ସଂକୀର୍ଣ୍ଣତା ବା ସ୍ଥାନଟିର ଅସ୍ୱାସ୍ଥ୍ୟକାରିତା ସହିତ ଘର ଭଡ଼ାର କୌଣସି ସଂପର୍କ ଘର ମାଲିକ ରଖିନାହିଁ । ଧନଞ୍ଜୟ ବାବୁ ଥାଆନ୍ତି ଚୌଧୁରୀ ବଜାରରେ ନିଜର ପ୍ରାସାଦୋପମ ଅଟ୍ଟାଳିକାରେ ।

ରେଣୁ ଚୌକିର ପ୍ରତ୍ୟାଖ୍ୟାନ ନୀରବରେ ସହ୍ୟ କରି ପାରିଲାନାହିଁ । ଭୀଷଣ ରାଗରେ ସେ ଚୌକିକୁ ଗୋଟିଏ ଗୋଇଠା ମାରିବାକୁ ଯାଉଥିଲା । ରବୀନ୍ଦ୍ର ଆତଙ୍କିତ ହୋଇ ତାକୁ କୋଳକୁ

ଭିଡ଼ିନେଇ କହିଲା, ଏହିକ୍ଷଣି ସେମାନେ ଆସି ପହଞ୍ଚିଯିବେ ଯେ । ବସିବାକୁ ଦବ କଅଣ ? ଅଗତ୍ୟା ରେଣୁ ମୁଣ୍ଡରେ ହାତ ଦେଇ ତଳେ ବସି ପଡ଼ି କହିଲା, ''ଟିକିଏ ଆରାମ କରି ଦୁଶ୍ଚିନ୍ତା କରିବାର ଉପାୟ ନାହିଁ ଏ ଘରେ । ହେ ଭଗବାନ୍ ...କାହିଁକି...ଛି । ଅନେକ କ୍ଷଣପରେ ରବୀନ୍ଦ୍ରକୁ ସେ ଚାହିଁ କହିଲା, ଆଉ ଭାବୁଚ କଅଣ । ବସା ଛାଡ଼ି ପଳାଇଯିବା ଛଡ଼ା ଆଉ ଉପାୟ ନାହିଁ; କିନ୍ତୁ ସେଥର ଅଜୟ ବାବୁଙ୍କ ଘରକୁ ଏହିପରି ପଳାଇ ଯାଇ ଯେତେ ଖର୍ଚ୍ଚ ହେଲା ଏବଂ ଯାହା ଅପମାନ ପାଇଲି ତ ଜାଣ । କଅଣ କରିବି କହ । ଆଉ ସମୟ ନାହିଁ ଯେ ।''

ରବୀନ୍ଦ୍ର ହସି କହିଲା, ''ମୁଁ କହେ, କାହିଁକି ? ଏତେ ଲଜ୍ଜା କାହିଁକି ? ହୁଅନ୍ତୁ ନା ସେ ଧନୀ । ନିଜର ଅବସ୍ଥା ପ୍ରତି ଏତେ ଘୃଣା କାହିଁକି । ମୁଁ କହୁଚି, ଚାଲ ଏଥର ଯିବା । ତୁମର ଏ ଦୁର୍ବଳତା କେବଳ ନିଜକୁ ପୋଡୁଛି ସିନା କାହାରି କିଛି କ୍ଷତି କରୁନାହିଁ । ଧନୀମାନେ ତ ଶୋଷକ ।

ତୀବ୍ର ସ୍ୱରରେ ରେଣୁ କହିଲା, ''ତୁମର ସାମ୍ୟବାଦ ବିଷୟରେ ବକ୍ତୃତା ରଖ ।''

ମ୍ଳାନ ଭାବରେ ରବୀନ୍ଦ୍ର କହିଲା, ରାଣି ! ତୁମେ ବୁଝିବ ନାହିଁ ପୁଞ୍ଜିବାଦ କିପରି ସୁଶୃଙ୍ଖଳ ଭାବରେ ଖାଲି ଦୁନିଆର ଦାରିଦ୍ର୍ୟ ବଢ଼ାଉ ନାହିଁ, ଦରିଦ୍ରର ଲୋଭ ମୋହ ବଢ଼ାଇ ତାର ଆତ୍ମାକୁ ମଧ ମାରିଦେଉଚି । ଏ ସଭ୍ୟତାରେ ଏହା ହିଁ ସବୁଠାରୁ ପୀଡ଼ାଦାୟକ । ଏ ଦୁର୍ବଳତାକୁ ତୁମେ ବଢ଼ିବାକୁ ଦିଅନାହିଁ । ରେଣୁର ହାତ ଧରି ସେ ଉଠାଇ ହସି କହିଲା, କ୍ଷୁଦ୍ର ହୃଦୟ ଦୌର୍ବଲ୍ୟମ୍...

ରେଣୁ ବିଦ୍ରୂପର ହସ ହସି ଗାଇଲା, ମୋ ହାତ ଧରି ତୁମେ ନେଇ ଚାଲ ସଖା ମୁହିଁ ଯେ ପଥ ଚିହ୍ନେ ନା... କିନ୍ତୁ ଲୁଗା !! ରେଣୁ ପୁଣି ମୁଣ୍ଡରେ ହାତ ଦେଇ ବସି ପଡ଼ିଲା ।

କାହିଁକି ତୁମର ସେହି ସଫା ଶାଢ଼ୀ, ଯାହାକୁ ପିନ୍ଧିଲେ ତୁମକୁ...

-ସ୍ୱର୍ଗର ଅପ୍‌ସରୀ ଭଳି ଦିଶେ; କିନ୍ତୁ ଏପରି ଶାଢ଼ୀ ତ ମଲ୍ଲିକାର ଦାସୀମାନେ ବି ପିନ୍ଧନ୍ତି ନାହିଁ ।

-ଧନୀଲୋକେ ଏବଂ ତାଙ୍କର ଦାସୀ ଚାକର କିପରି ଶାଢ଼ୀ ଲୁଗା ପିନ୍ଧନ୍ତି, ତାହା ଅନୁସନ୍ଧାନ କରି ସେହି ଅନୁସାରେ ନିଜର ଶାଢ଼ୀ ଲୁଗାରେ ଖର୍ଚ୍ଚ କରିବି ନା କଅଣ !

ରେଣୁ ଆଉ ସମ୍ଭାଳି ପାରିଲା ନାହିଁ । ତା ଆଖିରୁ ଅଶ୍ରୁ ଅବିରଳ ଝରିବାକୁ ଲାଗିଲା । ରବୀନ୍ଦ୍ର ଗୋଟିଏ ଚୁମ୍ବନ ଦେବାକୁ ଯାଉଥିଲା । ରେଣୁ ଠେଲିଦେଇ କହିଲା, କାହିଁକି ଯେ ବାପା ମୋ ବେକରେ ପଥର ବାନ୍ଧିଲେ; କି ସୁଖ ମୁଁ ପାଉଚି... ଖାଲି ଦର୍ଶନ ଶୁଣୁଥିବି...

ରବୀନ୍ଦ୍ରକୁ ଏପରି ଅନେକ ଥର ଶୁଣିବାକୁ ହୋଇଚି । ଷାଠିଏଟି ଟଙ୍କାର କିରାଣୀ ସେ । ରେଣୁର ଆଶାନୁରୂପ ବ୍ୟୟ କରିବାକୁ ଗଲେ ଆୟ ଅନ୍ତତଃ ଚାରିଅଙ୍କ ବିଶିଷ୍ଟ ହେବା ଦରକାର । ପିଲା ପଢ଼ାଇ ଓ ଅନ୍ୟାନ୍ୟ ନାନା ଉପାୟ କରି ସୁଦ୍ଧା ରବୀନ୍ଦ୍ର ଆୟ ମାସକୁ ତିନି ଅଙ୍କକୁ ଆଣିପାରେନାହିଁ । ତାର ସମସ୍ତ ଆୟ ରେଣୁର ମନ ମୁତାବକ ଖଣ୍ଡେ ଶାଢ଼ୀକୁ ନଅଣ୍ଟ । ରେଣୁର କଥାରେ ଆଘାତ ପାଇଲେ ବି ରବୀନ୍ଦ୍ର ହସି କହିଲା, ନାରୀର ଯୌନ ପ୍ରବୃତ୍ତି ତାର ସମସ୍ତ ଦେହ ଓ ମନରେ ବିକ୍ଷିପ୍ତ । ସାମାନ୍ୟ ଗୋଟାଏ ଉପହାର, ଟିକିଏ ଭଲ କଥାରେ ମଧ ତାର ଯୌନ ପ୍ରବୃତ୍ତି ଚରିତାର୍ଥ ହୁଏ । ତୁମର ଆଶା ଓ ଆକାଂକ୍ଷା ମୁଁ ପୂରଣ କରିପାରୁନାହିଁ । ମୁଁ ପରାଜୟ ସ୍ୱୀକାର କରୁଚି । ମୁଁ ବୁଝିପାରୁଛି ଏହିପରି ହତାଶାରେ ବେଶି ଦିନ ରହିଲେ, ତୁମେ ଦିନେ ପାଗଳ ହୋଇଯିବ । ଏହାର କାରଣ ଲୋକେ ଯାହା ଭାବନ୍ତୁ ମୁଁ ମର୍ମେ ମର୍ମେ ଅନୁଭବ କରିବି; କିନ୍ତୁ ଉପାୟ କଅଣ ।

ତେବେ ବିବାହ କଲ କାହିଁକି ? ରେଣୁ ତାର ସ୍ୱରରେ ବିଷ ମିଶାଇ କହିଲା ।

କିନ୍ତୁ ଦେଖିଲତ ଜାତକରେ ତୁମର ଓ ମୋର ରାଜଯୋଟକ ପଡ଼ିଥିଲା । ତୁମର ବାପା ଜିଦ୍‌ଧରି ବସିଲେ ଏ ବିବାହ ପାଇଁ-ମୋର ଘୋର ଆପତ୍ତି ସତ୍ତ୍ୱେ ।

-କାହିଁକି ତୁମର ଆପତ୍ତି ଥିଲା ଶୁଣେ ?

-ତୁମର ଆକାଂକ୍ଷା ସହିତ ମୋର କ୍ଷମତା ଖାପ ଖୁଆଇ ପାରିବି କି ନା ମୋର ଯଥେଷ୍ଟ ସନ୍ଦେହ ଥିଲା ।

-ସନ୍ଦେହ ଯଦି ଥିଲା, ତେବେ ଦୟାକରି ବିବାହ ନ କରିବା ଉଚିତ ଥିଲା ।

-କିନ୍ତୁ ସୌଭାଗ୍ୟ ବା ଦୁର୍ଭାଗ୍ୟରୁ ତୁମକୁ ଦିନେ ଦେଖି ପକାଇଲି ଏବଂ ପ୍ରଥମ ଦେଖାରେହିଁ... ବାସ୍ । ମନର ସେହି ବିମୁଗ୍ଧ ଅବସ୍ଥାରେ ମୋର କ୍ଷମତାକୁ ମୁଁ ବହୁଗୁଣ କରି ଦେଖିଲି । ମୋର କ୍ଷମତା ଅବଶ୍ୟ ଅନେକ ଗୁଣ ବଢ଼ିଛି; କାରଣ ମୁଁ ବର୍ତ୍ତମାନ ଲେଖକ... ଯାହା ହେବା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି... କିନ୍ତୁ... ସେ କଥା ବର୍ତ୍ତମାନ ଥାଉ । ସେମାନେ ବର୍ତ୍ତମାନ ଆସିଯିବେ । ମୋ କଥା ମାନ । ନିଜର ପରିଚୟ ଓ ସୌନ୍ଦର୍ଯ୍ୟକୁ ଶାଢ଼ୀରେ ରଖନା । ମୟୂରପୁଚ୍ଛଧାରୀ ବାୟସର କଥା ଜାଣତ ?

-ମୁଁ କଦାପି ସେ ଶାଢ଼ୀ ପିନ୍ଧି ଯିବି ନାହିଁ । ଆଉ ଯଦି ବା ସେ ଶାଢ଼ୀ ପିନ୍ଧେ, ହାତ ନାକ କାନରେ କଅଣ ପିନ୍ଧିବି ! ରେଣୁ ହତାଶ ଭାବରେ କହିଲା ।

ରବୀନ୍ଦ୍ର ଏଥର ମୁଣ୍ଡରେ ହାତ ଦେଇ ବସିବାକୁ ଯାଉଥିଲା ଚୌକି ଉପରେ, ଚମକି ଉଠି ପଡ଼ିଲା । ଏ ସମସ୍ୟା ତାର ବୁଦ୍ଧିର ବାହାରେ । ସନ୍ଧ୍ୟା ହେବାକୁ ଆଉ ବେଶି ବେଳନାହିଁ । ଏହିକ୍ଷଣି ଧନଞ୍ଜୟ ଆସିଯିବ । ସେ ଅସହାୟ ଭାବରେ ରେଣୁ ଆଡ଼କୁ ଅନାଇ ରହିଲା । ରେଣୁର ଅଧରରେ ଟିକିଏ ହସ ଖେଳିଗଲା । ରବୀନ୍ଦ୍ରର ମୁଣ୍ଡରେ ହାତ ବୁଲାଉ ବୁଲାଉ ସେ କହିଲା, ''ତୁମେ ମୋ କଥା ଏଥର ମାନ । ପଡ଼ିଶା ଘରର ଦୁର୍ଲଭ ବାବୁଙ୍କ ସ୍ତ୍ରୀ ମୋତେ ଭାରି ଭଲ ପାଆନ୍ତି । ମୁଁ ଯାଉଚି ତାଙ୍କର ଶାଢ଼ୀ ଓ ଗହଣା କେତେଖଣ୍ଡ ମାଗି ଆଣିବି । ତୁମେ କାହିଁକି ଯେ ଏଥିରେ ଆପତ୍ତି କର, ମୁଁ ବୁଝେନା ।''

ରବୀନ୍ଦ୍ର ଏଥର ବିରକ୍ତ ହୋଇ କହିଲା, ''କେତେବାର କହିବି ମୟୂର ପୁଚ୍ଛ ଲଗାଇ...''

-ଏମିତି ସମସ୍ତେ କରନ୍ତି । ରେଣୁ ଅଧୀର ଭାବରେ କହିଲା ।

ରବୀନ୍ଦ୍ର କିଛିକ୍ଷଣ ନୀରବରେ ଚାହିଁ ରହିଲା । ତେଣୁ ଉତ୍ସାହ ପାଇ କହିଲା, 'ଏ ମଧ ତୁମର ଗର୍ବ ଏବଂ ଦାମ୍ଭିକତା ଯେ ଦୁନିଆରେ ଆଉ କାହାରି ସାହାଯ୍ୟ ନେବ ନାହିଁ ।'

-ତୁମର ଯାହା ଇଚ୍ଛା କର । ଏଥର ନିମନ୍ତ୍ରଣ ରକ୍ଷା ନ କରିବା ମୋତେ ଭଲ ଲାଗୁନାହିଁ ।

ଦୁର୍ଲଭ ବାବୁଙ୍କ ଘର ଘଡ଼ିରେ ଢଂ ଢଂ ଛ'ଟା ବାଜିଲା । ରେଣୁ ବ୍ୟସ୍ତ ହୋଇ ତାଙ୍କ ଘରକୁ ଦୌଡ଼ିଗଲା ଏବଂ କିଛି ସମୟ ପରେ ଆଣିଲା ଖଣ୍ଡେ ବହୁମୂଲ୍ୟ ବନାରସୀ ଶାଢ଼ୀ ଓ ଅନେକଗୁଡ଼ିଏ ଗହଣା । ରବୀନ୍ଦ୍ର ପୂର୍ବପରି ତଳକୁ ମୁହଁ ପୋତି ବସି ରହିଥିଲା । ରେଣୁ ନୃତ୍ୟର ଛନ୍ଦରେ ଦୌଡ଼ି ଆସି ରବୀନ୍ଦ୍ରକୁ ଠେଲି ଦେଇ କହିଲା, ''କାହିଁକି ମିଛରେ ଭାବୁଚ । ଦେଖ ଏ ଶାଢ଼ୀ ମୋତେ କେମିତି ମାନୁଚି ।'' ପ୍ରଶଂସା ଆଶାରେ ରେଣୁ ଶାଢ଼ୀଟି ତାର ଉନ୍ନତ ବକ୍ଷ ଦେଶରୁ ଲମ୍ବାଇ ଦେଲା । ରବୀନ୍ଦ୍ର ଶୂନ୍ୟ ଦୃଷ୍ଟିରେ ଚାହିଁରହି କହିଲା, ''ବାଃ, ବେଶ୍ ।''

ଦୂରରେ ମୋଟର ଆସିବାର ଶବ୍ଦ ଶୁଣାଗଲା । ରେଣୁ ଚମକି ପଡ଼ି ଅତିଶୀଘ୍ର ଶାଢ଼ୀଟି ଗୋଟିଏ ଟ୍ରଙ୍କ ଭିତରେ ଏବଂ ଗହଣାଗୁଡ଼ିକ ଗୋଟିଏ ବାକ୍ସ ଭିତରେ ରଖିଦେଲା ।

ରବୀନ୍ଦ୍ର ସେହିପରି ଶୂନ୍ୟ ଦୃଷ୍ଟିରେ ଚାହିଁ ରହି କହିଲା, ''କୁନି ଉଠିଲାଣି, ତାକୁ କଅଣ କରିବ ?''

''ତାକୁ ଦୁର୍ଲଭ ବାବୁଙ୍କ ଘରେ ରଖିଦେଇ ଯିବି ।'' ରେଣୁ ବ୍ୟସ୍ତ ହୋଇ କୁନିକୁ ଶୁଆଇ ଦେବାକୁ ଗଲା । କୁନିର ବୟସ ବର୍ଷେ । ସେ ଟିକିଏ କାନ୍ଦି ପୁଣି ଶୋଇପଡ଼ିଲା ।

ଧନଞ୍ଜୟ ବାବୁଙ୍କ ସ୍ୱର ବାହାରେ ଶୁଣାଗଲା; ''କଟକରେ ଏମିତି ଜାଗା ବି ଅଛି !! ସାବଧାନ, ସେଠି ନର୍ଦ୍ଦମାଟା । ଏଠି ଏମାନେ ଥାଆନ୍ତି କିପରି !''

-ଆସ୍ତେ, ଅପା ଶୁଣିବ । ମଲ୍ଲିକା ବାଧାଦେଇ କହିଲା ।

-ରବୀନ୍ଦ୍ର ବାବୁ ।

-ଅପା ।

ରେଣୁ ଡ଼ିବିରି ଧରି ବାହାରି ଆସିଲା ।

ମଲ୍ଲିକା ଅଧୀର ଭାବରେ କହିଲା, 'କିଲୋ ଅପା, ତୋ କାମ ସରିନାହିଁ ! ଶୀଘ୍ର କାମ ସାର । ଆହୁରି କେତେ ଜାଗାକୁ ଯିବାକୁ ହେବ । ସମସ୍ତେ ଘର ଭିତରକୁ ଗଲେ । ମଲ୍ଲିକା ପିନ୍ଧିଚି ଖଣ୍ଡେ ବହୁମୂଲ୍ୟ ଶାଢ଼ୀ । ଦେହର ସବୁ ସମ୍ଭବ ଅସମ୍ଭବ ସ୍ଥାନ ବହୁମୂଲ୍ୟ ଗହଣାରେ ପୂର୍ଣ୍ଣ । ଗୋଡ଼ରେ ହାଇ ହିଲ ଜୋତା । ଧନଞ୍ଜୟ ବାବୁ ପିନ୍ଧିଛନ୍ତି ବହୁମୂଲ୍ୟ ଧୋତି ଓ ପଞ୍ଜାବୀ । ହାତରେ ଧରା ହୋଇଛି ପାଇପ୍ । ରେଣୁ ମ୍ଳାନ ଭାବରେ ଥରେ ରବୀନ୍ଦ୍ରକୁ ଚାହିଁଲା । ରବୀନ୍ଦ୍ର ଟିକିଏ ହସିଲା । ଧନଞ୍ଜୟ ବାବୁ ଚୌକି ଉପରେ ବସି ପଡ଼ିଲେ । ରେଣୁ ଦୌଡ଼ିଯାଇ ଚୌକି ପଛରେ ଛିଡ଼ା ହୋଇ ରହିଲା ।

-ଅପା, ତୁ ଆଉ ଛିଡ଼ା ହ'ନା, ଜଲଦି ଯା ।

-ହଉ, ଯାଉଚି । ଟିକିଏ ବସ୍ । ଘୋଡ଼ାରେ ଚଢ଼ି ଆସିଚୁ ନା କଅଣ ।

ବେଳ ନାହିଁ । କଲିକତାରୁ ସନ୍ଦେଶ ଆସିଲା କି ନା, ମାଣିକ ପାଟଣାରୁ ଦହି ଆସିଲା କି ନା, ପୁଣି କଲେକ୍ଟର ଓ ଚିଫ୍ ସେକ୍ରେଟେରୀଙ୍କ ସ୍ତ୍ରୀ ମାନଙ୍କୁ ଆଣିବାକୁ ହେବ । ମଲ୍ଲିକା ରେଣୁକୁ ଠେଲିବାକୁ ଲାଗିଲା ଶୀଘ୍ର ଲୁଗାପଟା ପିନ୍ଧି ଆସିବାକୁ । ରେଣୁ ଭୟରେ ଆଖି ବଡ଼ ବଡ଼ କରି ବ୍ୟାକୁଳ ଭାବରେ ରବୀନ୍ଦ୍ର ଆଡ଼େ ଅନାଇ ରହିଲା । ରବୀନ୍ଦ୍ର ଟିକିଏ ହସି ଚୌକିଟିକୁ ଧରି ଛିଡ଼ାହେଲା ।

ରେଣୁ ଅଳ୍ପ ସମୟପରେ ଶାଢ଼ୀ ବଦଳାଇ ଗହଣା ପିନ୍ଧି ଆସିଲା ।

-ଅପା, ତୋତେ ଆଜି କି ସୁନ୍ଦର ଦିଶୁଛି । ଏ ଗହଣା ଶାଢ଼ୀ କେବେ କଲୁ ?

-ମନେ ନାହିଁ । ସେ କିଣି ଆଣିଛନ୍ତି । ଭାରିତ ଶାଢ଼ୀ ଗହଣା !

-ବାଃ, ପସନ୍ଦ ଅଛି ଏଙ୍କର ମାନିବାକୁ ହେବ । କିହୋ ସନ୍ୟାସୀ, ବିବାହ ହେବାକୁ ତ ମନା କରୁଥିଲ । ଏ କଅଣ !

ରବୀନ୍ଦ୍ର କିଛି ସମୟ ଅବାକ୍ ହୋଇ ଚାହିଁ ରହି କହିଲା, ତୁମ୍ଭମାନଙ୍କର ଯେଉଁ ମୁନିଟଳା ରୂପ ! ମୁଁ ତ ଛାର...

-ବୁଝିଲ ତ ଏଥର ।

-ମର୍ମେ ମର୍ମେ ।

-ହଉ ଯାଅ, ଲୁଗା ଛାଡ଼ି ଆସ ।

ରବୀନ୍ଦ୍ର ଚୌକିଟି ଛାଡ଼ି ଚାଲିଯାଉଥିଲା । ରେଣୁ ଶୀଘ୍ର ଯାଇ ଚୌକି ପଛରେ ଛିଡ଼ା ହେଲା ।

ରବୀନ୍ଦ୍ର ଅନ୍ୟ ଘରକୁ ଯାଇ ନିଶ୍ଚଳ ଭାବରେ ଛିଡ଼ା ହୋଇ ରହିଲା । ରେଣୁର ଶାଢ଼ୀ ଗହଣାକୁ ଖାପ ଖୁଆଇ ସେ ପିନ୍ଧିବ କଅଣ ! ଲୁଗା ଧୋବା ଏପର୍ଯ୍ୟନ୍ତ ଦେଇନାହିଁ । ସବୁଠାରୁ ଭଲ ଅଛି ତା'ର ଖଣ୍ଡେ ସଫା ମୋଟ ପଞ୍ଜାବୀ ଓ ଖଣ୍ଡେ ଅଧମଇଳା ଲୁଗା ।

''ଟିକିଏ ଏ ଘରକୁ ଆସିବ କି !'' ରବୀନ୍ଦ୍ର ଅଧୀର ଭାବରେ ରେଣୁକୁ ଡାକିଲା ।

''ତୁମେ ଯାହା ପାଉଛ ଶୀଘ୍ର ପିନ୍ଧି ଆସ ।'' ରେଣୁ ନ ଯାଇ କହିଲା । ରେଣୁ ଆସି ନ ପାରିବାର କାରଣ ବୁଝିପାରି ରବିନ୍ଦ୍ର ପୁଣି ଥରେ ହସିଲା ଏବଂ ସେହି ସଫା ମୋଟ ପଞ୍ଜାବୀ ଓ ଅଧମଇଳା ଲୁଗା ପିନ୍ଧି ବାହାରି ଆସିଲା । ରେଣୁ ତଳକୁ ମୁହଁ ପୋତି ଛିଡ଼ାହେଲା ।

ସମସ୍ତେ ବାହାରିଲେ । ମଲ୍ଲିକା ପଚାରିଲା, ''ଅପା, କୁନି ?''

-ଇଲୋ ବୋଉ, ତା କଥା ମନେନାହିଁ । ଟିକିଏ ଅପେକ୍ଷା କର, ମୁଁ ତାକୁ ଦୁର୍ଲଭ ବାବୁଙ୍କ ସ୍ତ୍ରୀଙ୍କୁ ଦେଇଆସେ ।

-ସେ ଉଠିଲେ ତ ତୋ ଛଡ଼ା ଆଉ କାହା ପାଖରେ ରହିବ ନାହିଁ । ତାକୁ ନେଇ ଚାଲୁନୁ ।

-ନା, ସେ ଏଇକ୍ଷଣି ଅନେକ ବେଳଯାଏ ଶୋଇବ । ଉଠିଲେ ମୋ ପାଖକୁ ପଠାଇ ଦେବାକୁ କହି ଆସିବି । ତା ଦେହ ଖରାପ ଅଛି । ନନେଲେ ଭଲ ହେବନି ।

ସମସ୍ତେ ମଟରରେ ବସିଲେ । ଆଜି ମଲ୍ଲିକାର ବିବାହ ବାର୍ଷିକ । କଟକର ସବୁ ଧନୀ ମାନୀ ବ୍ୟକ୍ତି ନିମନ୍ତ୍ରିତ । ଘରଟି ବିଜୁଳି ଆଲୁଅ ଓ ବହୁମୂଲ୍ୟ ପଦାର୍ଥରେ ସଜା ହୋଇଛି । ରେଣୁ ଭାବେ, ତାର ଜୀବନର ପାଞ୍ଚୋଟି ବିବାହ ବାର୍ଷିକ ଗଲାଣି, ଗୋଟିଏ ସାମାନ୍ୟ ଉପହାର ସୁଦ୍ଧା ସେ ରବୀନ୍ଦ୍ର ପାଖରୁ ପାଇନାହିଁ । ଗୋଟିଏ ଦୀର୍ଘ ନିଃଶ୍ୱାସ ତାର ଅଜାଣତରେ ବାହାରି ଆସିଲା ।

ଗୋଟିଏ ଘରେ ଗୋଟିଏ ବଡ଼ ଟେବୁଲ ଉପରେ ଅତିଥିମାନେ ଦେଇଥିବା ନାନା ଜାତିର ବହୁମୂଲ୍ୟ ଉପହାର ସଜା ହୋଇ ରହିଚି । ମଲ୍ଲିକା ସଗର୍ବେ ଉପହାରଗୁଡ଼ିକ ରେଣୁକୁ ଦେଖାଉଛି । ରବୀନ୍ଦ୍ର ନୀରବରେ ସେମାନଙ୍କୁ ଅନୁସରଣ କରୁଛି । ହଠାତ୍ ଘରର ଫାଟକ ପାଖରେ ତୀବ୍ର ସ୍ୱରରେ ଶିଶୁର କ୍ରନ୍ଦନ ଶୁଣାଗଲା । ରେଣୁ ଚମକି ପଡ଼ି କହିଲା, ବୋଉଲୋ, କୁନି ଉଠିଛି । ଖାଇଲା ସେ ମୋତେ । ମୋତେ ନ ଦେଖିପାରି ନିଶ୍ଚୟ ତାର ରାଗ ବଢ଼ିଛି ।

ରେଣୁ ବାହାରକୁ ଦୌଡ଼ି ଆସିଲା । ଦୁର୍ଲଭ ବାବୁଙ୍କ ସ୍ତ୍ରୀ ରେଣୁକୁ କୁନିକୁ ଦେଇ ଚାଲିଗଲେ ।

କିନ୍ତୁ କୁନି କୌଣସି ପ୍ରକାରେ ମା' କୋଳରେ ରହିଲା ନାହିଁ । ଥରେ ମାତ୍ର ମା ଆଡ଼କୁ ଚାହିଁ ଭୟରେ ଆଖି ବୁଜି ଦେଇ ଅଧିକ ତୀବ୍ର ସ୍ୱରରେ କାନ୍ଦିବାକୁ ଲାଗିଲା ଏବଂ ବ୍ୟାକୁଳ ଭାବରେ କାହାକୁ ଖୋଜିବାକୁ ଲାଗିଲା । ରବୀନ୍ଦ୍ର କୁନିକୁ କୋଳକୁ ନେବାକୁ ଚେଷ୍ଟାକଲା; କିନ୍ତୁ ବାପା ପାଖକୁ ମଧ ଯିବାକୁ ନାରାଜ । ଏ ଅଦ୍ଭୁତ କ୍ରନ୍ଦନ ଶୁଣି ଘରର ସମସ୍ତେ ସେଠି ରୁଣ୍ଡ ହେଲେ । କୁନି କେବଳ ଭୟରେ ସମସ୍ତଙ୍କୁ ଥରେ ଚାହେଁ ଏବଂ କାହାକୁ ଯେପରି ନ ପାଇ ଅଧିକ ଜୋରରେ କାନ୍ଦିବାକୁ ଆରମ୍ଭ କରେ । ରେଣୁ ଯେତେ ଚେଷ୍ଟା କରେ ନିଜକୁ ଦେଖାଇବାକୁ, କୁନି ଆଉ ଫେରି ଥରେ ବି ସୁଦ୍ଧା ଚାହେଁ

ନାହିଁ । ମଲ୍ଲିକା ତାକୁ କୋଳକୁ ନେଇ ନାନା ପ୍ରକାର ଖେଳଣା ଦେଇ ଭୁଲାଇବାକୁ ଚେଷ୍ଟା କରେ । ମୂଲ୍ୟବାନ୍ ଖେଳଣା ସବୁ କୁନି ଅନାଦରରେ ଫିଙ୍ଗିଦିଏ । ଗୋଟିଏ ଦାସୀ ବିଦ୍ରୂପ କରି କହିଲା, ''ତାର ଏ ସବୁ ଖେଳଣା ପସନ୍ଦ ହେଉନି ।'' ରେଣୁ ରାଗରେ ତାକୁ ଚାହିଁ ରହିଲା । ଦାସୀ ମୁହଁ ମୋଡ଼ି ଚାଲିଗଲା । ମଲ୍ଲିକା କୁନିକୁ କୋଳକୁ ନେଇ ଘରର ନାନା ମୂଲ୍ୟବାନ ପଦାର୍ଥ ଦେଖାଇ ଭୁଲାଇବାକୁ ଚେଷ୍ଟା କରେ । କୁନି ଅବଜ୍ଞାରେ ସେ ସବୁ ଥରେ ଦେଖେ ବି ନାହିଁ । ତାର ସୁନ୍ଦର ଆଖିଯୋଡ଼ିକ କେବଳ ଅଧୀର ଭାବରେ କାହାକୁ ଖୋଜେ । କ୍ରମେ କ୍ରମେ କୁନିର କ୍ରନ୍ଦନ ଅସହ୍ୟ ହେବାକୁ ଲାଗିଲା । ମନେହେଲା ତାର ହୃଦଯନ୍ତ୍ର ହଠାତ୍ ବନ୍ଦ ହୋଇଯିବ । ରେଣୁ ଆତଙ୍କରେ କୁନିକୁ କୋଳକୁ ଟାଣିନେଲା ।

ଗୋଟିଏ ଦାସୀ କହିଲା, ''ସେ ତା' ବୋଉକୁ ଚିହ୍ନି ପାରୁନି ମ ।''

ରେଣୁ ଧମକ ଦେଇ କହିଲା, ''ଚୁପ୍ କର । ଚିହ୍ନିବ ନାହିଁ କାହିଁକି ? କଅଣ ଗୋଟାଏ ଜିଦ୍ ଧରିଛି ସେ ।''

ଦାସୀ କହିଲା, ''ମା' ମୁଁ କହୁଚି ତୁମେ ଶାଢ଼ୀ ବଦଳାଇ ଖଣ୍ଡେ ଅଧାମଇଳା ଶାଢ଼ୀ ପିନ୍ଧ, ଗହଣାଗୁଡ଼ିକ ଖୋଲି ପକାଅ । ସେ ତୁମକୁ ଚିହ୍ନିବ ।''

ରେଣୁ ଲଜ୍ଜା ଓ କ୍ରୋଧରେ ତାକୁ ଅନାଇ ରହିଲା । ତାର ସମସ୍ତ କ୍ରୋଧ ପଡ଼ିଲା କୁନି ଉପରେ । ଗୋଟିଏ ଚାପୁଡ଼ାରେ କୁନି ଏକଦମ୍ ନୀରବ ହୋଇଗଲା । ତାର ହାତ ଗୋଡ଼ ସବୁ କଠିନ ହୋଇଗଲା । ହାତ ମୁଠାକରି ସେ ରେଣୁର କୋଳରେ ଢଳି ପଡ଼ିଲା । ରେଣୁ ଅଧୀର ହୋଇ ଚିତ୍କାର କରି ଉଠିଲା, ''ଇଲୋ ବୋଉ ମୁଁ କଅଣ କରିବି, ଏ କଅଣ ହେଲା ।''

ସମସ୍ତେ ଦୌଡ଼ି ଯାଇ ପାଣି ଆଣି କୁନିର ମୁହଁରେ ଛାଟିଲେ । ଅଳ୍ପ ସମୟପରେ କୁନି ଆଖି ମେଲି ରେଣୁ ଆଡ଼େ ଚାହିଁଲା ଏବଂ ପୁଣି ଅତି ଭୟରେ ଆଖି ବନ୍ଦକରି କାନ୍ଦିବାକୁ ଲାଗିଲା । ସେହି ଦାସୀ କହିଲା, ''ତୁମେ ମା' ହୋଇ ଏତିକି ବୁଝିପାରୁନା, ସେ ତୁମକୁ ଚିହ୍ନିପାରୁନି । କେବେ ତୁମକୁ ଏ ସବୁ ପିନ୍ଧିବାର ଦେଖିନାହିଁ ବୋଲି ।''

ଅଗତ୍ୟା ତାହା ହିଁ କରିବାକୁ ହେଲା; କିନ୍ତୁ ମଲ୍ଲିକା ଘରେ ଅଧମଇଳା ଶାଢ଼ୀ ମିଳିଲାନାହିଁ । ରବୀନ୍ଦ୍ର ଘରକୁ ଯାଇ ରେଣୁର ଖଣ୍ଡେ ଶାଢ଼ୀ ଆଣିଲା । ରେଣୁ ଲଜ୍ଜା, କ୍ରୋଧ ଓ ଅଭିମାନ ଦମନ କରି ଖଣ୍ଡ ଖଣ୍ଡ କରି ଗହଣା କାଢ଼ି ତାର ଅଧମଇଳା ଶାଢ଼ୀ ପିନ୍ଧିଲା । ମଲ୍ଲିକା ରେଣୁକୁ ଦେଖାଇ କହିଲା, ''ଟୋକି ତୋ ବୋଉ-ଦେଖେ ।'' କୁନି ମା' କୋଳକୁ ଡେଇଁପଡ଼ି ମୁହଁ ଲୁଚାଇଦେଲା । ସମସ୍ତେ ନିଃଶ୍ୱାସ ମାରିଲେ ।

ରେଣୁ ସେହି ଯେ ତଳକୁ ମୁହଁ ପୋତି ରହିଲା, ଆଉ ଅନେଇଲା ନାହିଁ । ମଲ୍ଲିକାର ଅନୁରୋଧରେ ସେ ଟିକିଏ ଖାଇ ଶୀଘ୍ର ଘରକୁ ଫେରିଆସିଲା ଏବଂ କୁନିକୁ ଫୋପାଡ଼ି ଦେଇ ସଶବ୍ଦେ ଖଟ ଉପରେ ଶୋଇପଡ଼ିଲା । ରବୀନ୍ଦ୍ର ସଭୟେ ଦେଖିଲା ନିଃଶବ୍ଦ କ୍ରନ୍ଦନରେ ତାର ସମସ୍ତ ଦେହ ଥରିଉଠୁଛି । ସେ ସ୍ନେହରେ ତାର ପିଠିରେ ହାତ ବୁଲେଇବାକୁ ଲାଗିଲା । କୁନି ଗୁରୁଣ୍ଡି ଆସି ମା' କୋଳରେ ମୁହଁ ଲୁଚାଇ ନୀରବରେ ଶୋଇ ରହିଲା । ଅନେକ କ୍ଷଣ ପରେ ରେଣୁ ଉଠି ରବୀନ୍ଦ୍ରକୁ ଚାହିଁଲା ଏବଂ କୁନିକୁ କୋଳକୁ ଟାଣିନେଇ ହସି କହିଲା, ''ଏ ଟୋକି କାହାରି ଛଳନା ରଖିଦେଲା ନାହିଁ । ଭଲ ହୋଇଛି, ଠିକ୍ ହୋଇଛି ।''

# କୁକୁଡ଼ା ଚାଷ

ଗୋବିନ୍ଦ ବାବୁଙ୍କ ପାଞ୍ଚବର୍ଷର ପୁଅ ବାପୁର ନୂଆ ଶିଙ୍ଘ ଉଠିଚି । ସେ ଯେଉଁଠି ପାରୁଛି ଶିଙ୍ଘ ଲଗେଇ ଦେଇ ମାଟି ଖୋଳୁଚି । ସକାଳ ନ ପାହୁଣୁ ସେ ଖଣ୍ଡେ କାଗଜ ଧରି ପାଟିକରି ପଢ଼ିବାରେ ଲାଗିଚି । ଅଳ୍ପ କେତେଦିନ ହେବ ସେ 'ଆ'କାର ଚିହ୍ନି ଶିଖିଛି ମାତ୍ର; କିନ୍ତୁ ତାର ଜ୍ଞାନ କେତେ ଦୂର, ସେ ଜ୍ଞାନ ପ୍ରଚାର କରିବା ଯୋଗ୍ୟ କି ନା ଏବଂ ପ୍ରଚାରକଲେ ଅନ୍ୟର କିଛି ଶାରୀରିକ ବା ମାନସିକ ଅସୁବିଧା ହେବ କି ନା ସେ ସବୁ ବିଚାର କରିବାର କାଣ୍ଡଜ୍ଞାନ ତାର ନାହିଁ । ବାପାଙ୍କୁ ସେ ଛବି ବହି କିଣି ଆଣିବାକୁ ଜିଦ୍ ଲଗାଇଥିଲା । ଗୋବିନ୍ଦ ବାବୁ ଛବି ବହିର ଦାମ ପାଞ୍ଚଟଙ୍କାରୁ କମ୍ ନାହିଁ ଦେଖି କୁକୁଡ଼ା ଚାଷ ବିଷୟରେ ଗୋଟିଏ ସରକାରୀ ପ୍ରଚାର ବହି ବହୁତ ଛବି ଥିବାରୁ ନିଜ ଅଫିସ୍‌ରୁ ଆଣି ଦେଇଛନ୍ତି । ବାପୁ ପାଟିକରି ସେ ବହି ପଢ଼ିଚାଲିଛି...

ଏ...ଏ...ହା ଏହା ସତ ସ...ସ...ଦ (ସ୍ୱତଃସିଦ୍ଧ) ଯ (ଯେ) ଅ...ବ...ୟ... ବ ଗଠନ, ଶ...ଶ...ରର (ଶରୀରର) ଉଁ...ଉଁ...ସ ବଦ(ବୃଦ୍ଧି) ଏବ ଉଁ...ଉଁ...ଉଁ (ସ୍ୱାସ୍ଥ୍ୟରକ୍ଷା) ପାଇ (ପାଇଁ) ଭାତ, ଡାଲ ପନପରବା (ପନିପରିବା) ସାଗକ (ସାଙ୍ଗକୁ) ମାଛ, ମାସ (ମାଂସ), ଦଧ (ଦୁଧ) କମ(କିମ୍ବା) ଅ...ଣା(ଅଣ୍ଡା) ଉ ଳ ଆ ଉ...ଉ...କ...କ...ସ (ଉତ୍କୃଷ୍ଟ) ଖାଦ (ଖାଦ୍ୟ) ଦରକାର । ଆମ ଛଟ ପଲାମାନଙ୍କର ଅବୟବ ଗଠନ ହବ ମାନସକ ବକାଶର ବଶଷ ବ୍ୟାଘାତ ଘଟଛ., ବତମାନ ପରସତ(ପରିସ୍ଥିତି) କ କକଡ଼ା(କୁକୁଡ଼ା) ପାଳବା ଦରକାର । କକଡ଼ା ଅଣା ସବଠାର ବଳକାରକ ।

ବାପୁ କୁକୁଡ଼ା ଚାଷ ବିଷୟରେ ପଢ଼ିଚାଲିଚି ଅଧିକରୁ ଅଧିକ ଉତ୍ସାହରେ । ଅର୍ଥ ହେଉ ନ ହେଉ, ଧ୍ୱନିରେ ସେ ମୁଗ୍‌ଧ ।

ସକାଳ ହୋଇନାହିଁ, ସିନ୍ଦୁରା ଫାଟିଲାଣି । ଦୂରେ ପୂର୍ବ ଦିଗ୍‌ବଳୟର ନୀଳାଭ ଧାଡ଼ିଏ ରେଖା ଉପରେ ଉଜ୍ଜ୍ୱଳ ଗୋଲାପି ଆଭା ଧୀରେ ଧୀରେ ରକ୍ତିମ ହୋଇ ଉଠୁଚି । ତା ଉପରକୁ କିଛି ଦୂର ଉଜ୍ଜ୍ୱଳ ହଳଦିଆ ଏବଂ ତା ଉପରକୁ ବାଇଗଣି । ତା ପରେ ଅସୀମ ଅନନ୍ତ ନୀଳାକାଶ । ପଶ୍ଚିମ ଆକାଶରେ ଶୁକ୍ଳ ଦଶମୀର ଚାନ୍ଦ ପାଣ୍ଡୁର ହୋଇଆସିଲାଣି; କିନ୍ତୁ ଅଗସ୍ତି ଏ ପର୍ଯ୍ୟନ୍ତ ଦପ୍ ଦପ୍ କରୁଛି । ଶୀତ ସକାଳର ଝଲକାଏ ଥଣ୍ଡା ପବନ ଉତ୍ତରପଟେ ଝରକା ଠେଲି ଦେଇ ଘର ଭିତରକୁ ଧସେଇ ପଶି ଆସି କହିଗଲା, ଉଠ ଉଠ, ଗୋବିନ୍ଦ ବାବୁ କିନ୍ତୁ ଚାଦରଟା ବେକ ପର୍ଯ୍ୟନ୍ତ ଟାଣି ନେଇ ପୂର୍ବପରି ପଡ଼ିରହି ଭାବିଚାଲିଛନ୍ତି ।

ଭାବିଚାଲିଛନ୍ତି ଜୀବନର ଗତି । ବହୁ ଅଭାବ ଅନାଟନ ମଧ୍ୟରେ ମଧ ମନଟି ତାଙ୍କର ପୁରୁଣା

ବିଶ୍ଳେଷଣ ନୀତି ଛାଡ଼ିନାହିଁ । ନିଦ ଭାଙ୍ଗିଯିବାପରେ ତାଙ୍କର ପ୍ରଥମଚିନ୍ତା, ଦୁଶ୍ଚିନ୍ତା କହିପାରନ୍ତି, ଆସନ୍ନପ୍ରସବା ପତ୍ନୀର ସ୍ୱାସ୍ଥ୍ୟ ଓ ପ୍ରସବ ସମସ୍ୟା । ଏଟି ତାଙ୍କର ହେବ ସପ୍ତମ ସନ୍ତାନ । ପ୍ରତ୍ୟେକ ଥର ପ୍ରସବ ପୂର୍ବରୁ ସ୍ତ୍ରୀଙ୍କର ସ୍ୱାସ୍ଥ୍ୟରକ୍ଷାପାଇଁ ସେ କିଛି ନା କିଛି ଔଷଧ ଦେଇପାରୁଥିଲେ । ଅବସ୍ଥା ସେତେବେଳେ ଥିଲା ଅନ୍ୟରୂପ । ସେତେବେଳେ ସେ ଥିଲେ ନିଜ ଘରେ ଏବଂ ଏକାନ୍ନବର୍ତ୍ତୀ ପରିବାର ମଧ୍ୟରେ ଅନ୍ୟ ଦୁଇ ଭାଇଙ୍କ ସାଙ୍ଗରେ । ଗାଁ ତାଙ୍କର ନିକଟରେ ଥିବାରୁ ଗାଁ ଜମିରୁ ଚାଉଳ ମଧ୍ୟ କିଛି ଆସୁଥିଲା; କିନ୍ତୁ ବଦଳି ପରେ ଘରଭଡ଼ା ତିରିଶିଟଙ୍କା ଦେଇ ଓ ଚାଉଳ କିଣି ଏକା ତାଙ୍କ ପକ୍ଷରେ ଖର୍ଚ୍ଚ ସମ୍ଭାଳିବା ଅସମ୍ଭବ ହୋଇପଡ଼ିଛି । ତାଙ୍କର ଚିନ୍ତାଧାରା ଏଇ ସମସ୍ୟାର ଖିଅ ଧରି ଆରମ୍ଭ ହୋଇଥିଲା; କିନ୍ତୁ ନିଜକୁ ନିଜେ ପ୍ରଶ୍ନ ପଚାରି ତାର ଉତ୍ତର ଦେଉଦେଉ ସେ ବର୍ତ୍ତମାନ ଯେଉଁଠି ପହଞ୍ଚିଛନ୍ତି, ତାହା ମୂଳ ଚିନ୍ତାଠାରୁ ବହୁଦୂରରେ । ପ୍ରଥମ ଥର ସେ କ୍ଷୋଭ, ଦୁଃଖ, ଅନ୍ୟର ସୁଖ ପ୍ରତି ଈର୍ଷା ମଧ୍ୟ ନାହିଁ । ଆଖି ତାଙ୍କର ଉଦାସ ଓ ଛଳଛଳ । ସେ ନିଃଶ୍ୱାସ ଚାପି ମନେ ମନେ କହୁଚନ୍ତି, ସେଇ ମହାନ୍ ପୁରୁଷକୁ ଜାଣିବା ଜୀବନର ଏକମାତ୍ର ଲକ୍ଷ୍ୟହେବା ଉଚିତ ମୁଁ ମାନୁଚି; କିନ୍ତୁ କାହିଁକି ବାରେ ବାରେ ଦୁଃଖ, ଈର୍ଷା, କ୍ରୋଧ, ହିଂସା, ଲୋଭ, କାମନା ଆସି ସେଇ ମୋହନରୂପ ସାମନାରେ ଛିଡ଼ାହୋଇ ଦୃଷ୍ଟିପଥରେ ବାଧା ଜନ୍ମାଉଛି ? କାହିଁକି ? କାହିଁକି ? ଛି, ଏ ଜୀବନକୁ ଧିକ୍ । କ୍ଷୁଦ୍ର କାମନା, ଅସମ୍ଭବ ଆଶା, ସମସ୍ତଙ୍କୁ ନିଜ ବାହାଦୁରି ଦେଖାଇବାର ଇଚ୍ଛା ହିଁ ବେଶି ଆକର୍ଷଣ କରି ନେଉଚି ଈର୍ଷା, ହିଂସା, ଲୋଭ ଆଡ଼େ; ଅଥଚ ବିରାଟ ନିବିଡ଼ ଆନନ୍ଦ ପଡ଼ିରହିଚି ସେଆଡ଼େ । ମନ ଟିକିଏ ବି ଯାଉନାହିଁ । କଅଣ କରିବି ମୁଁ ? କଅଣ କରିପାରେ ମୁଁ ? କିପରି ଏ ସବୁ ରୋଧ କରିବି ?...

ହତାଶାରେ ଦୁଇ ବିନ୍ଦୁ ଅଶ୍ରୁ ଗୋବିନ୍ଦ ବାବୁଙ୍କ ଆଖିରୁ ଗଡ଼ିପଡ଼ିଲା । ଭଗବାନଙ୍କ ପାଇଁ ମନରେ ସେ ଏକ ଅପୂର୍ବ ବେଦନାମୟ ବ୍ୟାକୁଳତା ଅନୁଭବ କଲେ । ମନରେ ତାଙ୍କର ଆଶାର ସଞ୍ଚାର ହେଲା; କିନ୍ତୁ ପ୍ରାଶ୍ନିକ ମନ କହିଲା, ଏହା ବ୍ୟାକୁଳତା ମାତ୍ର । ଏ ମୋହ ଏବଂ ମୋହରୁ ଜାତ କୌଣସି ଭାବ ଉପରେ ବିଶ୍ୱାସ ରଖିବା ଉଚିତ କି ? ଗୋବିନ୍ଦ ବାବୁଙ୍କ ଆଖିପତା କୁଞ୍ଚିତ ହେଲା । ସେ ରୁଦ୍ଧଶ୍ୱାସ ଛାଡ଼ି ପୁଣି ସତେଜ ହୋଇ ଉଠିଲେ । ଭଗବାନଙ୍କ ବିଷୟ ଭାବୁ ଭାବୁ କାନ୍ଦିପାରିଥିବା ଯୋଗୁଁ ମନରେ ଯେଉଁ ଗର୍ବ ଅନୁଭବ କରିଥିଲେ, ସେ ଧୂଳିସାତ୍ ହୋଇଗଲା । ସେ ପୁଣି ଚିନ୍ତା କରିବାକୁ ଲାଗିଲେ । ନିଜର ଗର୍ବ, ମୋହ, ଈର୍ଷା, ଲୋଭ ଆଦି ଦେଖିପାରି ବୁଝିପାରି ସେ ନିଜକୁ ଘୃଣା, ତୀବ୍ର ଘୃଣା କରିବାକୁ ଲାଗିଲେ ।

ଚାଦର ଭିତରେ ହାତ ଯୋଡ଼ି ସେ ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ, ହେ ମହାନ୍, ହେ ଦୟାନିଧି, ତୁମେ ଦୟାକର, ଏସବୁ କଣ୍ଟକ ମୋ ମନରୁ କାଢ଼ିନିଅ, ଦେଖାଅ ମୋତେ ସେଇ ଆନନ୍ଦମୟ ରୂପ । ପୃଥିବୀର ସବୁ ସୁନ୍ଦର ଦିଶୁ ମତେ...

...ଶୁଣ, ବୃଝ, ମୋହଗ୍ରସ୍ତ ହୁଅନାହିଁ ଏ ପ୍ରାର୍ଥନାରେ । ଭାବ ନାହିଁ ତୁମେ ଏହି ଭାବନା ପାଇଁ ଅନ୍ୟଠାରୁ ଅନେକ ଉଚ୍ଚରେ । ଭାବିଦେଖ, ପୃଥିବୀର ସମସ୍ତ ପ୍ରାଣୀର ଭାବନା ତୁମ ଭିତରେ ସ୍ଥାନ ପାଇଚି । ଯାହାକୁ ତୁମେ ମହାନ୍ ଚିନ୍ତା ବୋଲି ଧରି ନେଇ ନିଜ ଭିତରେ ତାର ଉଦ୍ରେକ ଦେଖି ଆନନ୍ଦିତ ହେଉଚ, ଧନ୍ୟ ମନେ କରୁଚ ଏବଂ ଯାହାକୁ ତୁମ୍ଭେ କୁଚିନ୍ତା ବୋଲି ଧରିନେଇ ନିଜ ଭିତରେ

ତାର ଅସ୍ତିତ୍ୱ ଦେଖି ନିଜକୁ ଘୃଣା କରୁଚ, ଏ ଦୁଇ ଭାବ ଜୀବନ ସହିତ ସଂଶ୍ଳିଷ୍ଟ । ଓତପ୍ରୋତ ଭାବରେ ଜଡ଼ିତ । ଶରୀର ଓ ମନର ସଂମିଶ୍ରଣର ଏ ଶରୀରକୁ ଯେତେବେଳେ ସ୍ୱୀକାର କରିନେଇଚ, ଏ ଦୁଇ ଭାବକୁ ସ୍ୱୀକାର କରି ନେବାର ସାହସ ଓ ବିନୟ ସଞ୍ଚୟକର । ତୁମର ମହାନ୍ ଚିନ୍ତାରେ ତୁମେ ଯଦି ଗର୍ବିତ ବା ଆନନ୍ଦିତ ହୁଅ ଏବଂ କୁଚିନ୍ତାରେ ନିଜକୁ ଘୃଣାକର, ତେବେ ଅନ୍ୟ ସମସ୍ତଙ୍କ ପ୍ରତି ତୁମେ ସେମିତି ମୋହଯୁକ୍ତ ଏବଂ ଘୃଣାକାରୀ ହେବ । ଧୀରେ ତୁମ୍ଭର ଅଜ୍ଞାତରେ ତୁମ୍ଭର ମନ ସଂକୁଚିତ ହୋଇଯିବ । ସେପରି ମନର ଭଗବାନ ପ୍ରତି ବିଶ୍ୱାସ କଅଣ ? ସେ କାହୁଁ ପାଇବ ମହାନ୍‌ର, ବିରାଟର ଆସ୍ୱାଦ ଯଦି ସେ ମନକୁ ବହିର୍ଜଗତରୁ ଟାଣି ଆଣି ନିଜପ୍ରତି ମୋହ ସୃଷ୍ଟିକରେ, ଘୃଣାଦ୍ୱାରା ହେଉ ବା ବାହାଦୁରି ଦେଇ ହେଉ !!

ଗୋବିନ୍ଦ ବାବୁ ପୁଣି ଗୋଟିଏ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲେ, ଏତେ ଦିନକେ ବୁଝିଲି ଡକ୍ଟର ଯେକିଲ୍ ଓ ମିଷ୍ଟର ହାଇଡ୍‌ଙ୍କର କରୁଣ କାହାଣୀ । ଭଲ ମନ୍ଦ ମିଶି ସାଧାରଣ ମଣିଷ ଡକ୍ଟର ଯେକିଲ୍ ପୂରା କୁମଣିଷଟିଏ ଗଢ଼ି ପାରିଲେ ସିନା, ପୂରା ସୁମଣିଷଟିଏ ଗଢ଼ି ପାରିଲେନାହିଁ । ତେବେ ଯାହା ଶରୀର ସହିତ ଆସିଚି, ସେ ଥାଉ, ମୁଁ ସେଥିପ୍ରତି ଦୃଷ୍ଟିଦେଇ ସେମାନଙ୍କର ପ୍ରକୋପ ବଢ଼ାଇ ଲାଭ କଅଣ ? ବରଞ୍ଚ ସେ ସବୁର ଅସ୍ତିତ୍ୱ ହେତୁରୁ ମନର ନାନା ଭାବରୁ ମୁଁ ବିଭିନ୍ନ ସତ୍ୟ ପାଇ ସେଇ ମହାନ୍‌ଙ୍କ ପରିଚୟ ଯଦି ପାଏ, ତେବେ ସେ ସବୁ କାମରେ ଲାଗିଲା । ତେବେ ତାହା ହିଁ ହେଉ, ତାହା ହିଁ ହେଉ...

...ହେ ଭଗବାନ୍, ତୁମେ ସତ୍ୟ । ଆଖିରୁ ତାଙ୍କର ପୁଣି ପାଣି ଗଡ଼ି ପଡ଼ିଲା ।

...ଉଁ ହୁଁ, ଆଖିପାଣି ଝରି ପଡ଼ିବାଟା ବଡ଼ କଥା ନୁହେଁ, ଯଦିଓ ପ୍ରଥମେ ଭଲ । ନିଜ ଭିତରେ ଦେଖା ସମସ୍ତଙ୍କୁ ପ୍ରେମ କରିପାରୁଚ ତ ? ସାମାନ୍ୟ ସୂତ୍ରର ଖିଅଧରି ମନ ତାଙ୍କର ଗହନ ବନ ଭିତରେ ପ୍ରବେଶ କରିଚି ତାଙ୍କ ଅଜାଣତରେ !

ଗୋବିନ୍ଦ ବାବୁ ଟିକିଏ ହସି ମନେ ମନେ ‘‘ହଉ ସାବଧାନ ହେଉଚି’’ କହି ବିଛଣା ଛାଡ଼ି ଉଠିପଡ଼ିଲେ ।

ବାପୁ ସେତେବେଳକୁ କୁକୁଡ଼ା ଅଣ୍ଡା ଫୁଟାଇବା ପ୍ରଣାଳୀ ପଢ଼ିସାରି କୁକୁଡ଼ା ଛୁଆ ଲାଳନ ପାଳନ ବିଷୟରେ ପଢୁଚି ସମସ୍ତ ପଢ଼ାଟି ପ୍ରକମ୍ପିତ କରି । ବୋଉ ତାର ଶେଯ ଛାଡ଼ି ଉଠି ଆସି ତା ପାଖରେ ମୁଣ୍ଡରେ ହାତ ଦେଇ ବସିଲେ । ବାପୁ ଆଗ୍ରହଭରି ବୋଉକୁ ତାର ବହି ମଲାଟ ଛବି ଦେଖାଇଲା । ଛବିଟି ସତେ ମନୋରମ ହୋଇଚି । ତ୍ରିରଙ୍ଗି ଚିତ୍ର । ଗୋଲାର୍ଦ୍ଧର ଗୋଟିଏ ଚିତ୍ର । ଗୋଲାର୍ଦ୍ଧରେ ଭାରତ ଓ ଭାରତ ଉପରକୁ ଏସିଆ ଓ ଇଉରୋପ କିୟଦଂଶ । ଭାରତର ମାନଚିତ୍ରଟି ଗାଈର ପନ୍ହା ଭଳି ଝୁଲୁଛି । ଗୋଲାର୍ଦ୍ଧର ପଛପଟେ ଗୋଟିଏ ଭଦ୍ରମହିଳାର ଅଣ୍ଟା ପର୍ଯ୍ୟନ୍ତ ଚିତ୍ର, ଠିକ୍ ଯେମିତି ଗୋଲାର୍ଦ୍ଧ ପଛପଟୁ ଉଇଁଆସୁଛି । ବିମ୍ବାଧରରେ ତାର ଦରଫୁଟା ହସ, ଆଖିରେ ଆଶାର ଉଜ୍ଜ୍ୱଳତା । ବାଁ କାଖତଳେ ଗୋଟିଏ ଗଞ୍ଜା ସେ ଜାକି ଧରିଚି । ଗୋଟିଏ କୁକୁଡ଼ା କେରଳ ଉପରେ ଛିଡ଼ା ହୋଇଚି । ତାର ପୁଚ୍ଛଟି ଦିଲ୍ଲୀ ଉପରକୁ । ଭଦ୍ରମହିଳାଟିର ଡାହାଣ ହାତଟି ଅତି ଆଦରରେ କୁକୁଡ଼ାର ପିଠି ଉପରେ ଥୁଆ ହୋଇଚି । କୁକୁଡ଼ାଟିର ଠିକ୍ ପୁଚ୍ଛ ତଳକୁ ଗୋଟିଏ ନାଲି ଅଣ୍ଡା ଶୂନ୍ୟରେ ଏବଂ ଅନ୍ୟ ଗୋଟିଏ ଧଳା ଅଣ୍ଡା ଦିଲ୍ଲୀ ଉପରେ । ଦିଲ୍ଲୀ ଉପରେ ଥିବା ଅଣ୍ଡା ଫାଟିଯାଇଛି ଏବଂ

ସେଥିରୁ ଅସଂଖ୍ୟ ଛୁଆ ବାହାରି ଭାରତଯାକ ବ୍ୟାପି ଯାଇଚି ।

ବାପୁ ଚିତ୍ରଟି ଦେଖୁ ଦେଖୁ ଆଶ୍ଚର୍ଯ୍ୟ ଓ ଉତ୍ସାହ ଭରି କହିଲା-ଏ ମାଉସୀ, ନୁହଁ ବୋଉ ? ମୋତେ ଅନେଇଚି ମାଉସୀ !!

ବୋଉ ତାର ଛବି ଆଡ଼କୁ ନ ଚାହିଁ ଉଦାସ ଦୃଷ୍ଟିରେ ପୂର୍ବପରି ଶୂନ୍ୟକୁ ଚାହିଁ କହିଲେ, ହୁଁ... । ସେ 'ହୁଁ' ବାପୁର ପ୍ରଶ୍ନର ଉତ୍ତର କିମ୍ବା ତାଙ୍କର ମନର କୌଣସି ପ୍ରଶ୍ନର ଉତ୍ତର କିମ୍ବା କୌଣସି ଜଟିଳ ସାଂସାରିକ ଅର୍ଥନୈତିକ ସମସ୍ୟାର ସମାଧାନଜ୍ଞାପକ, ତାହା ବୁଝିବା ଅସମ୍ଭବ ।

ଗୋବିନ୍ଦ ବାବୁ ଉଠି ଆସି ବସିଲେ ସ୍ତ୍ରୀଙ୍କୁ ଲାଗି ଓ ଛବି ଆଡ଼କୁ ଚାହିଁ । ଛବି ପାଇଁ ତାଙ୍କର ଆଗ୍ରହ ନାହିଁ । ସେଇ ସୂତ୍ରଧରି ସେ ତାଙ୍କର ବହୁଦିନର ଗୋଟିଏ ଆଶା ପୂରଣ କରାଇ ନେବାର ସୁଯୋଗ ପାଇ ମନେ ମନେ ଖୁସି କଥାଟା ବାପୁ ମନ ଭିତରେ ପୂରାଇ ପାରିଲେ ହେଲା; କିନ୍ତୁ ସେ ଚେଷ୍ଟା କରିବା ଆଗରୁ ଥରେ ସ୍ତ୍ରୀଙ୍କର ମାନସିକ ପାଗ ବିଡ଼ିନେବା ଉଚିତ । ତାଙ୍କର ଶୂନ୍ୟ, ଉଦାସ ଚାହାଣିରୁ ମାନସିକ ଉତ୍ତାପର ପରିମାପ ମିଳୁନାହିଁ, ସର୍ବେନ୍ଦ୍ରିୟ ବର୍ତ୍ତମାନ କାର୍ଯ୍ୟକାରୀ ଅଛି କି ନା ସେ ବିଷୟରେ ମଧ୍ୟ ଘୋର ସନ୍ଦେହ; କାରଣ ଗୋବିନ୍ଦ ବାବୁଙ୍କର ଏତେବଡ଼ ଦେହଟି ଯେ ତାଙ୍କ ଶରୀରକୁ ଲାଗି ଥିଆହେଲା, ସେଥିରେ କୌଣସି ଶାରୀରିକ ବା ମାନସିକ ପ୍ରତିକ୍ରିୟା ଦୃଷ୍ଟ ହେଲାନାହିଁ । ଗୋବିନ୍ଦ ବାବୁ ଆଶ୍ଚର୍ଯ୍ୟ ଭାବରେ ଥରେ ସ୍ତ୍ରୀଙ୍କ ଆଖିକୁ ସାମନାସାମନି ଚାହିଁ ଆଖି ସାମନାରେ ଆଙ୍ଗୁଳି ହଲାଇଲେ । ତଥାପି  କୌଣସି ପ୍ରତିକ୍ରିୟା ନାହିଁ, ଆଖିପତା ଟିକିଏ ହଲିଲା ବି ନାହିଁ । ଆଖି ଡୋଳା ପୂର୍ବପରି ସ୍ଥିର । କେବଳ ମୁଣ୍ଡରେ ଥିବା ଡାହାଣ ହାତର କଡ଼ି ଆଙ୍ଗୁଳିଟି ଟିକିଏ ହଲିଲା । ଗୋବିନ୍ଦ ବାବୁ ଭାବିଲେ, ସେତିକି ଢେର୍ । କାଲ ଠାର କାଲ ମା' ଜାଣେ !

ବାପୁର ପିଠି ଆଉଁସି ଦେଉ ଦେଉ କହିଲେ, ''କଅଣ ପଢ଼ିଲୁ କିରେ ? ଏ ଛବିଟି କଅଣ କିରେ ?''

ବାପୁ ସିଧାସଳଖ କହିଲା, ''ବାପା, କୁକୁଡ଼ା କିଣିଦିଅ, ମୁଁ ରଖିବି । ମାଉସୀ ମୋତେ କହିଲା କୁକୁଡ଼ା ରଖିବାକୁ ।''

-ମାଉସୀ କେତେବେଳେ କହିଲା ?

-ଏଇକ୍ଷୁଣିକା ପରା !

-ମାଉସୀ କାହିଁ ?

-ଏଇପରା, ବାପୁ ଛବିକୁ ଚାହିଁ କହିଲା । ତା' ପରେ ଜିଦ୍ ଲଗାଇ କହିଲା, ହଁ ରଖିବି, ଟୁପ ଘରେ କାଲି କୁକୁଡ଼ା କିଣିଛନ୍ତି ଦୁଇଟା । ମୋତେ ଆଜି କିଣିଦିଅ ।

ଗୋବିନ୍ଦ ବାବୁଙ୍କୁ ଆଉ ପରିଶ୍ରମ କରିବାକୁ ପଡ଼ିଲାନାହିଁ କିଛି । ବାପୁ ମନରେ ତେବେ ଆଗରୁ କ୍ଷେତ୍ର ପ୍ରସ୍ତୁତ ଅଛି । ବୀଜ ପଡ଼ିବା ସାଥେସାଥେ ଗଛ । ଗୋବିନ୍ଦ ବାବୁଙ୍କ ଅନେକ ଦିନର ଆଶା, ଆକାଙ୍କ୍ଷା ସେ କୁକୁଡ଼ା ରଖିବେ । ମନେ ମନେ କେତେ କଳ୍ପନା କରିଛନ୍ତି... ଅଣ୍ଡାର ପୋଚ୍, ଆମ୍‌ଲେଟ୍, ତରକାରି ଖାଇଛନ୍ତି, ତାଙ୍କର ଅନେକ କୁକୁଡ଼ା ହୋଇଚି । ଦିନେ ଦିନେ ରବିବାରରେ ସେଥିରୁ ଗୋଟିଏ ମାରି ରୋଷ୍ଟ କରି ମୁସଲମ କରି ଖାଉଛନ୍ତି ।

କିନ୍ତୁ ଯେତେ ସୁଯୋଗ ସୁବିଧା ଉଣ୍ଡି ସୂଚାଇଲେ ବି ସ୍ତ୍ରୀଙ୍କର ମାନସିକ ଉତ୍ତାପ ସାଙ୍ଗେ

ସାଙ୍ଗେ ବଢ଼ିଯାଏ ଚରମକୁ । ନାକ ଟେକି ପାଏଁ କରି ସେ କହନ୍ତି, ପଠାଣ ଘର କରିବାକୁ ଚାହଁ ତମେ ! ଏ ଘରେ କୁଳଦେବତା ଲକ୍ଷ୍ମୀନାରାୟଣଙ୍କର ପୂଜା ନିଇତି ହୁଏ ମନେରଖ ।

ଗୋବିନ୍ଦ ବାବୁ ଚୈତନ୍ୟଦେବଙ୍କ ଠାଣିରେ ଡାହାଣ ହାତ ପାପୁଲି ଟେକି ମୁଣ୍ଡ ଟୁଙ୍ଗାରି ବୁଝାଇବାକୁ ପାଟି ମେଲା କରିବା ମାତ୍ରକେ ସ୍ତ୍ରୀ ତାଙ୍କର ରଙ୍ଗରଙ୍ଗିଣୀ ମୂର୍ତ୍ତିରେ କହିଉଠନ୍ତି, ମୁଁ ଜୀଇଁଥିଲା ଯାଏ ତା କଦାପି କରାଇ ଦେବିନାହିଁ, ଦେବିନାହିଁ, ଦେବିନାହିଁ । ତ୍ରିବାର ସତ୍ୟ କଲି ।

ଏହାପରେ ଗୋବିନ୍ଦ ବାବୁଙ୍କର ହତାଶ ଚାହାଣିସହ ଦୀର୍ଘନିଃଶ୍ୱାସ ତ୍ୟାଗ ଓ ସଦର୍ପେ ଗୃହତ୍ୟାଗ । ଏ ଏକାଙ୍କିକା ଅନେକବାର ଅଭିନୀତ ହୋଇଯାଇଚି ।

ଆଜି କିନ୍ତୁ ଗୋବିନ୍ଦ ବାବୁଙ୍କର ସବୁ କଳ୍ପନା ଫଳବତୀ ହେବାର ସବୁ ଲକ୍ଷଣ ଦେଖାଦେଉଚି । ବାପୁ ଥରେ ଜିଦ୍ ଧରିଲେ ବାସ୍, ହରି ବ୍ରହ୍ମା ତ ଛାଡ଼, କିବା ଛାର ସେମାନେ, ବାପୁବୋଉ ବି ବାପୁକୁ ଟଳାଇ ପାରିବେ ନାହିଁ । ମନେ ମନେ ହେଉଣ୍ଡିଟାଏ ଗୋବିନ୍ଦବାବୁ ମାରିଦେଲେ ଓ କହିଲେ, ଭଗବାନ୍ ତୁମେ ଅଛ, ନିଶ୍ଚୟ ଅଛ, ମୋର ଶଳା ତାର୍କିକ ମନ ଯେତେ ମନାକରୁ ତମର ଅସ୍ତିତ୍ୱକୁ । ଆପାତ ଦୃଷ୍ଟିରେ ଅସାମଞ୍ଜସ୍ୟ ସାମାନ୍ୟ ସାମାନ୍ୟ କଥାକୁ କାର୍ଯ୍ୟକାରଣ ସମ୍ବନ୍ଧରେ ଗୁନ୍ଥି କି ସୁନ୍ଦର ଭାବରେ ମୋର ଇଚ୍ଛା ପୂରଣ କରୁଚ ତମେ !! ବାପୁର ଛବି ବହି କିଣିବାର ଜିଦ୍ ଓ ମୋର କୌଣସି ଉଦ୍ଦେଶ୍ୟ ନ ରଖି, ନିଛକ ଛବି ବହି ହିସାବରେ, 'କୁକୁଡ଼ା ଚାଷ' ବହି ଆଣିଦେବାକୁ ଯୋଖି ଦେଇ ଆଜି ସକାଳୁ ମୋର ଇଚ୍ଛା ପୂରଣର ସୁନ୍ଦର ପରିସ୍ଥିତି ସୃଷ୍ଟି କରୁଚ ତୁମେ !!!

-ଚୁପ୍, ବାପୁ ! ବୋଉ ଗର୍ଜି ଉଠିଲେ ।

ଗୋବିନ୍ଦ ବାବୁ ହଠାତ୍ ବୁଝିପାରିଲେ ନାହିଁ, ଗର୍ଜନ କାହାଉପରେ । ଚମକି ପଡ଼ିଲେ; କିନ୍ତୁ ନା, ବାପୁଆଡ଼େ ତରାଟି ଚାହିଁଛନ୍ତି ସେ ।

କିନ୍ତୁ ବାପୁ କି ସେଥିରେ ଡରିଯିବା ମଣିଷ । ବୀର ପୁରୁଷର ପୁଅ ସେ ହେଁ...ହେଁ... । ଗୋବିନ୍ଦ ବାବୁ ମନେ ମନେ ବାପୁକୁ ଉତ୍ସାହିତ କଲେ, ଛାଡ଼ନା ବାପୁ, ହୁଁ ଚଲା ଜିଦ୍ ।

ବୋଉକୁ ଶକତ୍ ଠେଲାଟାଏ ମାରିଦେଇ ବାପୁ ଉଠିଗଲା । ଗୋବିନ୍ଦ ବାବୁ ହତାଶ ହେଲେ... ହ୍ୟାପ, ଶିଆଳଛୁଆ କେବେ ସିଂହ ହେଲାଣି ।

ହେଇଚି । ଏଇ ଯେ ବାପୁ ପ୍ରବେଶ କରୁଛି ଗୋଟିଏ କୁକୁଡ଼ାକୁ ଦଉଡ଼ିରେ ଟାଣି ଟାଣି ।

ଗୋବିନ୍ଦ ବାବୁ ଓ ତା'ଙ୍କ ସ୍ତ୍ରୀ ଶୀତଳ ଯୁଦ୍ଧ ଭୁଲିଯାଇ ଆଶ୍ଚର୍ଯ୍ୟ ଭାବରେ ସମସ୍ୱରରେ ପଚାରିଲେ, ''କିରେ ଏଟା କେଉଁଠୁ ଆଣିଲୁ ?''

''ମାଉସୀ ଦେଲା । କାଲି କହିଥିଲା ଆଜି ଦବାକୁ ।'' ଦୁହେଁ ବୁଝିଲେ ବାପୁ ଟୁପବୋଉକୁ କାଲି କହି କୁକୁଡ଼ାଟି ବାଗେଇଚି । ଟୁପବୋଉ ଥିଲାଘର ଝିଅ, ଥିଲାଘର ବୋହୂ, ବାପୁ ବୋଉର ଆଖି ଦପ୍ କରି ଜଳିଉଠିଲା । ସେ ଗର୍ଜି ଉଠି କହିଲେ, ''ଏ ଟୋକା ସବୁଠି ମୋ ମୁଣ୍ଡ ତଳକୁ କରିଦେବ । ଦେ ଫେରାଇ ଦେଇ ଆ ତାକୁ ।''

ବାପୁ ହସି ହସି ତାକୁ ଧରି ଛିଡ଼ା ହୋଇଚି ବୋଉର କଥାକୁ ଖାତିର ନ କରି । କୁକୁଡ଼ାଟି କାହାରି ପ୍ରତି ଭ୍ରୂକ୍ଷେପ ନ କରି ସେଇ ବନ୍ଧା ଅବସ୍ଥାରେ ମୁଢ଼ି ଖୁମ୍ପି ଖାଇସାରି ଜଦାଟି ଖାଇବା ଯୋଗ୍ୟ କି ନୁହେଁ ପରୀକ୍ଷା କରୁଚି । ବାପୁବୋଉ ଠାଏକିନା ଏକ ଚାପୁଡ଼ା ମାରି ବାପୁ ହାତରୁ ଦୌଡ଼ିଟି

ଛଡ଼ାଇଦେଲେ । ବାପୁ ପ୍ରଥମେ କାନ୍ଦି ଗଡ଼ିଗଲା । ଏଟା ମାଆର ବିହଘଷା ହୋଇଯାଇଥିବାରୁ କାଟୁ କଲାନାହିଁ । ସେ ତେଣୁ ଉଠି ଲୋଟା, ବାଲଟି ସବୁ ଅଗଣାକୁ ଫୋପାଡ଼ିବାକୁ ଲାଗିଲା । ସେ ସବୁ ପ୍ରତି ଭ୍ରୂକ୍ଷେପ ନ କରି ବାପୁବୋଉ ଯେତେବେଳେ କୁକୁଡ଼ାଟି ଟାଣି ଟାଣି ଫେରାଇ ଦେବାକୁ ଚାଲିଲେ, ବାପୁ ଅନ୍ୟ ପନ୍ଥା ଧରିଲା । ବୋଉର ପାଦ ଦୁଇଟି ଧରି କରୁଣ ଭାବରେ ଚାହିଁଲା ।

ବାପୁବୋଉ ହସି ପକାଇ କହିଲେ, ''ହଉ ଯା ରଅଖ ।'' ବାପୁ ଆନନ୍ଦରେ ନାଚି ନାଚି ଚାଲିଗଲା କୁକୁଡ଼ାକୁ ବାନ୍ଧିବାକୁ । ବାପୁବୋଉ ଟୁପବୋଉ ଘରକୁ ଗଲେ ବାପୁର ଆଚରଣ ପାଇଁ କ୍ଷମା ମାଗି କୁକୁଡ଼ାର ଦାମ ଦେଇଦେବାକୁ ।

ଏହାପରେ କୁକୁଡ଼ାର ଗୋଟିଏ ସାନ ଘର ହୋଇଚି । ତା ପାଇଁ ଧାନ କିଣା ହେଇଚି । ତାକୁ ଏକା ଲାଗୁଚି ବୋଲି ଆଉ ଗୋଟିଏ କୁକୁଡ଼ା କିଣା ହୋଇଚି ।

କିନ୍ତୁ ଅଣ୍ଡା କାହିଁ । ମାସେ ହୋଇଗଲା ଅଣ୍ଡା କାହିଁ !! ଗୋବିନ୍ଦ ବାବୁ ଦିନେ ରାଗିଯାଇ କୁକୁଡ଼ାର ଚରିତ୍ର ବିଷୟରେ ତୀବ୍ର ମନ୍ତବ୍ୟ କଲେ, କୁକୁଡ଼ା କୁଳରେ ଏ ଦୁଇଟା ସତୀ ଆସିଲେ ହ୍ୟାପ୍ ଆମ ଘରକୁ ।

କିନ୍ତୁ ନା, କୁକୁଡ଼ାମାନଙ୍କ ଦୋଷ ନୁହେଁ, ଏକଥା ଦିନେ ବୁଝିପାରିଲେ ସେ । ବାପୁ ଯେ ତାକୁ ଗୋଡ଼େ ଗୋଡ଼େ ଜଗିଛି । ଗଞ୍ଜା ଗୋଡ଼ାଇବା ମାତ୍ରକେ ବାପୁ ତାକୁ ଘଉଡ଼ାଇ ଦେଉଚି । ଏଥକୁ ଉପାୟ । ବାପୁକୁ ଏ ବିଷୟରେ କିଏ ବୁଝାଇବ, କେମିତି ବୁଝାଇବ, ବାପୁ ବୁଝିଲେ ତ ?

ଗୋବିନ୍ଦ ହତାଶାର ହସ ହସି ସ୍ତ୍ରୀଙ୍କୁ କହିଲେ । ବାପୁବୋଉ ମୁରୁକି ହସି କହିଲେ, ''ଠିକ୍ ହୋଇଚି, ଅଣ୍ଡାଖିଆ ବାହାରିଗଲା ଏଥର ।'' ତାପରେ ଗମ୍ଭୀର ହୋଇ କହିଲେ, ''ଭଲ ହୋଇଚି, ଦିନରାତି ଘରେ ପିଣ୍ଡାରେ ହଗୁଛନ୍ତି, ଧୋଇ ଧୋଇ ମୁଁ ହଇରାଣ ହେଲିଣି ।''

ଏହି ସମୟରେ ଗୋଟିଏ ଗଞ୍ଜା ବାପୁର କୁକୁଡ଼ାକୁ ଗୋଡ଼େଇ ଗୋଡ଼େଇ ଧାଇଁଆସିଲା ଘର ଭିତରକୁ । ବାପୁ ଗୋଡ଼େଇଚି ଗଞ୍ଜା ପଛରେ ଟେକା ମାରୁ ମାରୁ । ଗଞ୍ଜାର ସେଥିପ୍ରତି ଭ୍ରୂକ୍ଷେପ ନାହିଁ । ବାପୁବୋଉ ବାପୁକୁ କୋଳକୁ ଟେକିନେଲେ ବାଟରୁ । ବାପୁ ବୋଉ କୋଳରେ ଛାଟିପିଟି ହୋଇ କହିଲା, ''ଛାଆଡ଼େ ମତେ, ମୋ କୁକୁଡ଼ାକୁ କାମୁଡ଼ିଦେବ ସେଟା ।''

ବାପୁବୋଉ କହିଲେ, ''ଆରେ ଶୁଉଣୁ ! ସେ ବଡ଼ କୁକୁଡ଼ା ଦେହରେ ଅନେକ ଛୁଆକୁକୁଡ଼ାର ପୋକ ଅଛି । ସେ କାମୁଡ଼ି ତୋ କୁକୁଡ଼ାକୁ ଧରିଲେ... ଏଁ ...ଏଁ... ବୁଝିଲୁ... (ଅପାଙ୍ଗରେ ଗୋବିନ୍ଦ ବାବୁଙ୍କ ଆଡ଼େ ଟିକିଏ ଚାହିଁ) ବୁଝିଲୁ, ତୋ କୁକୁଡ଼ାଦେହକୁ ସେ ପୋକସବୁ ଚାଲିଯିବେ । ତୋ କୁକୁଡ଼ା ସେଇଠୁ ନିଇତି ଗୋଟାଏ ଅଣ୍ଡାଦେବ, ଆଉ ସେ ଅଣ୍ଡାସବୁରୁ କେତେ କୁନିଛୁଆ ହେବେ ।''

ବାପୁ ଛାଟିପିଟି ହବା ବନ୍ଦକରି କାନ ଡେରି ଶୁଣିଲା । କୋଳରୁ ଓହ୍ଲାଇ କୁକୁଡ଼ା ଆଡ଼େ ଚାହିଁଲା । ସେତେବେଳକୁ ଗଞ୍ଜା ଚାଲିଗଲାଣି ତାର ନିୟମ ପାଳି ।

ବାପୁ ଯେତେବେଳେ ଦେଖିଲା ସତକୁସତ ଏହାର କିଛିଦିନପରେ ତା'ର କୁକୁଡ଼ା ଅଣ୍ଡା ଦେଲା, ଭାରି ଖୁସିହୋଇ ସେ ବୋଉକୁ ଦେଖାଇଲା । ଏହାପରେ ସେ ଗଞ୍ଜାକୁ ଆଉ ବାଧା ଦେଲାନାହିଁ ।

ଗୋବିନ୍ଦ ବାବୁଙ୍କର ବର୍ତ୍ତମାନ ଅନେକ ଗୁଡ଼ିଏ କୁକୁଡ଼ା । ପ୍ରତିଦିନ ଅଣ୍ଡା ମଧ ହୁଏ, ଚାରିଟାରୁ କମ ନୁହେଁ । ଗୋବିନ୍ଦବାବୁ ଆନନ୍ଦରେ ଆମଲେଟ୍ ପୋଚ ଖାଉଛନ୍ତି, କିନ୍ତୁ କୁକୁଡ଼ା ରୋଷ୍ଟ ବା ତରକାରି ଖାଇପାରି ନାହାନ୍ତି । ବାପୁବୋଉର ସେଥିରେ ଘୋର ଆପତ୍ତି, ଯାହାକୁ ପାଳିଚି ମୁଁ ତାକୁ ମାରିବି କି ! ରାକ୍ଷସୀ ହେବି କି !!

ଗୋବିନ୍ଦ ବାବୁଙ୍କର କିନ୍ତୁ ରାକ୍ଷସଭାବ ଗଲାନାହିଁ । ବାପୁବୋଉ ଦିନକୁ ଦିନ ଉତ୍କ୍ଷିପ୍ତ ହୋଇଉଠୁଛନ୍ତି । ଘର ପିଣ୍ଡା ଧୋଇ ଧୋଇ ସେ ସତେ ହଇରାଣ । ବାପୁର ଆଉ କୁକୁଡ଼ା ପ୍ରତି ସେତେ ନଜର ନାହିଁ । ଏହି ସୁବିଧା ନେଇ ବାପୁବୋଉ ଦିନେ ସ୍ଥିରକଲେ ପଡ଼ିଶାଘରକୁ ସବୁ କୁକୁଡ଼ା ଦେଇଦେବେ ।

ଦିନେ ସକାଳୁ ବର୍ଷା ଅବିରାମ ପଡୁଚି । ପଡ଼ିଶାଘରର ଚାକର ଆସିଚି କୁକୁଡ଼ାଗୁଡ଼ିକୁ ନେଇ ଯିବାକୁ । ବାପୁବୋଉ ରୋଷେଇ ଶାଳରୁ ବାହାରିଆସିଲେ କୁକୁଡ଼ା ଘରକୁ ଦେଖିବାପାଇଁ, ସେମାନେ ଅଛନ୍ତି କି ନା । ଗୋବିନ୍ଦବାବୁ ଖଟ ଉପରେ ଶୋଇ ଭାବୁଛନ୍ତି କିପରି ସ୍ତ୍ରୀଙ୍କୁ ବାଧାଦେବେ । ବାପୁବୋଉ ପାଦ ଟିପି ଟିପି ଆସି ଗୋବିନ୍ଦବାବୁଙ୍କୁ ହାତଠାରି ଡାକି ଚୁପ୍ ଚୁପ୍ କରି କହିଲେ, ''ଦେଖିବ ଆସ ।'' ମୁହଁରେ ତାଙ୍କର ଏକ ଉଜ୍ଜ୍ୱଳ ଆଭା ଦେଖି ଗୋବିନ୍ଦ ଆଶ୍ଚର୍ଯ୍ୟ ହୋଇଗଲେ ।

ଗୋବିନ୍ଦ ବ୍ୟାପାର କଅଣ ବୁଝି ନଥିଲେ ମଧ ସ୍ତ୍ରୀଙ୍କ ପରି ପାଦ ଟିପି ଟିପି ସ୍ତ୍ରୀଙ୍କ ଅନୁଗମନ କଲେ । କୁକୁଡ଼ାଘର ପାଖରେ ଦେଖିଲେ ଗୋଟିଏ କୁକୁଡ଼ାଛୁଆ ମୁଣ୍ଡ ତଳକୁ ପୋତି ଛିଡ଼ା ହୋଇଚି । ଆଉ ଗୋଟିଏ ବଡ଼ କୁକୁଡ଼ା କାଠଗଦା ଉପରେ ବସିଚି, ଆଉ ଛନ ଛନ ହୋଇ ଚାରିଆଡ଼କୁ ଚାହୁଁଚି । କଅଣ ଦେଖିବାର ଅଛି, ଗୋବିନ୍ଦ ବାବୁ ବୁଝିପାରିଲେ ନାହିଁ ।

ବାପୁ ବୋଉ କହିଲେ, ଆହା, ଦେଖି ପାରିଲନାହିଁ । କୁକୁଡ଼ାଙ୍କର ଏମିତି ଭାବ ଅଛି କି ? ଏଇ କୁକୁଡ଼ାର ମା' ବର୍ଷାରୁ ଆସି ଏଇଠି ପିଣ୍ଡାରେ ଛିଡ଼ା ହେଲା, ଆଉ କକ୍‌କରକ-ଆ...କରି ଡାକିଲା । ଏଇ ସାନଛୁଆଟି ବର୍ଷାରେ ଭିଜି ଭିଜି ଆସି ତା ପାଖରେ ଛିଡ଼ାହେଲା । ଦୁହେଁ ଦୁହିଁଙ୍କୁ ଚାହିଁ ମୁହଁକୁ ମୁହଁ ଲଗାଇ ଅନେକ କ୍ଷଣ ଛିଡ଼ା ହେଲେ । କଅଣ କଥାବାର୍ତ୍ତା ହେଲାପରି ଲାଗିଲା, ନିଶ୍ଚୟ ମା' ତାର ଛୁଆକୁ ଗାଳିଦେଲା କାହିଁକି ବର୍ଷାରେ ଭିଜୁଚି ବୋଲି । ତା' ପରେ ଛୁଆ କଅଣ କହିଲା କେଜାଣି ମା' ତାକୁ ଦି ଚାରି ଖୁମ୍ପା ଦେଇ ମୁହଁଛାଟି ଚାଲିଗଲା । ଛୁଆଟି ସେତିକିବେଳୁ ମୁହଁ ତଳକୁ କରି ଛିଡ଼ାହୋଇଚି ସେଠି ଆଉ ଦରଷାକୁ ଯାଉନାହିଁ । କି ସୁନ୍ଦର ମ ସତେ ! ତାଙ୍କର ମା' ମାନେ ଛୁଆକୁ ଏମିତି ପାଳନ୍ତି ! ନାଇଲୋ ମା' ମୋ କୁକୁଡ଼ାକୁ ମୁଁ କାହାକୁ ଦେବିନାହିଁ । କହୁ କହୁ ତାଙ୍କର ଆଖି ଛଳ ଛଳ ହୋଇଗଲା ।

ଗୋବିନ୍ଦ ବଡ଼ କୁକୁଡ଼ା ଆଡ଼େ ଚାହିଁ କହିଲେ, ଆଉ ଏ କାହିଁକି ଏଠି ବସିଚି ?

-ଅଣ୍ଡା ଦବ ଯେ, ଏଇ କ୍ଷଣିକା ଚାରିଆଡ଼ ପାଟିକରି କମ୍ପାଉଥିଲା ସେ । ସତେ ଯେମିତି କହୁଥିଲା, ଅଣ୍ଡା ଦବା ଜାଗା ଦେଖାଇ ଦିଅ ମୋତେ । ଯେମିତି ଅଣ୍ଡା ଦେଇ ସାରିବ ସେଇଠୁ ପୁଣି ପାଟିକରି କମ୍ପେଇ କହିବ, ଅଣ୍ଡା ଦେଇ ସାରିଲି, ଅଣ୍ଡା ନେଇ ଯା ଖାଇବ ! କି ଆଶ୍ଚର୍ଯ୍ୟ ସତେ !

ଗୋବିନ୍ଦ ବାବୁଙ୍କ ଆଖି ବି ଛଳ ଛଳ ହୋଇଗଲା । ସେ କହିଲେ, ସତେ କି ଅଦ୍ଭୁତ ସୃଷ୍ଟି ଏମାନେ । ସକାଳୁ ଉଠିଲେ, ଚାଲିଗଲେ ବାହାରକୁ ଖାଦ୍ୟ ଖୋଜିବା ପାଇଁ । ଦିନଯାକ ବାହାରେ

ଖାଇ ସନ୍ଧ୍ୟାବେଳକୁ ଘରକୁ ଆସିଲେ, ରହିଲେ । ରଖିବାପାଇଁ ପଇସାଟିଏ ବି ଖର୍ଚ୍ଚ ନାହିଁ । ସବୁଠୁ ପୁଷ୍ଟିକର ଖାଦ୍ୟ ଏମାନେ ଯୋଗାଉଛନ୍ତି; କିନ୍ତୁ ଅଣ୍ଡା ଦେଲାପରେ ତାକୁ କିଏ ନେଲା କି ଖାଇଲା ସେଥିପ୍ରତି ତାଙ୍କର ଭ୍ରୂକ୍ଷେପ ନାହିଁ । ଯଦି ଥାଆନ୍ତା, ତେବେ ଆମ ପକ୍ଷରେ କେତେ ଅସୁବିଧା ହୁଅନ୍ତା କୁହ ତ ?

-ପୁଣି ଦେଖ ସବୁଠାରୁ ବଳକାରକ ଖାଦ୍ୟ ଯୋଗାଉଥିଲେ ବି ଏମାନେ କେତେ ଭୀରୁ !!

-ଅଦ୍ଭୁତ ସତେ ! ଠିକ୍ ରାତି ତିନିଟାବେଳେ ବ୍ରାହ୍ମମୁହୂର୍ତ୍ତରେ ସବୁ କୁକୁଡ଼ାଯାକ ଡାକିଉଠିବେ, ଚକ୍ରକୁ ଧ...ଅ..ର, ରକ୍ଷା କ...ଅ...ର । ବାପୁବୋଉ ହାତଯୋଡ଼ି ନମସ୍କାର କରି କହିଲେ ।

ଗୋବିନ୍ଦ ଛଳ ଛଳ ଆଖିରେ ଫେରି ଆସି ଖଟ ଉପରେ ଶୋଇ ଭାବିବାକୁ ଲାଗିଲେ- ସୃଷ୍ଟିର ଅଦ୍ଭୁତ ନିୟମ । କିଛି ତାର କଳନା ପାଇଲେ ନାହିଁ । ଉପନିଷଦର ଗୋଟିଏ ଶ୍ଳୋକ ତାଙ୍କର ମନେପଡ଼ିଲା, ''ଯସ୍ୟାମତଂ ତସ୍ୟ ମତଂ ମତଂ ଯସ୍ୟ ନ ବେଦ ସଃ, ଅବିଜ୍ଞାତଂ ବିଜାନତାଂ ବିଜ୍ଞତମବିଜାନତାମ୍ ।'' ଯେଉଁମାନେ ସମ୍ୟକ୍ ଜ୍ଞାନବାନ୍ ସେମାନେ ବ୍ରହ୍ମକୁ ଜ୍ଞାତ ବୋଲି ମନେକରନ୍ତି ନାହିଁ, ଯେଉଁମାନେ ସମ୍ୟକ ଜ୍ଞାନବାନ୍ ନୁହନ୍ତି, ସେମାନେ ମନେକରନ୍ତି ବ୍ରହ୍ମ ଜ୍ଞାତ ।

ସେଦିନ ରାତି ନପାହୁଣୁ ଗୋବିନ୍ଦବାବୁଙ୍କ ନିଦ ଭାଙ୍ଗିଗଲା । ତାଙ୍କର ଶୋଇବା ଘର ଦୁଆର ପାଖରେ କୁକୁଡ଼ାମାନଙ୍କର ଐକ୍ୟତାନରେ । ପ୍ରତିଦିନ ଏପରି ଶୁଅନ୍ତି; କିନ୍ତୁ ଆଜି ତା'ର ଭାଷା ସେ ସ୍ପଷ୍ଟ ବୁଝି ପାରିଲେ, ବାପୁବୋଉକୁ ଆସ୍ତେ ହଲାଇ ଉଠାଇ ଦେଇ କହିଲେ, ଶୁଣୁଚ, କୁକୁଡ଼ାମାନେ କହୁଚନ୍ତି, ବାଡ଼ି କବାଟ ଫିଟାଇ ଦିଅ, ଆମେ ବାହାରକୁ ଯିବୁ ନିଜ ନିଜ ଧନ୍ଦାରେ ।

ବାପୁବୋଉ କାନରେ କହିଲେ, ସତେ ମ !!!

ଦୁହେଁ କବାଟଫିଟାଇ ବାହାରକୁ ଆସିଲେ ବାଡ଼ିକବାଟ ଫିଟାଇ ଦେବାକୁ । କୁକୁଡ଼ାଗୁଡ଼ିକ ସେମାନଙ୍କ ପଛେ ପଛେ ଦୌଡ଼ିଲେ । ଯେମିତି ବାଡ଼ି କବାଟ ଫିଟାହୋଇଚି, ଗିଡ଼ିଗିଡ଼ା ମାରି ସମସ୍ତେ ଦୌଡ଼ିଗଲେ ବାହାରକୁ ।

ଗୋବିନ୍ଦବାବୁ ଓ ବାପୁବୋଉ ମୁଗ୍ଧ ଭାବରେ ଅନାଇ ରହିଲେ ସେମାନଙ୍କୁ । ବାପୁବୋଉ ଆକାଶକୁ ଚାହିଁ ନମସ୍କାର କରି କହିଲେ, ହେ ଭଗବାନ୍...

ଗୋବିନ୍ଦବାବୁ କହିଲେ, ଇୟାଡ଼କୁ ବି ଚାହଁ । ଘାସକୁ ଦେଖ, କୁକୁଡ଼ାକୁ ଦେଖ । ହେଇ ଦେଖ ଦେଖ ! ପିମ୍ପୁଡ଼ି ଧାର ଲାଗିଛି କାନ୍ଥରେ । ମା' ପିମ୍ପୁଡ଼ିମାନେ ମୁହଁରେ ଅଣ୍ଡାଟିମାନ ଧରି ତରତରହୋଇ ଧାଇଁଛନ୍ତି । ଦେଖ ମ, ଗୋଟାଏ ସାନ ବୁଢ଼ୀଆଣୀ ସେ ଧାର ପାଖରେ ଛକି ବସୁଚି, ଆଉ ସୁବିଧା ପାଇବା ମାତ୍ରକେ ପିମ୍ପୁଡ଼ି ମୁହଁରୁ ଅଣ୍ଡାଟିଏ ଛଡ଼ାଇନେଇ ପଳେଇଯାଉଚି !! ଏ ସବୁ ତେବେ ଭଗବାନଙ୍କ ଲୀଳା । ମହା ମୁଷ୍କିଲିଆ କଥା !!

# ଛାଡ଼ପତ୍ର

ଦିନଟା ଆଷାଢ଼ର ପ୍ରଥମ ଦିନ ନୁହେଁ । ରମାରଞ୍ଜନ ମଧ ଠିକ୍ କାନ୍ତ ନୁହନ୍ତି, ବୟସ ତାଙ୍କର ଚାଳିଶ । ଗୁରୁ ବିରହର ଯନ୍ତଣା ମଧ୍ୟ ସେ ଅନୁଭବ କରୁନାହାନ୍ତି । ଗୁରୁମିଳନର ଯନ୍ତ୍ରଣା ସେ ବର୍ତ୍ତମାନ ଅଙ୍ଗେ ଅଙ୍ଗେ ଅନୁଭବ କରୁଥିଲେ । ରମାରଞ୍ଜନଙ୍କ ପିତା ଯେ କଅଣ ଭାବି ପୁତ୍ରର ନାଁ ରଖିଥିଲେ 'ରମାରଞ୍ଜନ' ସେ କଥା ସେଇ ଜାଣନ୍ତି; କିନ୍ତୁ ବିବାହ ପରେ ତାଙ୍କର ବନ୍ଧୁମାନେ କହିଲେ, ନାଁଟି ତାଙ୍କର ସାର୍ଥକ ହେଲା । ବନ୍ଧୁମାନେ ଯଦିଓ ତାଙ୍କର ମତ ଏ ପର୍ଯ୍ୟନ୍ତ ବଦଳାଇ ନାହାନ୍ତି, ରମାରଞ୍ଜନ ବିବାହ କରିବାର ଦୁଇବର୍ଷ ଭିତରେ-ଠିକ୍ କହିବାକୁ ଗଲେ ତାଙ୍କର ପ୍ରଥମ ସନ୍ତାନ ଜନ୍ମପରେ -ଅନୁଭବ କଲେ, ତାଙ୍କର ସେ ନାଁ' ଆଜି ତାଙ୍କୁ ଉପହାସ କରୁଛି । ତଥାପି ଘଡ଼ଘଡ଼ିର କଡ଼ କଡ଼ ଶବ୍ଦ, ବିଜୁଳିର ମୁହୁର୍ମୁହୁ ଝଲକ ଏବଂ ବରଷାର ଅବିରାମ ଝର ଝର ଝମ୍ ଝମ୍ ସଙ୍ଗୀତ ଆଜି ଟିକିଏ କାନ୍ତଭାବ ଆଣିଦେଲା । ପଡ଼ିଶା ଘରର ଯୁବତୀ ବଧୂ ଗ୍ରାମୋଫୋନ୍‌ରେ ରେକର୍ଡ଼ ଲଗାଇଚନ୍ତି- 'ଏମନ ଦିନେ ତାରେ ବା ଯାୟ, ଏମନ ଘନ ଘୋର ବରିଷାୟ ।' ଏପରି ଦିନରେ କାହାକୁ କିଏ କଅଣ କୁହେ, ଜାଣିବାକୁ ଆଗ୍ରହାନ୍ୱିତ ହୋଇ ରମାରଞ୍ଜନ ପଡ଼ିଶା ଘରଆଡ଼ ଝରକା ଖୋଲିଦେଇ ଛିଡ଼ାହୋଇଚନ୍ତି କି ନାହିଁ ପଛଆଡ଼ୁ ଶୁଭିଲା, ଶୁଣୁଚ ହୋ, ଏ ବରଷାରେ ମନି ଇସ୍କୁଲରୁ ଆସି ମନା କରୁକରୁ ଖେଳିବାକୁ ପଳେଇଚି, ତୁମେ ତ କିଛି କହିବନି । ଚାକର ଟୋକାଟ ବାଇଗଣ ସେର ପାଞ୍ଚ'ଣା ଜାଗାରେ ଛ'ଅଣା ଦେଇ ଆଣୁଚି । ମଲା ! କୁଆଡ଼େ ଆକାଶଟାକୁ ଚାହିଁଚ ମ ? ହା ମୋ କପାଳ... ?

କପାଳରେ କରାଘାତର ପ୍ରଚଣ୍ଡ ଶବ୍ଦ ଶୁଣି ରମାରଞ୍ଜନ ବାବୁ କିଛିକ୍ଷଣ ଆଖି ବୁଜି ଛିଡ଼ା ହେଲେ ଏବଂ ମନେ ମନେ କହିଲେ- ହାୟ କବୀନ୍ଦ୍ର ! ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ଶାନ୍ତଭାବରେ ପଚାରିଲେ, ''କଅଣ କହୁଥିଲ ରମା ?''

ରମାରଞ୍ଜନ 'ରମା' ବୋଲି ଏପରି ଭାବରେ ସମ୍ବୋଧନ କଲେ, ସତେ ଯେପରି କୌଣସି ପ୍ରେମିକ ପ୍ରେମିକାର ନା ଉଚ୍ଚାରଣ କରି ଅସୀମ ଆନନ୍ଦ ପାଉଚି; କିନ୍ତୁ ବୃଥା । ରମାଦେବୀ କହିଲେ, ''ଦେଖ ! ମୁଁ ତୁମକୁ ହଜାର ଥର କହିଚି ମୋ ନା' ଧରି ଡାକିବ ନାହିଁ । ସେ ସବୁ ମୋତେ ଭଲ ଲାଗେନାହିଁ । ତା' ଛଡ଼ା ପୁଅ ବଡ଼ ହେଲାଣି, ସେ ସବୁ ଗେଲ ଆଉ ଭଲ ଲାଗୁନାହିଁ । ତୁମେ ମୋତେ 'ମନି ବୋଉ' ଡାକିବ ।''

ରମାରଞ୍ଜନ ପୁଣି ଆଖିବୁଜି ପଚାରିଲେ, ''କଅଣ କହୁଥିଲ ମନିବୋଉ ?''

-କିଛି ଶୁଣିନାଆଁ ? ହା ଭଗବାନ୍ !! ମୋର ସବୁ କଥା କଅଣ ତୁମର ଏ କାନବାଟେ ପଶି ସେ କାନବାଟେ ବାହାରିଯାଏ ?

ରମାରଞ୍ଜନବାବୁ ଏଥର ବିରକ୍ତ ହୋଇ କହିଲେ, ''ମନିବୋଉ, ତୁମ କଥାଗୁଡ଼ିକ ମୋ ଏ କାନବାଟେ ପଶି ସେ କାନବାଟେ ବାହାରିଯାଏ ବୋଲି ଆକ୍ଷେପ କରୁଛ; କିନ୍ତୁ ମୋ କଥାଗୁଡ଼ାକ ଯେ ତୁମ ଦୁଇ କାନବାଟେ ପଶି ମୁହଁବାଟେ ଅନ୍ୟବାଟେ ଅନର୍ଗଳ ବାହାରେ, ସେ କଥା ଦେଳକୁ...''

ଆଉ କିଛି ନ କହି କାମିଜ ପିନ୍ଧି ଛତାଧରି ରମାରଞ୍ଜନ ବାହାରିପଡ଼ିଲେ ପ୍ରେମମୟ ଘରକୁ । ପ୍ରେମମୟ ତାଙ୍କର ଆବାଲ୍ୟ ଅନ୍ତରଙ୍ଗ ବନ୍ଧୁ । ବର୍ତ୍ତମାନ ମନସ୍ତତ୍ତ୍ୱର ଅଧ୍ୟାପକ । ଗଳ୍ପର ଗୋଟିଏ ଜାହାଜ ସେ ।

ପ୍ରେମମୟ ବାବୁଙ୍କ ବୈଠକଘରେ ଛତାଟି ଡେରିଦେଇ ଆରାମ ଚୌକିରେ ଦେହ ଢାଳିଦେଇ ସେ ଆଜ୍ଞାଦେଲେ, ''ପ୍ରେମ, ଚାହା ବାଲଟିଏ ଓ ଥାଳିଏ ପକୁଡ଼ି ତୋ ଚାକରକୁ ଆଣିବାକୁ କହ । ସନ୍ଧ୍ୟାକୁ ଆଣିବା ପାଇଁ ବାପା କହନା ।''

-କିରେ, ସନ୍ଧ୍ୟା ପ୍ରତି ତୋର ଆଜି ବିତୃଷ୍ଣା କାହିଁକି ? ନା ଦେଖେଇ ହେଉଚୁ ନିଜର ଉଦାସୀନତା । ମୁଁ ତ ତୁମ ଦୁଇଜଣଙ୍କ ଚାଲିଚଳଣ ଦେଖି ଛାଡ଼ପତ୍ରର ବନ୍ଦୋବସ୍ତ...

ରମାରଞ୍ଜନ ଆରାମଚୌକିରୁ ଉଠିପଡ଼ି ହଠାତ୍ ପୂର୍ଣ୍ଣପ୍ରାଣ ସମର୍ଥନ ଦେଇ ଆଗ୍ରହ ସହକାରେ କହିଲେ, ''ସ୍ତ୍ରୀକୁ ଛାଡ଼ପତ୍ର ଦେବୁ ? ଦେ ଭାଇ, ଦେଇ ଦେ । କାରଣ ସକାଶେ ଡର ନା ତୁ' ।''

ପ୍ରେମମୟ ହସି କହିଲେ, ''ଓଃ ହୋ ବୁଝିଲି, ସ୍ତ୍ରୀ ସହିତ କଳିଆକରି ଆସିଚୁ...''

ରମାରଞ୍ଜନ ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ କହିଲେ, ''ନା ପ୍ରେମ ! ଆଉ ଚଳିବ ନାହିଁ । ଜୀବନଟା ବୃଥା ଗଲା ଭାଇ । ଟିକିଏ ବି ସରସତା ପାଇଲିନାହିଁ ମୋ ବିବାହିତ ଜୀବନରେ । ଯଦି ବୟସ ବା ସୁବିଧା ଥାଆନ୍ତା, ସତ କହୁଚି, ଛାଡ଼ପତ୍ର ଦେଇ ଆଉ ଗୋଟିଏ...ମାନେ, ଆଉ ଗୋଟିଏ... । ସବୁବେଳେ ଖାଲି ଗଜର୍ ଗଜର୍, ମଣିଷ ଆଉ କେତେ ସହିବ କହିଲୁ... ?''

ପ୍ରେମମୟ ହସି କହିଲେ, ''ଛାଡ଼ପତ୍ର ଦେବୁ, ନା ? ତେବେ ଗୋଟାଏ କଥା କହୁଚି ଶୁଣ । ଜଣେ ଧନୀ ଭଦ୍ରଲୋକ ଥରେ ତୀର୍ଥଯାତ୍ରା କରିବାକୁ ଦୂର ଦେଶକୁ ବାହାରିଲେ । ଯିବାବେଳେ ତାଙ୍କ ସ୍ତ୍ରୀକୁ କହିଲେ, ଦେଖ, ମୁଁ ଦେଶ ବିଦେଶକୁ ବୁଲି ଯାଉଚି । କେବେ ଫେରିବି, ଫେରିବି କି ନାହିଁ, କିଏ କହିବ । ମୋର ବିଶ୍ୱାସ ମୋର ଅନୁପସ୍ଥିତିରେ ତୁମେ ନିଜକୁ ଚଳାଇ ନେଇ ପାରିବ । ଯଦି ନିହାତି ନ ପାର, ତେବେ ଗୋଟିଏ ଉପାୟ ମୁଁ କହିଯାଉଚି, ତାହା ପାଳନ କରିବ । ଏଇ ଯେ ସାମନାରେ ସର୍ବସାଧାରଣ ପାଇଖାନା ଦେଖୁଚ, ସେଠିକି ଯେତେ ଲୋକ ଯାଆନ୍ତି, ତାଙ୍କ ଭିତରେ ଯାହାର ସବୁଠୁଁ ପୁରୁଣା ଗଡୁ ଦେଖିବ, ତାହାର ସାହାଯ୍ୟ ନେବ । ଏହା କହି ଭଦ୍ରଲୋକଟି ତୀର୍ଥଯାତ୍ରାରେ ଗଲେ । ଅନେକ ଦିନ ଚାଲିଗଲା । ସ୍ତ୍ରୀ ଆଉ ନିଜକୁ ଚଳାଇ ପାରିଲେନାହିଁ । ସ୍ୱାମୀଙ୍କ ନିର୍ଦ୍ଦେଶ ମାନି ସେ ଦିନେ ସକାଳେ ଝରକା ପାଖରେ ବସି ପାଇଖାନା ଯାଉଥିବା ଲୋକମାନଙ୍କୁ ନିରୀକ୍ଷଣ କରିବାକୁ ଲାଗିଲେ । ସେମାନଙ୍କ ଭିତରେ ଜଣକର ଗଡୁଟି ଅତି ପୁରୁଣା, ତିନି ଚାରି ଜାଗା କଣା ହୋଇ ପାଣି ଝରୁଚି, ପଡ଼ି ପଡ଼ି ଅନେକ ଜାଗାରେ ଚେପା ହୋଇଯାଇଚି । ତାଙ୍କୁ ହିଁ ମନେ ମନେ ମନୋନୀତ କରି ସେ ଚାକର ପଠାଇ ତାଙ୍କୁ ଡକାଇଲେ ଏବଂ ତାଙ୍କୁ ନାନା ସୁଖାଦ୍ୟ ଦେଇ ଆପ୍ୟାୟିତ କରି ପ୍ରକାରାନ୍ତରେ ସ୍ୱାମୀଙ୍କ ନିର୍ଦ୍ଦେଶ ଓ ନିଜର ମନୋଭାବ ପ୍ରକାଶ କରିବାକୁ ମନସ୍ଥ କଲେ; କିନ୍ତୁ ନିଜର କୌତୂହଳ ଦମନ କରି ନ ପାରି ସେ ପ୍ରଥମେ ହିଁ ପଚାରିଲେ, ମହାଶୟ, ଗୋଟିଏ କଥା ଜାଣିବାକୁ ମୋର ଭାରି ଆଗ୍ରହ ହେଉଛି । ଯଦି କିଛି ମନେ ନ କରିବେ ତ ପଚାରିବି ।

ଭଦ୍ରଲୋକ ଅଭୟ ଦେବାରୁ ସେ କହିଲେ, ଆଜ୍ଞା, କହିବେ କି, ଆପଣଙ୍କ ଗଡୁଟି ତିନି ଚାରି ଜାଗା କଣା ଓ ଅନେକ ଜାଗା ଚେପା ହୋଇଯାଇଥିଲେ ବି ତାକୁ ବଦଳାଇ ଆଉ ଗୋଟିଏ ନୂଆ କାହିଁକି ବ୍ୟବହାର କରୁନାହାନ୍ତି ?

ଭଦ୍ରଲୋକ କିଛିକ୍ଷଣ ନୀରବ ରହି ଟିକିଏ ହସିଲେ ଏବଂ କହିଲେ, ବୁଝିଲୁ ମା' ଆଜିକି ପନ୍ଦର ବର୍ଷ ହେବ ଏଇ ଗଡୁ ଆଗରେ ନିଜର ନଗ୍ନତା ପ୍ରକାଶ କରି ଆସୁଚି । ଫେର ଗୋଟାଏ ଗଡୁ ଆଗରେ ନିଜର ନଗ୍ନତା ପ୍ରକାଶ କରିବାକୁ ରୁଚି ହେଉନାହିଁ ।

ଏଥର ବିରହ ଆତୁରା ସ୍ତ୍ରୀ ସ୍ୱାମୀଙ୍କ ନିର୍ଦ୍ଦେଶର ଗୂଢ଼ ଉଦ୍ଦେଶ୍ୟ ବୁଝିପାରି ତଳକୁ ମୁହଁ ପୋତିଲେ ।''

ପ୍ରେମମୟ ବନ୍ଧୁ ରମାରଞ୍ଜନର ମନ ଉପରେ ଅଧିକ ରେଖାପାତ ପାଇଁ ଟିକିଏ ଭାବବିହ୍ୱଳ ହୋଇ କହିଲେ, ''ରମାରଞ୍ଜନ, ଆଜିକି ପନ୍ଦର ବର୍ଷ ହେବ ତୁ ଯାହା ସାମନାରେ ନିଜର ନଗ୍ନ ପରିଚୟ ଦେଇଆସିଛୁ, ଆଜି ତା' ଛଡ଼ା ଆଉ ଜଣେ ନୂଆ ଲୋକ ତୋର ପ୍ରକୃତ ପରିଚୟ ପାଇ ପାରିବ କି ? ଆଉ ଜଣକ ସାମନାରେ ତୁ ତୋର ସ୍ୱରୂପକୁ ଆହୁରି ଥରେ ମୂଳରୁ...''

ରମାରଞ୍ଜନ ଏହାର ତୀବ୍ର ପ୍ରତିବାଦ କରି କହିଲେ, ''ନା, ନା, ପ୍ରେମ ! ଏ ବନ୍ଧନ ଅସହ୍ୟ । ଯାହା ସହିତ ମନର ପ୍ରେମ ନାହିଁ, ତାହା ସହିତ ଚିରଜୀବନ ଛନ୍ଦି ହୋଇ ରହିବା ଯେ କି ବିଡ଼ମ୍ବନା, କି ଦାରୁଣ ଯନ୍ତ୍ରଣା, ତୁ ବୁଝି ପାରିବୁନାହିଁ ।''

ପ୍ରେମମୟ ସେହିପରି ହସି ହସି କହିଲେ, ''ମନ, ମନ, ମନ । ବୁଝିଲୁ ରମା ! ମନଭଳି ଏପରି ପିଚ୍ଛିଳ ଜିନିଷ ନାହିଁ । ସ୍ୱାମୀ ସ୍ତ୍ରୀର ବନ୍ଧନକୁ ମନ ଉପରେ ଛାଡ଼ିଦେବା ଆଦୌ ଉଚିତ ନୁହେଁ । ମନ ତ ଅନେକ କିଛି ଚାହେଁ । ମନ ଯେମିତି ଗୋଟିଏ ଜିନିଷକୁ ଆଗ୍ରହରେ ଚାହେଁ, ସେମିତି ପାଇବା ପରେ ଅନାୟାସରେ ତାକୁ ଫିଙ୍ଗି ଦେଇପାରେ । ତୁ କଅଣ କହୁଚୁ ସ୍ୱାମୀ ସ୍ତ୍ରୀର ଯେଉଁ ସମ୍ବନ୍ଧ ଉପରେ ସମସ୍ତ ସମାଜ, ସନ୍ତାନ ସନ୍ତତିର ଶିକ୍ଷା ସଂସ୍କୃତି ସବୁ ନିର୍ଭର କରେ, ତାକୁ ମନର ଭଲପାଇବାପରି ପିଚ୍ଛିଳ କଥାଟା ଉପରେ ଛାଡ଼ିଦେବା ଉଚିତ ? ତୁ ମୋତେ ମରହଟ୍ଟୀ ବା ଅନ୍ୟ ଯାହାକିଛି କହ, ମୁଣ୍ଡରେ ଟୋପି ପିନ୍ଧିବା ଓ କାଢ଼ିବା ଭଳି ବିବାହ ଛାଡ଼ପତ୍ରର ସୁଆଙ୍ଗକୁ ମୁଁ ଆଦୌ ପସନ୍ଦ କରେନାହିଁ । ଆରେ ଏ ହେଉଚି ସ୍ୱାମୀ ସ୍ତ୍ରୀର ତିନିଗୋଡ଼ିଆ ଦୌଡ଼, ଥ୍ରି ଲେଗେଡ୍ ରେସ୍, ବୁଝିଲୁ ? ଗୋଟିଏ ଗୋଡ଼ ସ୍ୱାମୀର ଓ ଗୋଡ଼ ସ୍ତ୍ରୀର ଅଲଗା ଅର୍ଥାତ୍ ସ୍ୱାଧୀନ; କିନ୍ତୁ ଦୁଇଜଣକର ଆଉ ଦୁଇଟା ଗୋଡ଼ ଏପରି ଭାବରେ ଛନ୍ଦା ଯେ ଆଦୌ ଅଲଗା ହୋଇ ପାରିବେ ନାହିଁ । ଏହି ଛନ୍ଦା ଗୋଡ଼ ଦୁଇଟି ସମାଜ କୁହ, ଶିକ୍ଷା କୁହ, ଯାହା କୁହ, ଏହି ଛନ୍ଦା ଗୋଡ଼କୁ ଯିଏ ଯେତିକି ଭଲ ଭାବରେ ଚଳାଇ ପାରିବ, ତାର ସୁଖ ସେତିକି ।''

ରମାରଞ୍ଜନ ତଥାପି ମୁଣ୍ଡ ହଲାଇ କହିଲେ, ''ନା, ନା, ପ୍ରେମ, ମୁଁ ତୋର ଯୁକ୍ତି ବୁଝିଛି । ତଥାପି ମନ ମାନୁନାହିଁ ।''

ପ୍ରେମମୟ ଏଥର ଗମ୍ଭୀର ହୋଇଗଲେ ଏବଂ କିଛିକ୍ଷଣ ପରେ ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ କହିଲେ, ''ତେବେ ତୋତେ ଆଉ ଗୋଟିଏ କଥା କହୁଚି ଶୁଣ । ଏଟା ଆଗପରି ଗଳ୍ପ ନୁହେଁ । ଏକଦମ୍ ସତ ଘଟଣା । ତୁ ଇସ୍ ବାବୁଙ୍କ ନା ଶୁଣିଚୁ ?''

ଆଶ୍ଚର୍ଯ୍ୟ ହୋଇ ରମାରଞ୍ଜନ କହିଲେ, ''ଇସ୍' କଅଣ ଜଣକ ନା ?''

-ଓହୋ, ତୁ ତେବେ ଆମ ମିହିର କଥା ଶୁଣିନୁ । ଆରେ, ଆମ ମିହିର ମ । ଯିଏ

ଇତିହାସରେ ଏମ.ଏ ପାଶ କରିବାପରେ ସେକ୍ରେଟେରିଏଟର କିରାଣୀ କାମ କରୁଚି ।

-ଆରେ ମିହିର ! ଆମ ସାଙ୍ଗରେ ଯିଏ ପଢୁଥିଲା ପାଟଣାରେ ! ତାର ନା ଇସ୍ କେବେଠୁଁ ହେଲା ? କାହିଁକି ହେଲା ?

-ସେ ଗୋଟାଏ ଇତିହାସ । ସେହି କଥା ତ କହିବାକୁ ଯାଉଚି । ତାକୁ ଆଜିକାଲି ସମସ୍ତେ ଇସ୍ ବାବୁ ବୋଲି ଡାକନ୍ତି; କାରଣ ଆଜିକି ଛ'ସାତ ବର୍ଷ ହେବ ତାର ଗୋଟିଏ ମୁଦ୍ରାଦୋଷ ହୋଇଚି କଥାରେ କଥାରେ ଇସ୍ କହିବା-ସେ ଫାଇଲଟା ତ ସାର୍ ଇସ୍ ମୁଁ ଚାରିଦିନ ହେବ ଦେଇ ସାରିଚି ଇସ୍ ?...ଏମିତି ।

ଆଶ୍ଚର୍ଯ୍ୟ ହୋଇ ରମାରଞ୍ଜନ ପଚାରିଲେ, ''ପଢ଼ିଲାବେଳେ ତ ଏ ମୁଦ୍ରାଦୋଷ ତାର ନ ଥିଲା ? ହଠାତ୍... ଏମିତି ହୁଏନା କଅଣ । ତୋର ମନସ୍ତତ୍ତ୍ୱ ଏ ସମ୍ପର୍କରେ କଅଣ କହେ ?''

-ବହୁ ବର୍ଷପରେ ଆଜି ରାସ୍ତାରେ ହଠାତ୍ ତା ସହିତ ମୋର ଦେଖା । ମୁଁ କଲେଜରୁ ଫେରୁଚି ସେତେବେଳେ । ତୁ ଆଶ୍ଚର୍ଯ୍ୟ ହେବୁ ଶୁଣି, ଯେଉଁ ମିହିର ପଢ଼ିଲାବେଳେ ସବୁବେଳେ ହସ ହସ, ଫୁର୍ତ୍ତି, ଫାଜିଲ୍, ବେପରୁଆ, ସେ ଆଜି ସବୁବେଳେ ଗମ୍ଭୀର, ବିଷଣ୍ଣ । ମୋତେ ଦେଖି ଟିକିଏ ହସି ସେ କହିଲା, ପ୍ରେମ କିରେ ? ଇସ୍ ! ତାର କଥା ଶୁଣି ମୁଁ ରୀତିମତ ରାଗିଯାଇ କହିଲି, କିରେ ମୋତେ ଦେଖି ଏତେ ବିରକ୍ତ କାହିଁକି ? ତାର ମୁହଁରେ ବ୍ୟଥା ଫୁଟିଉଠିଲା । ସେ ବ୍ୟଥିତ ଭାବରେ କହିଲା, ନା ଭାଇ ଅନେକ ଦିନ ପରେ ତୋତେ ଦେଖି କେତେ ଆନନ୍ଦ, ମୁଁ କଅଣ କହିବି । ପଚାରିଲି ତେବେ 'ଇସ୍' କାହିଁକି କହିଲୁ ? ସେ କପାଳରେ ହାତ ମାରି କହିଲା- 'ଇସ୍' କହିଲି ନା କଅଣ ? ଭାଇ ଛ' ସାତ ବର୍ଷ ହେବ ଏ ଗୋଟିଏ ମୁଦ୍ରାଦୋଷ ହେଇଚି । ଟିକିଏ ବ୍ୟଥିତ ଭାବରେ ହସି ସେ ପୁଣି କହିଲା, ''ତୁ ଜାଣୁନା ବୋଧେ ମୋର ନାଁ ଆଜିକାଲି 'ଇସ୍ ବାବୁ' । ମୋର ମନସ୍ତାତ୍ତ୍ୱିକ କୌତୂହଳ ଜାଗିଲା । ଘରକୁ ଡାକି ନେଇ ମିହିରକୁ ନାନା ପ୍ରଶ୍ନ ପଚାରି ଯେଉଁ ଇତିହାସଟି ପାଇଲି, ତାହାହିଁ କହିବି । ନଦୀ ଯେତେବେଳେ ପାର୍ବତ୍ୟ ଦେଶରେ ବୋହୁଥାଏ, ସେତେବେଳେ ଯେ ଥାଏ ଚଞ୍ଚଳ, ଆବେଗମୟ । ପାହାଡ଼ ପର୍ବତ ଠେଲି ସେ ବହି ଚାଲେ ସମତଳଭୂମି ପାଇଁ । ନଦୀ ଯେତେବେଳେ ସମତଳଭୂମିରେ ବୋହି ତାକୁ ଉର୍ବର କରେ, ଆମେ ନଦୀର ସେହି ଅବସ୍ଥାକୁ ପ୍ରାଧାନ୍ୟ ଦେଉ, କିନ୍ତୁ ଭାବି ଦେଖିଲେ, ନଦୀର ଆବେଗମୟ ପ୍ରଥମ ଜୀବନ ଉପରେ ସବୁ ନିର୍ଭର କରେନାହିଁ କି ? ସବୁ ନିର୍ଭର କରେ ନଦୀ ପାର୍ବତ୍ୟ ଦେଶରୁ କେତେ ପାଣି ଓ କିପରି ମାଟି ତା ସହିତ ସମତଳ ଭୂମିକୁ ଆଣୁଚି । ମିହିରର ଯୌବନର ତା ଆବେଗମୟ ଜୀବନ କେବଳ କଠିନ ପଥର ଉପରେ ବହିଚି । ସମତଳ ଭୂମିକୁ ଓହ୍ଲାଇବା ପରେ, ଅର୍ଥାତ୍ ତାଙ୍କ ଦାମ୍ପତ୍ୟ ଜୀବନ ନିଷ୍ଫଳ ହୋଇଚି ।

-ମିହିରର ସ୍ତ୍ରୀ ଲବଙ୍ଗ ସୁନ୍ଦରୀ ଓ ସ୍ୱାସ୍ଥ୍ୟବତୀ ହେଲେ କଅଣ ହେବ, ମିହିର ତାକୁ ଭଲ ପାଇପାରିଲା ନାହିଁ; କିନ୍ତୁ ବୁଝନା ଯେ ମିହିର ଆଉ କାହାକୁ ଭଲପାଏ; ଭଲ ପାଇବାପାଇଁ ଯେଉଁ ଆବେଗ, ସେ ଆବେଗ ହିଁ ତାର ମରି ଯାଇଚି । ଇୟା ବୋଲି ମିହିର ତାର ସ୍ତ୍ରୀ ପ୍ରତି କୌଣସି ତ୍ରୁଟି କରିନାହିଁ । ସେ ଯାହାହେଉ ଏ ମୁଦ୍ରା ଦୋଷଟି ତାର କିପରି ହେଲା ସେଇ କଥା ହିଁ କହୁଚି-

-ଛ' ସାତ ବର୍ଷ ତଳେ ମିହିର ତାର ଝିଅକୁ ବାହା ଦେଇ ବିଦାୟ ଦେଲା ପରେ ଭାବିଲା ଛୁଟିତ ଆହୁରି ମାସେ ଅଛି, ଟିକିଏ ବୁଲି ଆସିଲେ ହୁଅନ୍ତା । ଲବଙ୍ଗ ମିହିର ପାଖରେ ଛିଡ଼ାହୋଇ କହିଲା, 'ଶୁଣୁଚ, ଛୁଟି ତ ଆଉ ମାସେ ଅଛି । ତୁମେ ଯାଅ ଟିକିଏ ବାହାରେ ବୁଲିଆସ । ଶଶୁରଙ୍କ ଅସ୍ଥି ଅନେକ ଦିନରୁ ବି ରହିଚି, ଗୟାରେ ଦେଇଆସିବ । ଆଉ କଲିକତା ପାଟନା ଆଦି ଟିକିଏ ବୁଲି

ଆସିବ । ତୁମ ଦେହ ବି ଭଲ ରହୁନାହିଁ ।'

ମିହିର ଦୀର୍ଘନିଃଶ୍ୱାସ ପକାଇ କହିଲା, 'ମନ୍ଦ କହୁନାହଁ ଲବଙ୍ଗ; କିନ୍ତୁ ମୁଁ ଏକା ଯିବି ବା କିପରି, ଆଉ ଗଲେ ବା ଟଙ୍କା କାହିଁ ?'

ଲବଙ୍ଗ ଟିକିଏ ହସି କହିଲା, 'ମୋ କଥା ଭାବନା । ମୁଁ ଯିବି ବା କିପରି ? ଝିଅ ଶାଶୁଘରୁ ଫେରିବ । କେତେ କାମ ପଡ଼ିଚି । ମୋ ଯିବା କଥା ଛାଡ଼ । ଟଙ୍କା କଥା ଭାବନାହିଁ । ବାହାଘର ଖର୍ଚ୍ଚରୁ କିଛି ଟଙ୍କା ବଳେଇଚି, ତାକୁ ନେଇ ଯାଆ' ମୋ ରାଣ ।'

ମିହିର ଲବଙ୍ଗର ଏ ପ୍ରସ୍ତାବରେ ଆଉ ଆପତ୍ତି କଲାନାହିଁ । ତିନି ଚାରି ବର୍ଷ ହେବ ତାର ମନ ଓ ଶରୀର ବିଶେଷ ଭାବରେ ଭାଙ୍ଗିପଡ଼ିଥିଲା । କିଛି ଦିନ ପାଇଁ ସ୍ଥାନ ପରିବର୍ତ୍ତନ ତାର ବିଶେଷ ଦରକାର ହୋଇପଡ଼ିଥିଲା; କିନ୍ତୁ ସେଥିପାଇଁ ସାମର୍ଥ୍ୟ ତ ଦରକାର, ଦୁଇଟାର ମିଳନ ଘଟାଇବା ଅସମ୍ଭବ ।

ମିହିର ନିଜର କପାଳକୁ ନିନ୍ଦି ନୀରବ ଥିଲା । ଲବଙ୍ଗର ଏ ପ୍ରସ୍ତାବରେ ଆପତ୍ତି ନ କରି ସେ ଯିବା ପାଇଁ ପ୍ରସ୍ତୁତ ହୋଇଗଲା ।

ମିହିର ସିଧା ଟିକଟ କାଟିଲା ପାଟନା । ତାର ନୀରସ ଜୀବନରେ ଯେତେ ଟିକିଏ ସୁଖ ସେ ପାଇଚି, ତାହା ଏଇ ପାଟନାରେ କି ନା, ତେଣୁ ପ୍ରଥମେ ପାଟନା ଯିବାକୁ ତାର ଭାରି ଇଚ୍ଛାହେଲା ।

ପାଟନାରେ ପହଞ୍ଚି ଦିନେ ଗଙ୍ଗାକୂଳରେ ବୁଲୁ ବୁଲୁ ସେ ଭାବୁଥିଲା, ଏଇ ସେ ଗଙ୍ଗା ନଦୀ ! ଆର୍ଯ୍ୟ ସଭ୍ୟତା ଦିନରୁ କେତେ ସ୍ମୃତି ଏହା ସହିତ ଜଡ଼ିତ । ଆର୍ଯ୍ୟ ସଭ୍ୟତାର, ଭାରତ ଇତିହାସର ନଦୀ କହିଲେ ଚଳେ । ଭାରତ ଇତିହାସରେ ଏହାର ସ୍ଥାନ କେତେ ଉଚ୍ଚରେ, କେତେ ପବିତ୍ର ଏଇ ନଦୀ ତେଣୁ । ସାମାନ୍ୟ ହେଲେହେଁ ମୋ ଜୀବନର ସୁଖ ସ୍ମୃତି ସହିତ ଏ ନଦୀ ମଧ ଜଡ଼ିତ । ଏଇ ସେ ରାଣୀଘାଟ । ଯେଉଁଠି...

ମିହିର ବୁଲୁବୁଲୁ ରାଣୀଘାଟ ପାଖରେ ପହଞ୍ଚି ଚମକି ଛିଡ଼ାହେଲା । କିଛିକ୍ଷଣ ଗଙ୍ଗାବକ୍ଷକୁ ଅନାଇ ସେ ଟିକିଏ ହସିଲା । କମିଜ ଉତାରି ସେ ଗଙ୍ଗା ପାଣି ଭିତରକୁ ଯାଇ ପହଁରିଲା ।

-ସନ୍ଧ୍ୟାବେଳେ ! ପାଗଳ ନା କଅଣ ! ରମାରଞ୍ଜନ ପଚାରିଲେ ।

-ନା, ନା'ରେ । ତୋର ପଦ୍ମା ବର୍ମା କଥା ମନେ ନାଇଁ ?

-ହଁ, ଇତିହାସ ଛାତ୍ରୀ । ଜଷ୍ଟିସ୍ ବର୍ମାଙ୍କ ଝିଅ । ଇସ୍ କି ଅପୂର୍ବ ସୁନ୍ଦରୀ ସେ ଥିଲା । ବର୍ତ୍ତମାନ କୁଆଡ଼େ ସେ ପାଟନା କଲେଜରେ ଇତିହାସ ଅଧ୍ୟାପିକା ହୋଇଚି ?

-ହଁ । ପଢ଼ିଲାବେଳେ ସେ ଥରେ ଗଙ୍ଗାରେ ପହଁରୁ ପହଁରୁ ଏଇ ରାଣୀଘାଟ ପାଖରେ ବୁଡ଼ି ଯାଉଥିଲା । ମିହିର ତାକୁ ରକ୍ଷା କରିଥିଲା, ମନେ ନାହିଁ ତୋର ?

-ଆରେ, ହଁ, ହଁ ।

-ସେଇ କଥା ତାର ମନେ ପଡ଼ିଗଲା । ତାର ଖିଆଲ ରହିଲାନାହିଁ ସେ କଅଣ କରୁଚି ।

-ଆମେ ସମସ୍ତେ ଭାବିଥିଲୁ, ଏ ସୌଭାଗ୍ୟ ଖୁବ୍ କମ୍ ଯୁବକଙ୍କ ଭାଗ୍ୟରେ ଘଟେ । ଏହାପରେ ନିଶ୍ଚୟ ଦୁହେଁ ପ୍ରେମରେ ପଡ଼ିବେ; କିନ୍ତୁ ସେ ବଡ଼ଲୋକ ଝିଅ, ସେ କାହିଁକି ମିହିରକୁ ପଚାରିବ ।

-ତାପରେ କଣ ହେଲା ଶୁଣ । ତା ପରଦିନ ମିହିର ଯାଇଥିଲା କଲେଜ ଆଡ଼େ ବୁଲି ଦେଖିବାକୁ ଓ ନିଜର ଅଧ୍ୟାପକମାନଙ୍କ ସହିତ ଦେଖା କରିବାକୁ । ଆମ ସମୟର ସମସ୍ତେ ପ୍ରାୟ

ଅବସର ଗ୍ରହଣ କଲେଣି । କାହାରିକୁ ଦେଖା ନ ପାଇ ମିହିର ଫେରୁଥିଲା । ଏହି ସମୟରେ ଅଧ୍ୟାପକଙ୍କ କମନରୁମ୍‌ରୁ ଜଣେ ଅଧ୍ୟାପିକା ମିହିରକୁ ଡାକିଲେ । ମିହିର ଆଦୌ ତାଙ୍କୁ ଚିହ୍ନି ପାରିଲା ନାହିଁ । ଆଶ୍ଚର୍ଯ୍ୟ ହୋଇ ଚାହିଁ ରହି ପଚାରିଲା, ''ମୋତେ ଡାକୁଛନ୍ତି ?''

ଭଦ୍ରମହିଳା ହସି କହିଲେ, 'ହଁ, ଆଶ୍ଚର୍ଯ୍ୟ ହେଉଚନ୍ତି ?''

ମିହିର ଅଧିକ ଆଶ୍ଚର୍ଯ୍ୟ ଓ ଅପ୍ରସ୍ତୁତ ହୋଇ କହିଲା, ''ନା, ମୁଁ... ଆପଣଙ୍କୁ...''

ଭଦ୍ରମହିଳା କେବଳ କହିଲେ, ''ଆସନ୍ତୁ ମୋ ସହିତ ।''

ଯନ୍ତ୍ରଚାଳିତ ପରି ମିହିର ଭଦ୍ରମହିଳାଙ୍କ ଅନୁଗମନ କଲା । ଭଦ୍ରମହିଳା ନିଜ ମଟର ପାଖରେ ଛିଡ଼ାହୋଇ ଦୁଆର ଖୋଲି ଦେଇ ଅନୁରୋଧ କଲେ, ''ବସନ୍ତୁ ।'' ମିହିର ସେହିପରି ଆଶ୍ଚର୍ଯ୍ୟ ଭାବରେ ବସି ବାହାରକୁ ଅନାଇ ରହିଲା ।

ମଟର ରାଣୀଘାଟ ପାଖରେ ପହଞ୍ଚିଲା । ମଟରରୁ ଓହ୍ଲାଇ ଭଦ୍ରମହିଳା ପଚାରିଲେ, ''ଏ ସ୍ଥାନ୍ ମନେପଡ଼େ ଆପଣଙ୍କର ?''

ମିହିର ଏଥର ଚିହ୍ନି ପାରିଲା ଭଦ୍ରମହିଳା କିଏ । ସେ କଥାର କୌଣସି ଉତ୍ତର ଦେଇପାରିଲା ନାହିଁ । ଗୋଟିଏ ଅପୂର୍ବ ଆନନ୍ଦ ତାର ମନରେ ଖେଳିଗଲା । ତାର ଓଠ ଟିକିଏ ଥରିଉଠିଲା । ମୁହଁକୁ ତଳକୁ ପୋତି ସେ ଛିଡ଼ା ହେଲା । ପଦ୍ମା ଦେଖିଲା, ଦୁଇ ବୁନ୍ଦା ପାଣି କେବଳ ଝରିପଡ଼ିଲା । ଆଉ କିଛି ନ କହି ପଦ୍ମା କହିଲା, ''ମୋ ଘରକୁ ଚାଲ ।''

ମିହିର ବ୍ୟଥିତ ଭାବରେ କହିଲା, ''ନା, ନା, ମି...ମି...''

ପଦ୍ମା ହସି କହିଲା, ''ନା, ମିସେସ୍ ଏ ପର୍ଯ୍ୟନ୍ତ ହୋଇନାହିଁ । ମିସ୍ ପଦ୍ମା ଅଛି । ତେବେ ତୁମକୁ ମିସ୍ ପଦ୍ମା କହିବାକୁ ଦେବିନାହିଁ । ପଦ୍ମା ବୋଲି ଡାକ ।''

-ଆପଣ...

-ଆପଣ ନୁହେଁ, 'ତୁମେ', ପଦ୍ମା କହିଲା ।

ମିହିର ଛିଡ଼ା ହୋଇ ରହିଲା ସେମିତି । ପଦ୍ମା ମିହିରର ହାତ ଧରି ଭିଡ଼ି ତାକୁ ମଟରରେ ବସାଇ ନିଜ ଘରକୁ ଗଲା । ମଟରରେ ବିଗତ ଦିନର ନାନା କଥା, ନାନା ଘଟଣା ବିଷୟ ଦୁହେଁ କହିଲେ । ପଦ୍ମା ପଚାରିଲେ, ''ବିବାହ କଲଣି ?''

-ହଁ, ମୁଁ ବର୍ତ୍ତମାନ ଚାରୋଟି ସନ୍ତାନର ପିତା । ବଡ଼ ଝିଅକୁ ବାହା ଦେଇ ତୀର୍ଥ କରି ବାହାରିଚି । ତୁମେ କାହିଁକି ବାହା ହୋଇ ନା ?

ଏ ପ୍ରଶ୍ନରେ ପଦ୍ମା ଗୋଟିଏ ଦୀର୍ଘ ନିଃଶ୍ୱାସ କେବଳ ପକାଇଲା ।

ମିହିର ବ୍ୟଥିତ ଭାବରେ କହିଲା, ''କ୍ଷମା କରିବ, ମୁଁ ଅଜାଣତରେ ଆପଣଙ୍କୁ...ତୁମକୁ ବ୍ୟଥା ଦେଇଚି ।''

ପଦ୍ମା କରୁଣ ଭାବରେ କହିଲା, ''ତୁମର କିଛି ଦୋଷ ନାହିଁ, ସବୁ ଦୋଷ ମୋର । ମୋର ଜୀବନଟା ହିଁ ବୃଥା । ବୃଥା ଏ ଜ୍ଞାନ, ବୃଥା ମୋର ଧନ, ବୃଥା ଏ ମାନ ଯଦି.... ଯଦି...''

ଘର ଭିତରକୁ ଯାଉଁ ଯାଉଁ... ମିହିର ପଚାରିଲା, ''କିନ୍ତୁ ବିବାହ କରିବାରେ ବାଧା କଅଣ ଥିଲା ତୁମର ?''

ପଦ୍ମା ମିହିରର ହାତ ଧରି କହିଲା, ''ମୋର ଆଭିଜାତ୍ୟର ଅଭିମାନ, ମୋର ଧନ । ସେ ଥିଲେ ଦରିଦ୍ର, ଅତି ସାଧାରଣ ଛାତ୍ର, ମୋର ସହପାଠୀ । ସେ କିଏ ଜାଣ ?''

-ନା, କମଳାପ୍ରସାଦ ସହିତ ସେତେବେଳେ...

-ତୁମେ ଆଦୌ ଅନୁମାନ କରିପାରିବ ନାହିଁ ସେ କିଏ ସେ । ସେ ତୁମେ...

ମିହିର ଦେହ ଥରିଉଠିଲା ।

ପଦ୍ମା କହିଲା, ''ଖାଲି ସେତେବେଳେ ତୁମେ ଯଦି ଅଧିକ ସାହସ କରି କହିଥାଆନ୍ତ, ତା'ହେଲେ ବୋଧହୁଏ ମୋର ଆଜି... । ପଦ୍ମା ଆଉ କହିପାରିଲା ନାହିଁ ।

ମିହିର ମଧ୍ୟ କାନ୍ଦି ପକାଇଲା । ତାର ମନେହେଲା, 'ଇସ୍' -ଟିକକ ପାଇଁ ସେ କି ସୁଖରୁ ବଞ୍ଚିତ ହୋଇଚି । ତା ମୁହଁରୁ କେବଳ ପଦିଏ କଥାରେ ଫୁଟି ଉଠିଲା ସମସ୍ତ ଅନୁତାପ- 'ଇସ୍ !'

ଦୁହେଁ ଅନେକ କ୍ଷଣ ତଳକୁ ମୁହଁପୋତି କାନ୍ଦିଲେ । ପଦ୍ମା ଅନେକ କ୍ଷଣ ପରେ ମୁହଁ ଟେକି କରୁଣ ଭାବରେ ହସି କହିଲା, ''ପୁଣି ନୂତନ ଭାବରେ ଜୀବନ ଯାତ୍ରା ଆରମ୍ଭକଲେ ହୁଅନ୍ତା ନି ? ତୁମେ ଭାବିବ ଯେ ମୁଁ କେଡ଼େ ନିଷ୍ଠୁର, ତୁମର ଏତେ ଦିନର ସଂସାର ଭାଙ୍ଗିଦେବାକୁ ଚାହୁଁଚି; କିନ୍ତୁ ସେ ବିଷୟରେ ତୁମେ ଭାବନାହିଁ । ମୋର ସମସ୍ତ ଧନ ମୁଁ ତୁମର ସ୍ତ୍ରୀ ପରିବାର ପାଇଁ ଦେବି... ବିବାହ କରିବାକୁ ମଧ୍ୟ ଚାହେନା ତୁମକୁ.. କେବଳ... କେବଳ..''

ମିହିର 'ହଁ' କରିବାକୁ ଯାଉଥିଲା; କିନ୍ତୁ ତାର ମନେପଡ଼ିଗଲା ଲବଙ୍ଗର ସେଇ କରୁଣ ମୁହଁ । ସେ ତାକୁ ଭଲ ପାଇପାରିନି ବୋଲି ଲବଙ୍ଗ କେବେହେଁ ଆକ୍ଷେପ କରିନାହିଁ । ଉପରନ୍ତୁ ସେ ନିଜର ସମସ୍ତ ସୁଖ ତ୍ୟାଗକରି ଲାଗିପଡ଼ିଚି ମିହିରର ସୁଖଶାନ୍ତି ପାଇଁ ।

ମିହିରର ଲବଙ୍ଗ ପ୍ରତି ହଠାତ୍ ଅପୂର୍ବ ଆବେଗ ଜାତହେଲା । ତାର ମନେହେଲା ସେ ଯଦି ସେହିକ୍ଷଣି ଉଡ଼ି ଲବଙ୍ଗ ପାଖରେ ପହଞ୍ଚିଯାଇ ପାରନ୍ତା, କେଡ଼େ ଆଶ୍ଚର୍ଯ୍ୟ ହୁଅନ୍ତା ସେ... ମୋତେ ଦେଖି ନିଶ୍ଚୟ ହସିପକାନ୍ତା ।

ମିହିର କହିଲା, ''ନା, ତା ଅସମ୍ଭବ ମିସ୍ ପଦ୍ମା । ଯା ଯାଇଚି, ତା ଯାଉ । ଜୀବନର ପ୍ରବାହରେ ତା ଖିଏ କୁଟା ସାଙ୍ଗେ ସମାନ । ନିଜର ସୁଖପାଇଁ ମୁଁ ସବୁ ତ୍ୟାଗ କରିପାରିବି ନାହିଁ । ଯାହା ଯାଇଚି ତାହା ଖୁବ୍ କାମ୍ୟ, ମାନୁଚି; କିନ୍ତୁ ଯାହା ପାଇଚି ସେ ମଧ୍ୟ କମ୍ ନୁହେଁ ।''

ମିହିର ଏତକ କହି ଘରୁ ବାହାରିଆସିଲା । ସେଇଦିନ ସେ ଫେରିଲା ଘରକୁ । କଲିକତାରୁ ଲବଙ୍ଗ ପାଇଁ ଭଲ ଶାଢ଼ୀ, ସୁନ୍ଦର ଗହଣା କିଣି ଘରକୁ ଫେରିଲା । ଘରେ ପହଞ୍ଚି ଲବଙ୍ଗକୁ ଦୃଢ଼ ଆଲିଙ୍ଗନ କରି କାନ୍ଦି ପକାଇଲା ସେ ।

କିନ୍ତୁ ସେଇ ଦିନରୁ ତାର ଗୋଟାଏ ମୁଦ୍ରାଦୋଷ ରହିଗଲା, କଥାରେ କହେ- 'ଇସ୍' ।

ଘଡ଼ିକୁ ଅନାଇ ରମାରଞ୍ଜନ କହିଲେ, ''ଇସ୍ ଅନେକବେଳ ହୋଇଗଲାଣି, ମନିବୋଉ ନିଶ୍ଚୟ ଚିନ୍ତାରେ ପଡ଼ିଥିବ । ଯାଏଁ ଭାଇ !''

# ହୋଲି

ଋତୁରାଜ ବସନ୍ତ ସମାଗତ । ଶୀତର ଜଡତା ଛାଡି ପୃଥିବୀ କ୍ରମେ ପ୍ରଖର ସୂର୍ଯ୍ୟଆଡକୁ ନିକଟେଇଯାଉଛି । ମଝିରେ ଏହି ରସମୟ ସ୍ଥିତି । ଗଛ ସବୁ କଅଁଳିଆ ପତ୍ରରେ କମନୀୟ ଦିଶୁଛନ୍ତି । ପଲାଶବନରେ ନିଆଁ ଲାଗିଛି । ଆମ୍ରତୋଟାରେ କୋଇଲି କୁହାଇ କୁହାଇ ଅଧୀରଭାବରେ ଡାକିଚାଲିଛି । ମଧୁମଦଲୋଭୀ ଭ୍ରମରମାନେ ଚୂତ ମଞ୍ଜରୀ ସୁବାସରେ ଉନ୍ମତ୍ତ ହୋଇ ଏ ଗଛରୁ ସେ ଗଛ ଧାଉଁଛନ୍ତି । ଚାରିଆଡେ ଅପୂର୍ବ କମନୀୟ ଶୋଭା । ଜଳେ-ସ୍ଥଳେ ମରୁତ-ବ୍ୟୋମେ ବସନ୍ତର ବୈଜୟନ୍ତୀ, ଦେହରେ ମନରେ ଅପୂର୍ବ ସମ୍ବେଦନ ସ୍ପନ୍ଦନ ।

ନବୀନ ବର୍ଷାର ମେଘ ଭଳି ଯାହାଙ୍କର କାନ୍ତି, ଯାହାଙ୍କର କିରୀଟରେ କୋଟି କୋଟି ସୂର୍ଯ୍ୟ ବିରାଜିତ, 'ବ୍ରହ୍ମାଣ୍ଡ ମାଳ ମାଳ ହୋଇ, ଯା ଲୋମକୂପେ ବିରାଜଇ', ଯାହାଙ୍କର ବଂଶୀ ଅହରହ ପ୍ରତ୍ୟେକ ଜୀବକୁ ଡାକୁଚି ଆସ, ଆସ ବୋଲି, ସେଇ ବାସନ୍ତୀ ବସନ ପରିହିତ, ଆଜାନୁଲମ୍ବିତ ବନମାଳାଶୋଭିତ, ଅତି କମନୀୟ ସୁଠାମ କିଶୋରବିଗ୍ରହ ବସନ୍ତୋତ୍ସବରେ ମାତିଛନ୍ତି । ହୋଲି ଖେଳ ତ ନନ୍ଦକୁମାର । ଆମେ ଆମରି ମନର ମାଧୁରୀ ମିଶାଇ କରିଅଛୁ ତାଙ୍କୁ ରଚନା, ବୈଜ୍ଞାନିକମାନେ ବସନ୍ତର ବା ବସନ୍ତୋନ୍ମାଦନାର ଯେ କୌଣସି କାରଣ ବାଢ଼ନ୍ତୁ ନା କାହିଁକି ।

ଆଜି ଦଶମୀ ତିଥି; କିନ୍ତୁ ଏକାଦଶୀ ମଧ ପଡିଥିବାରୁ ପଞ୍ଚଦୋଳ ଆରମ୍ଭ ଆଜିଠୁଁ । କୁଶଭଦ୍ରାର ଏପାରି କୁଶୁପୁରର ଲୋକେ ଆଜିଠୁ ପାଞ୍ଚଦିନ ଶ୍ରୀ ଶ୍ରୀ ରାଧାବଲ୍ଲଭ ଜୀଉଙ୍କୁ ନେଇ ମାତନ୍ତି, ଅବିର ଖେଳନ୍ତି । ପ୍ରତିବର୍ଷ ପରି ଆଜି ଶ୍ରୀ ଶ୍ରୀ ରାଧାବଲ୍ଲଭ ଦୁଆର ଦୁଆର ବୁଲି ଆନନ୍ଦ ବିତରଣ କରୁଛନ୍ତି । ହୋଲିଆମାନେ ଅବିରଥାଳି ଧରି ମାଦଳ ବଜାଇ ଗାଇ ଗାଇ ଯାଉଛନ୍ତି- ରାଧାବଲ୍ଲଭମୋହନ ଖେଲେ ହୋରି... । ପିଲାଏ କାଲୁରୁ-ବାଲୁରୁ ଆଗେ ଆଗେ ନାଚି ଯାଉଛନ୍ତି । ପ୍ରତ୍ୟେକ ମୁହଁରେ ଅବିର ବୋଳି ହୋଇ ତାଳପତ୍ର ବାନ୍ଧି ମାଙ୍କଡ ସାଜିଛନ୍ତି । କାହାକୁ ଧୋବଧୋବଳିଆ ଦେଖିପକେଇଲେ ତ ମାଦଳ ଆହୁରି ଜୋରରେ ବାଜିଉଠେ । ପିଲାଏ କିଳିକିଳା ନାଦରେ ଗଗନ ପବନ କମ୍ପାଇ ଦଉଡନ୍ତି ତା' ପାଖକୁ । ଆଉ ହୋଲିଆମାନେ ଆନନ୍ଦରେ ଗାଆନ୍ତି-

କୋଇ କୋଇ ଗାୱେ ତ  କୋଇ କୋଇ ବଜାୱେ
କୋଇ କୋଇ ମାରତ ପିଚକାରୀ..... ।

ଦିନ ଦ୍ୱିପ୍ରହରସରିକି ହେଲାଣି । ଗାଁ ବୁଲା ସାରି ଠାକୁରେ ନଈଆଡକୁ ଢଳି ଢଳି ଆସୁଥାନ୍ତି । କୁଶଭଦ୍ରା ନଦୀରେ ସ୍ନାହାନ ସାରି ବାହୁଡିବେ । ହୋଲିଆମାନେ ଇତ୍ୟବସରରେ ମଧ ଗାଧୋଇନେବେ ।

ଆଜି ଇଦୁଜ୍ଜୁହା-କୁରବାନି ଦିନ ମଧ ପଡ଼ିଥାଏ । ରହିମ ଖାଁ ଠିକ୍ ଏଇ ସମୟରେ କୁଶଭଦ୍ରାର ଆରପାରିରୁ, ଅହମଦପୁରରୁ (ଯାହାକୁ ଏପାରିର ଲୋକେ ଆଜିକାଲି ଜନାନ୍ତିକେ ପାକିସ୍ତାନପୁର ବୋଲି କହନ୍ତି) ବାହାରି ନଈ ପାରିହୋଇ ଯାଉଥାନ୍ତି କୃଷ୍ଣପୁରର ରାମ ପଧାନଙ୍କ ଘରକୁ ମୁବାରକ୍ ଜଣାଇବାକୁ । ହାତରେ ତାଙ୍କର ଗୋଟିଏ ଥାଳି, ଥାଳିରେ ଅଛି ବିରିଆନି, କବାବ, ପଲାଉ ଇତ୍ୟାଦି । ରହିମଙ୍କ ବିବି ଜେବୁନ୍ନିସା ଭାରି ଭଲ ରାନ୍ଧି ଜାଣନ୍ତି । ସେ ନିଜେ ତାଙ୍କ ପ୍ରିୟ ଦିଅର ରାମ ପ୍ରଧାନଙ୍କ ପାଇଁ ଏ ସବୁ ରାନ୍ଧି ମିଆଁଙ୍କ ହାତରେ ପଠାଇଛନ୍ତି ।

ରାମ ପଧାନ ଓ ରହିମ୍ ଖାଁ ଆବାଲ୍ୟ ବନ୍ଧୁ । ରହିମ୍ ଅବଶ୍ୟ ରାମ ପଧାନଙ୍କ ଭାଗଚାଷୀ; କିନ୍ତୁ ତାଙ୍କ ବଂଶ-ବଂଶାନୁକ୍ରମେ ଅହମଦପୁରର ଖଲିଫା । ଖଲିଫାବଂଶ ଓ ପଧାନ ବଂଶର ବନ୍ଧୁତ୍ୱ ଅର୍ଥନୈତିକ ଓ ସାମାଜିକ ଆଦି ବାଧା ଅତିକ୍ରମ କରି ଅନ୍ୟ ଏକ କ୍ଷେତ୍ରରେ ମିଳିତ ହୋଇଚି ଆଜିକୁ ଚାରିପୁରୁଷ ହେବ । ଖଲିଫାବଂଶ ହେଉଛି ପ୍ରଧାନବଂଶର ସୂର୍ଯ୍ୟ ମଇତ୍ର ବନ୍ଧୁ । ଗୋଟିଏ ବଂଶରେ କୌଣସି କ୍ରିୟାକର୍ମ ହେଲେ ଅନ୍ୟ ବଂଶର ସ୍ତ୍ରୀ ପୁରୁଷମାନେ ସେଥିରେ ଯୋଗଦିଅନ୍ତି, ବାହାଘର ହେଲେ ତେଲ ହଳଦି ଯାଏ ଓ ବେଭାର ଆସେ । ହୁଏତ କେବେ ସାମାଜିକ ଆପତ୍ତି ଉଠିଥିଲା; କିନ୍ତୁ ବର୍ତ୍ତମାନ ଏ ଦୁଇ ବଂଶ ମଧରେ ବନ୍ଧୁତ୍ୱ ଏକ ଆଦରଣୀୟ ବ୍ୟତିକ୍ରମ ବୋଲି ସ୍ୱୀକୃତ ହୋଇସାରିଚି । ପୁଣି ରହିମ ଖାଁ ଅହମଦପୁରର ଖଲିଫା ଓ ରାମ ପଧାନ କୃଷ୍ଣପୁରର ଗଣ୍ୟମାନ୍ୟ ଲୋକ ଥିବାରୁ ସ୍ୱାର୍ଥାନ୍ଧ ନେତାମାନେ ଧର୍ମଭିତ୍ତିରେ ଭାରତକୁ ଭାଗ ଭାଗ କରିଦେଇଥିବାରୁ ଭିତରେ ଯାହା ଥାଉ ନା କାହିଁକି, ଏ ଦୁଇ ଗାଁ ଭିତରେ ବାହାରର ସଦ୍ଭାବ ରକ୍ଷା ହୋଇପାରିଚି । ବ୍ୟକ୍ତିଗତ ଭାବରେ ଦେଖିବାକୁ ଗଲେ ଏ ବନ୍ଧୁତ୍ୱ ରହିମ୍ ଖାଁ ଓ ରାମ ପଧାନଙ୍କ ମାନସିକ ବ୍ୟାପ୍ତି ଅନେକ ବଢ଼ାଇ ଦେଇପାରିଚି । ଧର୍ମ ପ୍ରତି ଦୁହିଁଙ୍କର ଆନ୍ତରିକତା ଥିବାରୁ ପ୍ରତିଦିନ ସନ୍ଧ୍ୟାବେଳେ, ରାମ ପଧାନ ଘରେ ହେଉ ବା ରହିମ୍ ଖାଁ ଘରେ ହେଉ, ଗୀତା, କୋରାନ୍ ସରିଫ୍ ବିଷୟରେ ଚର୍ଚ୍ଚା କରନ୍ତି । ମୁଗ୍ଧ ହୁଅନ୍ତି, ଆନନ୍ଦିତ ହୁଅନ୍ତି ।

ନଈବନ୍ଧ ଉପରକୁ ଉଠିଲାବେଳକୁ ଶ୍ରୀ ଶ୍ରୀ ରାଧାବଲ୍ଲଭ ଢଳିଢଳି ଆସୁଥାନ୍ତି । ରାମ ପଧାନଙ୍କ ନାତି ପ୍ରଥମେ ରହିମ୍‌କୁ ଦେଖିପକାଇ ପାଟିକଲା, ଆରେ ହେଇରେ ଅଜା ! ବଡ଼ବଡ଼ିଆମାନେ 'ହାଁ ହାଁ' କହୁ କହୁ ନାତି ଯାଇ ଅଜାଙ୍କ ଦାଢ଼ିରେ ଅବିର ବୋଳି ଦେଇ ତାଳି ମାରି ନାଚିଲା । ରହିମ ପ୍ରଥମେ ଦାନ୍ତ ନିକୁଟି ହସିଲେ; କିନ୍ତୁ ତତ୍କ୍ଷଣାତ୍ ଗମ୍ଭୀର ହୋଇଗଲେ । ତାଙ୍କର ମନେ ପଡ଼ିଗଲା ଅଳ୍ପଦିନ ତଳେ ଦୁଇଗାଁ ଭିତରେ ଗୋହତ୍ୟା ନିରୋଧ ନେଇ ଯେଉଁ କାଣ୍ଡ ଘଟିଯାଇଛି ସେଥିରେ ଅହମଦପୁରର ସମସ୍ତେ ଉତ୍ତ୍ୟକ୍ତ ହୋଇ ଅଛନ୍ତି । ସେ ରାଗ କୌଣସିମତେ ଥତାମତା ହୋଇ ରହିଚି । ଗୋରୁମାଂସ ଖାଇଲେ ନାନା ରୋଗ ହୁଏ, ତେଣୁ ତାକୁ ନ ଖାଇବା ଭଲ ଏବଂ ଆମ ହିନ୍ଦୁ ଭାଇମାନେ ଆମରି ଭଲପାଇଁ କହୁଛନ୍ତି, ଏ କଥା ଖଲିଫା ବୁଝାଇବାରୁ ଅହମଦପୁରିଆମାନେ ନ ବୁଝି ମଧ ବୁଝିଲାପରି ରହିଛନ୍ତି; କିନ୍ତୁ ଏ ଅପମାନ ମନଭିତରେ ରାଗକୁ କୁହୁଳାଉଚି ଅନବରତ । ଗୋମାଂସ ତ୍ୟାଗରେ କିଛି କଥା ନାହିଁ ଯେ, ସେ କଥାକୁ ବାଧ କରାଇବାଦ୍ୱାରା ତାଙ୍କର ଧର୍ମ ଓ ବ୍ୟକ୍ତିତ୍ୱକୁ ଘୃଣା ଭଳି ତାଙ୍କୁ ଲାଗୁଛି । ତେଣୁ ଆଜି ପୁଣି ହଠାତ୍ କି କାଣ୍ଡ ହେବ କିଏ ଜାଣେ । ସେତେବେଳେକୁ ଅନ୍ୟ ପିଲାଏ ରହିମ୍‌କୁ ଘେରିଯାଇ ସାରିଲେଣି । ରହିମ୍ ଥାଳିଆ ଟେକି ଧରି ବଡ଼ ପାଟିକରି ଚିତ୍କାର

କରୁଥାନ୍ତି- 'ଅରେ ହମ୍ ମୁସଲମାନ'; କିନ୍ତୁ ପିଲାଏ ସେ କଥା ଶୁଣିବା ଅବସ୍ଥାରେ ନାହାନ୍ତି । ରହିମ୍ ଭୟାର୍ତ୍ତ ଦୃଷ୍ଟିରେ ଅହମଦପୁର ଆଡ଼େ ଚାହିଁଲେ । ଗାଁର ଅନ୍ୟ ମୁସଲମାନ ଭାଇଙ୍କ କଥା ନ ମାନି ସେ ଆଜି ଆସିଛନ୍ତି; ତେଣୁ କଥାଟା ଅଧିକ ଖରାପ ଲାଗୁଚି, ଅଧିକ ଭୟର କାରଣ ମଧ୍ୟ ଅଛି । ହୋଲିଆମାନଙ୍କ ମଧ୍ୟରେ ବଡ଼ବଡ଼ିଆମାନେ ମଧ୍ୟ ତାଟକା ହୋଇ ଚାହିଁରହିଥାନ୍ତି କିଂକର୍ତ୍ତବ୍ୟବିମୂଢ଼ ଭାବରେ ।

ନିମିଷକେ ହଠାତ୍ ସବୁ ଓଲଟପାଲଟ ହୋଇଗଲା । ଫୁଲଭିତରୁ ହଠାତ୍ ଯେପରି ଗୋଖର ସାପ ବାହାରିପଡ଼ିଲା । ଅହମଦପୁରର ଟୋକାଏ ଛପି ସବୁ ଦେଖୁଥିଲେ । ଏଇ ଘଟଣା ଆଳରେ ସେମାନେ ପୂର୍ବ ଅପମାନର ଦାଉ ସାଧିବାପାଇଁ ଦଳ ଦଳ ହୋଇ ଠେଙ୍ଗା ବାଡ଼ି, ତେଣ୍ଟା, ଶାବଳ ଆଦି ଧରି 'ମାରୋ ଶାଲେ କାଫେରକୋ' 'ଆଲ୍ଲାହୁ ଆକବର' 'କୁର୍‌ବାନି, କୁର୍‌ବାନି' ଚିତ୍କାର କରି ଡିଆଁ ମାରି ଦୌଡ଼ିଲେ । କୁଶୁପୁରର ଜଣେ ଦୌଡ଼ି ଯାଇ ଗାଁରେ ଖବର ଦେବାରୁ ସିୟାଡୁ ମଧ୍ୟ ସେମିତି ଦଳ ଦଳ ହୋଇ 'ରାଧାବଲ୍ଲଭକୀ ଜୟ' କହି ଦୌଡ଼ିଲେ ନଈବାଲିକୁ । ନଈବାଲି ଉପରେ ଦୁଇଦଳ ମଧ୍ୟରେ ଖଣ୍ଡଯୁଦ୍ଧ ଲାଗିଗଲା ।

ରହିମ ପ୍ରଥମେ ଆବାକାବା ହୋଇ ନଈବନ୍ଧ ଉପରେ କିଛିକ୍ଷଣ ଛିଡ଼ା ହୋଇ ରହିଲେ । ଦେହ ତାଙ୍କର ଥରୁଥାଏ । ବାଧା ଦେବାର ଶକ୍ତି ତାଙ୍କର ନ ଥାଏ; କିନ୍ତୁ ସେ ଯେ ନିଜକୁ ଏସବୁପାଇଁ ଦାୟୀ ମନେକରି କିଛି ଗୋଟାଏ କରିବାକୁ ହିଁ ହେବ ଭାବି ଦୌଡ଼ିଲେ ଦଙ୍ଗା ଭିତରକୁ; କିନ୍ତୁ ମଣିଷ ହୋଇ ଆଉ ସେତେବେଳେ କେହି ନଥାନ୍ତି । ସମସ୍ତେ କ୍ରୋଧର ଏକ ଯନ୍ତ୍ର । ତାଙ୍କ କଥା କାହାରି କାନରେ ପଡ଼ିଲାନାହିଁ । ସେ ଧକ୍‌କା ଖାଇ ଖାଇ ଛିଟିକି ପଡ଼ିଲେ ନଈଭିତରକୁ । ଆଖି ଆଗରେ ଦେଖିଲେ ସଙ୍ଗାତ ରାମ ପଧାନଙ୍କ ପୁଅ ନବ ଅବଦୁଲ୍‌ର ମୁଣ୍ଡ ଏକା ଶାବଳ ପାହାରକେ ଦି ଫାଳ କରିଦେଲା । ଅବଦୁଲ୍‌ର ସର୍ବାଙ୍ଗ ରକ୍ତରେ ବୁଡ଼ିଗଲା । ତଥାପି ଅବଦୁଲ୍ ପଡ଼ିବା ଆଗରୁ ନବ ଛାତିରେ ଶାବଳ ଭୁଷି ଦେବାରୁ ନବ ଛାତିରୁ ରକ୍ତ ଫୁଆରା ଭଳି ବାହାରି କୁଶଭଦ୍ରାର ତତଲା ବାଲିରେ ପଡ଼ିବାକୁ ଲାଗିଲା । ଅଳ୍ପ ସମୟ ପରେ ନବ ଓ ଅବଦୁଲ୍ କୁଣ୍ଢାକୁଣ୍ଢି ହୋଇ ତଳେ ପଡ଼ିଗଲେ ।

ରହିମ୍ ଆଉ ସମ୍ଭାଳି ପାରିଲେନାହିଁ । 'ମାରୋ ଶାଲେ କାଫେରକୋ' ବୋଲି ସେ ଚିତ୍କାର କରି ଦୌଡ଼ିଲେ ପୁଣି । ତାଙ୍କର ମନେ ପଡ଼ିଗଲା ବର୍ତ୍ତମାନ ସଲାତୁଲ୍ ଉସ୍ତ (ମଧ୍ୟାହ୍ନ ପ୍ରାର୍ଥନା)ର ସମୟ । ଥମ୍ କିନା ଛିଡ଼ା ହୋଇଗଲେ । କଅଣ କରିବେ ଭାବି ପାରିଲେ ନାହିଁ । ଆଜିପର୍ଯ୍ୟନ୍ତ କୌଣସି ଦିନ ସେ ପ୍ରାର୍ଥନା ଛାଡ଼ିନାହାନ୍ତି; କାରଣ କୋରାନ୍ ସରିଫ୍‌ରେ ଆଦେଶ ଅଛି ଏହି ପ୍ରାର୍ଥନାକୁ ବିଶେଷ ଧ୍ୟାନ ଦେବାପାଇଁ । କ୍ରୋଧରେ ତାଙ୍କର ସର୍ବାଙ୍ଗ କଂପୁଥାଏ । ତଥାପି ସେ କୁଶଭଦ୍ରାର ପାଣିରେ ମୁହଁ ହାତ ଧୋଇ ବାଲିରେ ଗାମୁଛା ପାରି ନମାଜ ପଢ଼ିବାକୁ ଲାଗିଲେ । କୋରାନ୍ ସରିଫ୍‌ର କଥା ତାଙ୍କ କାନରେ ବାଜୁଥାଏ, ସବୁ ମଣିଷ ଏକ... ଆମର ବିଭେଦ ଭାବ ହିଁ ପାପ... ଆମର ଅହଂ, ସ୍ୱାର୍ଥବୁଦ୍ଧି ଓ ଅବିଦ୍ୟା ଏ ପାପ ବଢ଼ାଏ... ଯିଏ ସଂଯମୀ ଖୁଦା ତାଙ୍କୁହିଁ ସ୍ନେହ କରନ୍ତି... ଯେଉଁମାନେ ଭଗବାନଙ୍କ ନାମରେ କଳି ସୃଷ୍ଟି କରନ୍ତି ସେମାନଙ୍କୁ ପରିହାର କର; କିନ୍ତୁ ଯେତେ ଚେଷ୍ଟା କଲେ ବି ନମାଜରେ ମନ ଦେଇ ପାରିଲେ ନାହିଁ । ଅବଦୁଲ୍‌ର ଶବ ଉପରେ ନଜର ପଡ଼ିବା ମାତ୍ରେ ହିନ୍ଦୁ ଉପରେ କ୍ରୋଧ, ଘୃଣା, ଇର୍ଷା ପ୍ରବଳ ଭାବରେ ଭିତରୁ ଠେଲି ଆସୁଥାଏ । ନମାଜ ସହିତ ଗୋଳେଇ ହୋଇ ଯାଉଥାଏ

ନିଜ କଥା... କାଫେର୍ ଏମାନେ... ଏମାନେ ମୁହଁରେ କହନ୍ତି ଏଙ୍କ ଧର୍ମ ଉଦାର, ଇୟାଦ୍ରେ ସରକାରୀ ପଇସାରେ ହିନ୍ଦୁ ମନ୍ଦିର ବନାନ୍ତି... ଏମାନେ ସଂଖ୍ୟାରେ ଆମଠୁ ବେଶି ବୋଲି ଜବରଦସ୍ତି ତାଙ୍କର ହୋଲି ଆମେ ପାଳନ କରିବୁ... ଏଙ୍କୁ ବିଶୋଆସ ନାହିଁ... ପାକିସ୍ତାନ ପଳାଇବି... ଏଙ୍କର 'ଭାଇ ଭାଇ' ଡାକ ଏକ ଫରେବି (ଛଳନା) ...ହିନ୍ଦୁଧର୍ମହିଁ ଫରେବି ଧର୍ମ... ଶାଲେ କାଫେର୍ । ନମାଜ ଯାଗାରୁ ଉଠି ଦୌଡ଼ି ଯାଇଁ ଗୋଟାଏ ହିନ୍ଦୁକୁ ମାରିଦେବାକୁ ତାଙ୍କର ଭାରି ଇଚ୍ଛା ହୁଏ; କିନ୍ତୁ ପୁଣି କୋରାନ୍ ସରିଫ୍ ମନେ ପଡ଼ିଯାଏ... ଜୀବନ ମରଣ ଖୁଦାଙ୍କ ହାତରେ... ପରର ପାପ ଦୋଷ ପ୍ରତି ଦୃଷ୍ଟି ନ ଦେଇ ତାଙ୍କୁ ସମବେଦନା ଜଣାଅ... ତାଙ୍କ ମନ ଭିତରେ ଏମିତି ଭିଡ଼ା-ଓଟରା ଲାଗିଥାଏ । ଆଉ ସମ୍ଭାଳି ନ ପାରି ନମାଜ ଛାଡ଼ି ହଠାତ୍ ଉଠି ପଡ଼ି ମୃତ ଅବଦୁଲ ହାତରୁ ଖାବଳଟା ଟାଣି ନେଇ 'ଜେହାଦ୍ ଜେହାଦ୍' ପାଟି କରି ଦୌଡ଼ୁ ଦୌଡ଼ୁ ବେହୋସ ହୋଇ ପଡ଼ିଗଲେ, ନମାଜ ଛାଡ଼ି ଉଠିପଡ଼ିଥିବାର ଲଜ୍ଜା କୋହ ସମ୍ଭାଳି ନ ପାରି । ସୂର୍ଯ୍ୟ ସେତେବେଳେ ଠିକ୍ ମୁଣ୍ଡ ଉପରେ । ଶାଗୁଣାମାନେ ଉପରେ ଚକ୍କର ମାରୁଥାନ୍ତି । କୁଶଭଦ୍ରାର ବନ୍ଧ ଉପର ଆମ୍ବତୋଟାରେ କୋଇଲି କୁହୁକୁହୁ ଡାକୁଥାଏ । ନବ ଆଉ ଅବଦୁଲ୍ କୁଣ୍ଢାକୁଣ୍ଢି ହୋଇ ପଡ଼ିଥାନ୍ତି । ଦୁଇ ଦଳ ଭିତରେ ପିଟାପିଟି ସେମିତି ଚାଲିଥାଏ ।

ରାମ ପଧାନ ଯେତେବେଳେ ପୁଅର ମରିବା ଖବର ପାଇଲେ ସେତେବେଳେ ସେ ବଳଦମାନଙ୍କୁ ଖୁଆଉଥିଲେ ନିତି ଦିନ ପରି । ଶୁଣିବା ମାତ୍ରେ ତାଙ୍କର ଗୋଡ଼ ହାତ ଅଚଳ ହୋଇଗଲା । କଅଣ କରିବେ ବା କରିବା ଉଚିତ ସେ ଭାବି ପାରିଲେ ନାହିଁ । ଘର ଭିତରୁ ହଠାତ୍ କାନ୍ଦବୋବାଳି ଶୁଣି ସେ ଆହୁରି ଧକଚକେଇଗଲେ । ..କିଏ ଜଣେ କହିବା ପରି ତାଙ୍କୁ ଜଣାଗଲା ଯେ ନବବୋଉ ମୂର୍ଚ୍ଛା ଯାଇଛନ୍ତି । ତଥାପି ସେ ସ୍ଥାଣୁ ଭଳି ଛିଡ଼ା ହୋଇ ରହିଲେ । ତାଙ୍କର ସମସ୍ତ ଦେହ କ୍ରୋଧରେ ଥରି ଉଠିଲା । ପାଖରେ ପଡ଼ିଥିବା କଟୁରିଟା ଜାବୁଡ଼ି ଧରି ନଇ ଆଡ଼କୁ ଖଣ୍ଡେ ବାଟ ଦୌଡ଼ିଗଲେ ପ୍ରତିଜ୍ଞା କରି ଯେ ରହିମ୍‌କୁ ହାଣି ତା'ରି ରକ୍ତରେ ଶ୍ରୀଶ୍ରୀରାଧାବଲ୍ଲଭ ଜୀଉଙ୍କୁ ହୋରି ଖେଳାଇବେ । ମନରେ ତାଙ୍କର ମନେ ପଡ଼ିଗଲା ଯୁଗେ ଯୁଗେ ହିନ୍ଦୁମାନଙ୍କ ପ୍ରତି ମୁସଲମାନଙ୍କ ଅତ୍ୟାଚାର, ଆଓ-ରଙ୍ଗଜେବ୍‌ଙ୍କ ଅତ୍ୟାଚାର... ଯାଙ୍କ ଧର୍ମହିଁ ନିଷ୍ଠୁରତା ଉପରେ ପ୍ରତିଷ୍ଠିତ... ଏମାନଙ୍କର ଦୟାମାୟା ନାହିଁ... ଏମାନେ ବ୍ୟଭିଚାରୀ, ନରହନ୍ତା, ଅବିଶ୍ୱାସୀ... ଏମାନେ ଯାଆନ୍ତୁ ଶଳେ ପାକିସ୍ତାନ ପଳେଇ; କିନ୍ତୁ ଦୌଡ଼ୁ ଦୌଡ଼ୁ ତାଙ୍କର ମନେ ପଡ଼ିଗଲା-ମହାଭାରତ କଥା । ଶ୍ୟେନ ରୂପୀ ଇନ୍ଦ୍ର କହିଚନ୍ତି-ଯେଉଁ ଧର୍ମ ଅନ୍ୟ ଧର୍ମକୁ ଘୃଣା କରେ ତା'କୁ ଧର୍ମ.. ରହିମ୍ କହୁଥିଲା କୋରାନ୍‌ରେ ଅଛି, ଧର୍ମ ବିଷୟରେ ଜବରଦସ୍ତି ପାପ । ମନେ ପଡ଼ିଗଲା ତାଙ୍କର ସର୍ବଧର୍ମାନ୍ ପରିତ୍ୟଜ୍ୟ । ରହିମ୍ ଓ ମୁଁ ନିରାସକ୍ତ ହେବାପାଇଁ କେତେ ପ୍ରାର୍ଥନା କରିଚୁ । ସେ ସବୁ କଅଣ ଏଇ ଚରମ ପରୀକ୍ଷା ବେଳେ ବ୍ୟର୍ଥ ହୋଇଯିବ... ହେ ରାଧାବଲ୍ଲଭ ! ମୋତେ ଶକ୍ତି ଦିଅ... ଶକ୍ତି ଦିଅ । ମନେ ମନେ ସେ ଆବୃତ୍ତି କରିବାକୁ ଲାଗିଲେ...

ତସ୍ମାଦସକ୍ତଃ ସତତଂ କାର୍ଯ୍ୟଂ କର୍ମ ସମାଚାର...
କାମ ଏଷ କ୍ରୋଧ ଏଷ ରଜୋଗୁଣସମୁଦ୍ଭବଃ...
ପାପମାନମ୍ ପ୍ରଜହି ହ୍ୟେନମ୍ ଜ୍ଞାନବିଜ୍ଞାନ ନାଶନମ୍ ।

ଦୌଡୁ ଦୌଡୁ ସେ ଥମ୍‌କିନା ଛିଡ଼ା ହୋଇଗଲେ । ହାତମୁଠା ତାଙ୍କର ଶିଥିଳ ହୋଇଗଲା, କଟୁରିଟା ସଶବ୍ଦେ ତଳେ ପଡ଼ିଗଲା । ମନେହେଲା କଟୁରିଟା ହୋ-ହୋ କରି ହସିଉଠି କହୁଛି-ଭୀରୁ, ସବୁ ହିନ୍ଦୁ ଭୀରୁ, ଭଗବାନ ଅନ୍ୟାୟ ବିରୁଦ୍ଧରେ ଯୁଦ୍ଧ କରିବାକୁ ଯେତେ ବୁଝାଇଲେ କଅଣ ହେବ, ସବୁ ଭୀରୁର ଦଳ... ତୁମ ଉଦାରତା ଏଇ ଭୀରୁତାରୁ ଜାତ । ରାମ ପଧାନ କଟୁରିଟାକୁ ପୁଣି ଉଠାଇ ନେଇ ଖଣ୍ଡେ ବାଟ ଦୌଡ଼ିଗଲେ, ପୁଣି ଥମ୍ କିନା ଛିଡ଼ା ହୋଇପଡ଼ିଲେ । ଅସହାୟ ଭାବରେ ସେ ଉପରକୁ ଚାହିଁ ହାତଯୋଡ଼ି କହିଲେ, ''ହେ ରାଧାବଲ୍ଲଭ, ମୁଁ ଅର୍ଜୁନ ନୁହେଁ ଯେ ଏ ବିପରୀତ ଭାବକୁ ଏକ କରିପାରିବି । ମୋତେ ରକ୍ଷାକର...ମୋତେ ରକ୍ଷାକର ପ୍ରଭୁ- କହୁ କହୁ ସେ ବେହୋସ ହୋଇ ତଳେ ପଡ଼ିଗଲେ ।

ସେତେବେଳକୁ ପୁଲିସ୍ ଆସି ନଈବାଲିରେ ଦୁଇଟି ଶବକୁ ଜଗି ଛିଡ଼ା ହୋଇସାରିଲେଣି, ଦୁଇଦଳରୁ ଅନେକ ଧରାହୋଇ ଚାଲାଣ ହୋଇସାରିଲେଣି । ଚୌକିଦାରମାନେ ଶାଗୁଣାମାନଙ୍କୁ ଖେଦୁଥାଆନ୍ତି । କୋଇଲିର ଅଧୀର ଡାକ ଥମି ନାହିଁ । ସୂର୍ଯ୍ୟ ପଶ୍ଚିମ ଆଡ଼କୁ ଢ଼ଳିଲେଣି । ପଶୁପକ୍ଷୀମାନେ ଘରମୁହାଁ ହୋଇ ଦୌଡୁଛନ୍ତି । କୁଶଭଦ୍ରାର ସ୍ରୋତ ସେମିତି କୁଳୁକୁଳୁ ନାଦରେ ବହିଯାଉଛି ସମୁଦ୍ରକୁ । ପୃଥିବୀ ସେମିତି ବୁଲୁଛି କାଳହୀନ ମହାକାଳ ମଧରେ କାଳ ସୃଷ୍ଟି କରି । ଏତେ ଯେ କାଣ୍ଡ ଘଟିଗଲା, କାହାରି ଯେମିତି ସେଥିରେ କିଛି ଯାଏ ଆସେ ନାହିଁ । ଶ୍ରୀ ଶ୍ରୀ ରାଧାବଲ୍ଲଭ ମଧ ହୋରି ଖେଳିସାରି ଶୋଇଲେଣି ।

• • •

ରାତି ପ୍ରାୟ ତିନିଟା । ପ୍ରତିଦିନର ଅଭ୍ୟାସବଶତଃ ରାମପଧାନ ହୁ-ଦଣ୍ଡେ ବିଛଣା ଛାଡ଼ି ଉଠିଲେ । ନଈ ଆରପାରିର କୁକୁଡ଼ା ଡାକ 'ଚକ୍ରଧର ରକ୍ଷାକର' ଶୁଣି ରାଧାବଲ୍ଲଭଙ୍କୁ ପ୍ରଣାମ କରି କାନେଇ ରହିଲେ ରହିମ୍‌ର 'ଆଲ୍ଲାହୁ ଆକବର୍' ଡାକକୁ । ଏହା ସେମାନଙ୍କର ନିତିଦିନର ଅଭ୍ୟାସ ।

ବାହାରେ ନିସ୍ତବ୍‌ଧ ମୌନ ରାତ୍ରି, ସୁନ୍ଦର ଅଥଚ ଉଦାର, ମୌନ, ନିର୍ଲିପ୍ତ । ସମସ୍ତ ପୃଥିବୀ ଯେପରି ଧ୍ୟାନମଗ୍ନ । ଗଛବୃଛ ବି ଧ୍ୟାନସ୍ଥ । କୁଶଭଦ୍ରାର ନଈବାଲିରେ ନିଆଁ ଜଳୁଥିବାର ଦେଖି ରାମ ପଧାନଙ୍କ ମନେ ପଡ଼ିଗଲା ସବୁ କଥା । ସବୁ ଘଟଣା ପୁଣି ଥରେ ଯେପରି ତାଙ୍କ ଆଖି ଆଗରେ ଘଟିଗଲା; କିନ୍ତୁ ବର୍ତ୍ତମାନ ସେ ଖାଲି ନିର୍ଲିପ୍ତ ଦର୍ଶକ, ମନରେ କୌଣସି ଭାବାନ୍ତର ନାହିଁ । କେବଳ ଯେତେବେଳେ ମନେ ପଡ଼ିଗଲା ରହିମ୍‌କୁ ଏ ଘଟଣା ଶଯ୍ୟାଶାୟୀ କରିପକାଇଥିବ, ସେ ମନରେ ବେଦନା ଅନୁଭବ କଲେ । ଧୀରେ ଧୀରେ ସେ ଚାଲିଲେ ନଈ ଆଡ଼କୁ ।

ରହିମ୍‌ର ମଧ ନିଦ ଭାଙ୍ଗିଯାଇଥାଏ ସେତିକିବେଳକୁ । ସେ ମଧ କାନେଇ ଥାଏ 'ରାଧାବଲ୍ଲଭ ହେ' ଡାକକୁ । ରହିମ୍‌ର ବୁଢ଼ୀମା' ଆର ବଖରାରେ ଲହରେଇ ଲହରେଇ କାଶି ପଚାରିଲେ, ''ଏ ରହିମ୍, ଆରେ ରାମଚନ୍ଦର ଉଠିସ୍ ନେହିଁ କ୍ୟା, କୁଁୟ ? ଆରେ ଏ ରହିମ୍, ନିଆଁନଗା ନିକମ୍ମା, ଆରେ ଯା କେ ଦେଖୋ କ୍ୟା ହୁଆ ଉସ୍‌କା ।'' ବୁଢ଼ୀ ଆଉ କହିପାରିଲେ ନାହିଁ, କାଶି କାଶି ବେଦମ୍ ହୋଇଗଲେ । ନିତିଦିନର ଅଭ୍ୟାସ ଭଳି ସେ ଏତିକିବେଳେ ଉଠି ରହିମ୍‌କୁ ଉଠାଇଦିଅନ୍ତି । ରହିମ୍ ଉଠି ନମାଜ ପଢ଼ି ଚାଲିଯାଏ ସଙ୍ଗାତ ସହିତ ଗାଧୋଇବାକୁ । ରହିମ୍ ପାଟିକରି କହିଲେ, ''ଯାତାହୁଁ ଅମ୍ମିଜାନ୍, ତୁମ୍ ମତ୍ ଫିକ୍ର କରୋ, ଖାସି (କାଶ) ବନ୍ଦ୍ ଯାଏଗା ।'' ରହିମ୍ ମଧ ଧୀରେ

ଧୀରେ ଚାଲିଲେ ନଈଆଡ଼େ ।

ନଈବାଲିରେ ନିଆଁ ଜଳୁଥିବାର ଦେଖି ତାଙ୍କ ଛାତି ଛନ୍ କରି ହେଲା । ତେବେ କଅଣ ସଙ୍ଗାତ ମୋତେ ନ ଡାକି ଶବ ପୋଡ଼ାଇଦେଲେ ? ଅଭିମାନରେ ତାଙ୍କ ଆଖି ଛଳ ଛଳ ହୋଇଗଲା; କିନ୍ତୁ ନିଆଁ ପାଖକୁ ଯାଇ ଦେଖିଲେ କିଏ ତିନିଜଣ ବିଦେଶୀ ଧୁନି ଜାଳି ହୋଲି ଗୀତ ଗାଉଛନ୍ତି । ପଚାରି ବୁଝିଲେ ସେମାନେ ବିହାରୀ, ପୁରୀକୁ ଚାଲି ଚାଲି ଯାଉ ଯାଉ ବାଟବଣା ହୋଇ ରାତିକ ନଈବାଲିରେ କଟାଇ ଦେଉଛନ୍ତି । ସେମାନେ ଗାଉଥାନ୍ତି-

''ଲଲୀନି ଲାଲନ ଲାଲ ଅଭିରନ ସଖିଗନ ଲାଲହି ଲାଲ,

ଲାଲତରୁ ସଞ୍ଚାରି ଲାଲ ଦିନ ଯାମିନୀ ଲାଲହି ପିୟର କି ସାଲ ।''

ରହିମ୍ ବିଭୋର ହୋଇ ଛିଡ଼ାହୋଇ ରହିଲେ ସେଠି । ଅନାଇ ଦେଖିଲେ ଅବ୍ଦୁଲ ଓ ନବ ଅଦୂରରେ କୁଣ୍ଡାକୁଣ୍ଡି ହୋଇ ପଡ଼ିଚନ୍ତି ସେମିତି । ପୁଲିସ୍ ଏପର୍ଯ୍ୟନ୍ତ ଶବ ଦୁଇଟିକୁ ଡାକ୍ତରଖାନା ନେଇ ନାହିଁ, ଜଗି ବସିଚନ୍ତି ଚୌକିଦାରମାନେ । ଜଣେ ବିହାରୀ ପୁଲିସ୍ ମଧ୍ୟ ବିଦେଶୀମାନଙ୍କ ସହିତ ଯୋଗଦେଇ ଗାଉଚି । ଅଦୂରରେ ଶାଗୁଣାମାନଙ୍କ ଡେଣା ଫଡ଼ଫଡ଼ ଓ ବିଲୁଆ ଡାକ ଶୁଭୁଛି; କିନ୍ତୁ ନିଆଁ ପାଖରେ ଚାଲିଚି ଭିନ୍ନ ପ୍ରକାର କଥା । କାହାରି ସହିତ କାହାରି ଯେପରି ସମ୍ବନ୍ଧ ନାହିଁ; କିମ୍ବା ସତେ ଯେମିତି ଏ ସବୁ ବିପରୀତ ଭିତରେ କୋଉଠି ଗୋଟେ ସମ୍ବନ୍ଧ ଲୁଚିରହିଚି । ଆଶ୍ଚର୍ଯ୍ୟ କଥା- ସେହି ବିଦେଶୀମାନଙ୍କ ଭିତରୁ ଜଣେ ହଠାତ୍ ରହିମ୍‌କୁ ଅନୁରୋଧ କଲା-

ଏକ ହୋଲୀ ଶୁନାଇଏ ଭାୟା !

ରହିମ୍‌ଙ୍କ ମନଭିତରୁ ହଠାତ୍ ଗୋଟାଏ କୋହ ଉଠିଲା । ସେ କୋହ ଦୁଃଖର ନୁହଁ କି ଆନନ୍ଦର ନୁହଁ । କି ଏକ ଅଜଣା ଅପୂର୍ବ ବେଦନା ତାଙ୍କ ମନକୁ ଘାରିଦେଲା । ମନରୁ ତାଙ୍କର ସ୍ୱତଃ କାଫି ସିନ୍ଧୁ ରାଗର ଗାନ ବାହାରି ଆସିଲା-ବଲ୍‌ମାରେ ଚୁନରିୟା ମୈକୋ ଲାଲ ରଙ୍ଗାଦେ-ହେ ମୋର ପ୍ରିୟ ! ମୋର ଏ ଆବରଣ ତୁମରି ରଙ୍ଗ-ରଞ୍ଜିତ ହୋଇଯାଉ । ଗମଗମ ହୋଇ ତାଙ୍କର କଣ୍ଠରୁ ସ୍ୱର ବାହାରୁଥାଏ, ଝରଝର ହୋଇ ଆଖିରୁ ଲୁହ ଝରୁଥାଏ । ଗୀତ ସରିବା ପରେ ସମସ୍ତେ ନିଶ୍ଚଳ ହୋଇ ବସିରହିଲେ କିଛିକ୍ଷଣ; କାହାରି ତୁଣ୍ଡରୁ କଥା ବାହାରୁ ନ ଥାଏ । ପ୍ରଶଂସା ଜଣାଇବାକୁ ମଧ୍ୟ ଇଚ୍ଛା ହେଉନଥାଏ ।

ହଠାତ୍ 'ଶୁଭାନ୍‌ଆଲ୍ଲାହ' ଶୁଣି ଚମକି ପଡ଼ି ରହିମ୍ ଦେଖିଲେ ଛିଡ଼ା ହୋଇଚନ୍ତି ସଙ୍ଗାତ । ଆଖିରୁ ତାଙ୍କର ଲୁହ ଝରିଯାଉଚି । ସେ ହଠାତ୍ ଗାଇବାକୁ ଲାଗିଲେ-

ଆସ୍‌ହାଦୋ ଆଲ୍ଲା ଇଲାହା ଇଲ୍ ଆଲ୍ଲାହ,

ଆସ୍‌ହାଦୋ ଆନ୍‌ନା ମୁହମ୍ମଦର ରସୁଲୁଲ୍ଲାହ... ।

ରାମ ପଧାନଙ୍କ ସ୍ୱର ବିସ୍ତୃତି ସମସ୍ତଙ୍କୁ ଅଭିଭୂତ କରିଦେଲା । ଧୀର ମନ୍ଥର ଗତିରେ ପରିଷ୍କାର ଭାବରେ କରୁଣସ୍ୱରରେ ପ୍ରତ୍ୟେକ ଶବ୍ଦ ତାଙ୍କ କଣ୍ଠରୁ ନିର୍ଗତ ହେଉଥାଏ । ବିଦେଶୀମାନଙ୍କ ଭିତରୁ ଜଣେ ଆନନ୍ଦରେ କହିଲା, ''ଅବ ଭଗବାନ ଜରୁର୍ ହିଆଁ ହୋଙ୍ଗେ । କୋରାନ୍ ସରିଫ କହତେହେଁ ଭଗବାନ୍ କା ନାମ୍ ଶୁନ୍‌କର ଯିସ୍ କା ହିୟା ଉଚ୍ଛଲତା ଓ ହି ଭକ୍ତ ହେ, ଚାହେ ୱ୍ର ହିନ୍ଦୁ ହୋ ୟା ମୁସଲ୍‌ମାନ । ଭଗବାନ୍ ଶ୍ରୀକିଷନ କହେ ହେଁ ହମାରା ଭକ୍ତ ଯହାଁ ହେ ହାମ୍ ୱ୍ହାଁ ରହୁଙ୍ଗା ।

ଧନ୍ୟ ହେଯ ଆପ୍ ଲୋଗ୍ ।''

ସକାଳୁଆ ହେମାଳ ପବନ ସେତେବେଳକୁ ବୋହିବାକୁ ଲାଗିଲାଣି । ପୂର୍ବଦିଗର ପ୍ରଭାତୀ ତାରା ଦପ୍‌ଦପ୍ ହୋଇ ଜଳୁଥାଏ । ଅହମଦ୍‌ପୁରରୁ ଭାସି ଆସୁଥାଏ ପ୍ରଭାତୀ ପ୍ରାର୍ଥନା ଓ କୃଷ୍ଣପୁରରୁ ପ୍ରଭାତୀ ବନ୍ଦନା ।

ବିଦେଶୀମାନେ ବାଟ ପଚାରି ଚାଲିଗଲେ । ରହିମ୍ ରାମ ପଧାନଙ୍କୁ ଛାତିରେ ଚାପିଧରି ପଚାରିଲେ- ''ସଙ୍ଗାତ, ଆମରି ପୁଅ ପରସ୍ପର ହାତରେ ମଲେ, ତେବେ କଅଣ ଖୁଦା ଚାହାନ୍ତି ଆମେ ଚିରଶତ୍ରୁ ହୋଇ ରହିବାକୁ ?''

ରାମ ପଧାନ ହସି କହିଲେ- ''ଭାଇ, ଦେଖ ନବ ଆଉ ଅବଦୁଲ୍ କେମିତି କୁଣ୍ଢାକୁଣ୍ଢି ହୋଇ ଶୋଇଛନ୍ତି । ଭଗବାନଙ୍କ ସଙ୍କେତ-ଆମେ ନୂଆ କରି ପରସ୍ପରକୁ ଚିହ୍ନିବା, ଛଳନାରେ ନୁହେଁ, ସ୍ୱାର୍ଥରେ ନୁହଁ, ରାଜନୀତିରେ ନୁହଁ, ଆପଣାକୁ ବଳି ଦେଇ... ।''

ଦୁହେଁ ହାତ ଧରାଧରି ହୋଇ ଚାଲିଲେ ନଈର ଉପର ମୁଣ୍ଡକୁ ଗାଧୋଇବା ପାଇଁ, ନିତିଦିନର ଅଭ୍ୟାସ ଅନୁସାରେ ।

# ଧର୍ମକ୍ଷେତ୍ରେ

ଫଗୁଣ ମାସର ଶୁକ୍ଳପକ୍ଷ ତ୍ରୟୋଦଶୀର ସକାଳ । ସିନ୍ଦୁରା ଫାଟି ଫାଟି ଆସୁଛି । ଏତେ ସକାଳୁ ମଧ କାହୁଁ ଗୋଟିଏ କୋଇଲି କୁଶଭଦ୍ରା ନଦୀର ବନ୍ଧ ଉପର ଆମ୍ବତୋଟାରେ ବସି ଏକୁଟିଆ ରାବିଚାଲିଛି ଆକୁଳଭାବରେ ।

ରାମ ପଧାନଙ୍କ ନାତି, ନବଘନଙ୍କ ପୁଅ, ଶ୍ୟାମଘନ ଅନ୍ୟମନସ୍କ ଭାବରେ ଧୀରେ ଧୀରେ ନଈଧାରକୁ ଓହ୍ଲାଇଲେ । ଆଠବର୍ଷ ପରେ ସେ ଡାକ୍ତର ହୋଇ ପ୍ରଥମ ଥର ଗାଁକୁ ଫେରିଛନ୍ତି । ଆଜି ସକାଳୁ ମନଟା ତାଙ୍କର ହଠାତ୍ ଆନନ୍ଦରେ ଭରିଗଲା । ସେ ଆନନ୍ଦ ଯେପରି ଖାଲି ଖୁସି ନୁହେଁ, ଖୁସିଠୁ ଆହୁରି କିଛି ବେଶି । ଯେଉଁଆଡ଼କୁ ସେ ଚାହିଁଲେ, ସବୁ ତାଙ୍କୁ ସୁନ୍ଦର ମନେହେଲା, ଏପରିକି ବାଡ଼ିପଟର ପଚା ପୋଖରୀଟି ଆଉ ଶୁକୁଟା ମା'ର ଶୁଖିଲା ପତରଗଦାଟି ବି । ପୁଣି ସେ ଆନନ୍ଦଭିତରେ ଗୋଟିଏ ଅଜଣା ବେଦନା ମିଶିଯାଇ ତାକୁ ରସଘନ କରିଦେଇଚି; ଅଥଚ କେଉଁଥିପାଇଁ ଏପରି ଲାଗୁଚି, ସେ କିଛି କାରଣ ଖୋଜି ପାଇଲେ ନାହିଁ । ସେ ଆଉ ଘରଭିତରେ ରହିପାରିଲେ ନାହିଁ । ରାତି ନ ପାହୁଣୁ ବାହାରି ଆସିଲେ କୁଶଭଦ୍ରା ନଦୀକୁ, ଯାହାର ନାନା ରୂପକୁ ସେ ପିଲାଟିବେଳୁ ଦେଖି ଦେଖି ମଧ କଳନା କରି ପାରିନାହାନ୍ତି କି ତୃପ୍ତି ମଧ ପାଇନାହାନ୍ତି । କୁଶଭଦ୍ରା ଥିଲା ତାଙ୍କର ବନ୍ଧୁ, ଦାର୍ଶନିକ, ପଥପ୍ରଦର୍ଶକ । ବହୁଦିନ ପରେ ଆଜି କୁଶଭଦ୍ରାକୁ ଦେଖି ତାଙ୍କର ବେଦନା, ଆନନ୍ଦ ଆହୁରି ତୀବ୍ର, ଆହୁରି ବ୍ୟାପ୍ତ ହୋଇଗଲା ।

ପନ୍ଦର ବର୍ଷ ପୂର୍ବେ ଏମିତି ଗୋଟିଏ ଦିନରେ ନଈ ଆରପାଖ ଅତଡ଼ାଉପର ଗାଁ ଅହମଦପୁରର ମୁସଲମାନ ଓ ଏପାଖ ଅତଡ଼ାଉପର ଗାଁ କୁଶୁପୁରର ହିନ୍ଦୁମାନଙ୍କ ଭିତରେ ହୋଲିଖେଳ ନେଇ ଦଙ୍ଗା ଲାଗି ତାଙ୍କ ବାପା ନବଘନ ଓ ରହିମ୍ ଅଜାଙ୍କ ପୁଅ ଅବଦୁଲ୍ ପରସ୍ପରକୁ ମାରି ଏଇ ନଈବାଲିରେ କୁଣ୍ଢାକୁଣ୍ଢି ହୋଇ ଚିରଦିନପାଇଁ ଶୋଇଯାଇଥିଲେ । ସେ ଦଙ୍ଗାର କାରଣ ଥିଲେ ପୁଣି ଶ୍ୟାମଘନ ନିଜେ । ତାଙ୍କୁ ସେତେବେଳେ ଆଠବର୍ଷ । ସେ ରହିମ ଅଜାଙ୍କ ଦାଢ଼ିରେ ଅବିର ବୋଳିଦେଇଥିଲେ ବୋଲି ଦୁଇ ଗାଁ ଭିତରେ ହଣାକଟା ଲାଗିଯାଇଥିଲା । ଅଥଚ ପ୍ରଧାନବଂଶ ଓ ଖଲିଫାବଂଶ ଭିତରେ ଅଭେଦ୍ୟ ପ୍ରୀତି ଯୁଗଯୁଗଧରି ଚାଲିଆସିଥିଲା-ଏବେ ବି ଅଛି, ଯଦିଓ ପରସ୍ପର ଗାଁ-ବାଲାଙ୍କ ଦାଉରୁ ତା'ର ବାହ୍ୟପ୍ରକାଶ ଅନେକ କମିଯାଇଛି, କିନ୍ତୁ ତାହା ଯେ ଏକ ନୂତନ ଓ ଅଭିନବ ପରୀକ୍ଷାର ସମ୍ମୁଖୀନ ହେବାବେଳ ଏମିତି ଆସିବ, କିଏ ଜାଣିଥିଲା ।

ଶ୍ୟାମଘନ ପାଣିଭିତରକୁ ପଶିଲାବେଳେ ଦେଖିଲେ ନଈଧାରର ଆରପାଖରୁ ଗୋଟିଏ ଯୁବତୀ ଟରଟର ହୋଇ ପାଣିଭିତରୁ ଉଠିଯାଉଚି । ହଠାତ୍ ଶ୍ୟାମଘନକୁ ଦେଖି ସେ ମୁହୂର୍ତ୍ତକପାଇଁ

ଥମକିଗଲା । ଆଉ ସେଇ ମୂହୂର୍ତ୍ତକ ଭିତରେ ସବୁ ଓଲଟପାଲଟ ହୋଇଗଲା ଦୁଇଜଣଙ୍କ ଅଜାଣତରେ । ସେଇ ମୂହୂର୍ତ୍ତକଭିତରେ, ବଟବୃକ୍ଷର କ୍ଷୁଦ୍ରବୀଜରେ ଏକ ବିରାଟ ବଟବୃକ୍ଷ ରହିଥିବା ଭଳି, ରହିଗଲା ଅନେକ ଅନେକ କଥା ।

ଶ୍ୟାମଘନଙ୍କୁ ଦେଖି ଯୁବତୀଟି ମୁହଁରେ କିଏ ଯେପରି ଅବିର ମୁଠାଏ ଛାଟିଦେଲା । ଅଳ୍ପ ସମୟପାଇଁ ଯୁବତୀଟି ବିସ୍ମୟ-ବିସ୍ଫାରିତ ନୟନରେ ଶ୍ୟାମଘନଆଡ଼େ ଚାହିଁରହିଲା, ଯେପରି ଦୁଇଟି ନୀଳକଇଁ ଫୁଟିଗଲା । ଦେହର ରଙ୍ଗ ଆଉଟା ସୁନା ଭଳି । ଘନକୃଷ୍ଣ କୁଞ୍ଚିତ କେଶର ଚୂର୍ଣ୍ଣକୁନ୍ତଳଗୁଡ଼ିକ ମୁହଁ ଉପରେ ପଡ଼ି ମନେହେଉଥିଲା କୁଶଭଦ୍ରାର ଗଭୀର ନୀଳ ସ୍ରୋତ ସୁନାରଙ୍ଗର ବାଲି ଉପରେ ବୋହି ଯାଉ ଯାଉ ସାନ ସାନ ଭଉଁରି ସୃଷ୍ଟିକରିଚି । ସିକ୍ତ ବସନତଳୁ ଗୁରୁନିତମ୍ବ, ଘନବକ୍ଷ ଓ ଜଘନଯୁଗଳର ସୁପୃଷ୍ଟ ବର୍ତ୍ତୁଳତା ଶ୍ୟାମଘନଙ୍କ ପ୍ରତ୍ୟେକ ଶିରାରେ ନିଆଁର ସ୍ରୋତ ଛୁଟାଇଦେଲା । ଯେଉଁ ଆନନ୍ଦରେ ଅଦୂରର ପଲାଶ ବଣ ଜଳୁଚି, ସେଇ ନିଆଁ ଯେପରି ତାଙ୍କର ପ୍ରତ୍ୟେକ ଶିରାରେ ଖେଳିଗଲା । ଶ୍ୟାମଘନ ଏତେ ରୂପ ଆଗରୁ କେବେ ଦେଖି ନ ଥିଲେ; କିମ୍ବା ଦେଖିଥିଲେ ମଧ ବୁଝିପାରିନଥିଲେ । ତାଙ୍କର ମନେହେଲା, ଶ୍ରୀରାଧା ଯମୁନାରେ ଗାଧୋଇ ଶ୍ୟାମଙ୍କୁ ଦେଖିପକାଇବା ଭୟରେ ତରତର ହୋଇ ଘରକୁ ଫେରିଯାଉଛନ୍ତି !

ଯୁବତୀର ଦେହରେ ମଧ ସେଇ ନିଆଁ ଲାଗିଗଲା ପରା ! ଅପାଙ୍ଗଦୃଷ୍ଟିରେ ଶ୍ୟାମଘନଙ୍କୁ ଥରେ ଚାହିଁଦେଇ ସେ ନ ଯଯୌ ନ ତସ୍ଥୌ ଅବସ୍ଥାରେ କିଛିକ୍ଷଣ ଛିଡ଼ା ହୋଇଗଲା । ଶ୍ୟାମଘନଙ୍କ ସୁନ୍ଦର ଶ୍ୟାମ ବଳିଷ୍ଠ ଦେହ, ଉଦାସ ଚାହାଣି ଦେଖି ତା'ର ମନେହେଲା ସତେ ଯେପରି ଏଙ୍କରିପାଇଁ ସେ ନିଜ ଅଜାଣତରେ ଅପେକ୍ଷା କରି ବସିଥିଲା । ତା' ନ ହୋଇଥିଲେ ଯିଏ ବଡ଼ ହେବା ଦିନରୁ କେବେ ନଈକୁ ଗାଧୋଇ ଆସେନାହିଁ, ଆଜି ସକାଳୁ ଜିଦ୍‌କରି ଗୋସିମା'ଙ୍କ ଅନୁମତି ଆଦାୟ କରି କାହିଁକି ଆସିଥାନ୍ତା ! ଏଙ୍କୁ ଦେଖିବା ମାତ୍ରକେ କାହିଁକି ଗୋସିବାପାଙ୍କ ପ୍ରିୟ ଗୀତଟି ବାରମ୍ବାର ମନେପଡ଼ନ୍ତା-'ବଇମାରେ ଚୁନରିୟା ମୈକୁ ଲାଲ ରଙ୍ଗା ଦେ; କିନ୍ତୁ ମୁହଁରୁ ତା'ରି ଭୟାର୍ତ୍ତ ସ୍ୱରରେ ବାହାରିଗଲା, 'ହାୟ ଆଲ୍ଲା !' ଭୟ ତାଙ୍କର ଶ୍ୟାମଘନଙ୍କୁ ନୁହେଁ, ମୁହୂର୍ତ୍ତକ ଭିତରେ ତା ଜୀବନରେ ଯେଉଁ ଓଲଟପାଲଟ ହୋଇଗଲା-ସେଇଥିପାଇଁ । ମନ ତାର ଏକ ଅଜଣା ଆନନ୍ଦରେ ଭରିଗଲା ସତ; କିନ୍ତୁ ଦେହ ଭୟରେ ଥରିଗଲା । ତାର 'ହାୟ ଆଲ୍ଲା' ରେ ଆନନ୍ଦ ଥିଲା ଓ ଭୟ ମଧ ପ୍ରକାଶ ପାଇଲା ।

'ହାୟ ଆଲ୍ଲା' ଶୁଣି ଘନଶ୍ୟାମ ଚମକି ପଡ଼ିଲେ । ତେବେ ଏ ହେଉଚି ଅବଦୁଲ କଜେଇଙ୍କ ଝିଅ ହସ୍‌ନୁବାନୁ ! ଯାହାକୁ ପିଲାବେଳେ ଏଇ କୁଶଭଦ୍ରାର ପାଣିରେ ବୁଡ଼ିଯାଉଥିବାବେଳେ ସେ ନିଜର ଜୀବନ ବିପନ୍ନ କରି ରକ୍ଷା କରିଥିଲେ ! ତେବେ କ'ଣ କୁଶଭଦ୍ରା ସତରେ ହସ୍‌ନୁକୁ ଟାଣି ନେଉ ନ ଥିଲା; ଗୋଟାଏ ଚାଲାକି କରୁଥିଲା ! ଶ୍ୟାମଘନ କୁଶଭଦ୍ରା ଆଡ଼େ ଚାହିଁଲେ ଆଖି ତରାଟି । ତାଙ୍କର ମନେହେଲା କୁଶଭଦ୍ରା ଖିଲିଖିଲି କରି ହସିଉଠିଲା । ଶ୍ୟାମଘନ ପାଣିରେ ଗୋଟାଏ ଚାପୁଡ଼ା ମାରି ମନେମନେ କହିଲେ, 'ଦୁଷ୍ଟ, ଏ କ'ଣ କଲୁ !' ଶ୍ୟାମଘନଙ୍କ ମୁହଁରେ ଆନନ୍ଦ, ଭୟ, ବିସ୍ମୟ, ହତାଶା ଏକାସାଙ୍ଗରେ ଖେଳିଗଲା । ତାଙ୍କର ମୁହଁରୁ ବାହାରିଗଲା, 'ହାୟ ରାଧାବଲ୍ଲଭ ! ଇୟେ କ'ଣ କଲ ।'

ରାଧାବଲ୍ଲଭଙ୍କ ନାଁ ଶୁଣି ହସ୍‌ନୁ ଚମକିପଡ଼ିଲା । ସେ ଜାଣେ ଯେ ପ୍ରଧାନବଂଶର ଲୋକେ କଥା-କଥାକେ ସେମାନଙ୍କର କୁଳଦେବତା ରାଧାବଲ୍ଲଭଙ୍କ ନାଁ ନିଅନ୍ତି । ତେବେ କ'ଣ ଏ ଶ୍ୟାମଘନ,

ଯିଏ ମୋତେ ପିଲାବେଳେ ଏଇ ନଈରେ ବୁଡ଼ିଯାଉଥିବାରୁ ବଞ୍ଚାଇଥିଲେ ? ଏ କଥା ଭାବିବା ମାତ୍ରକେ ହସନ୍ର ପ୍ରତି ଅଙ୍ଗରେ ପୁଲକ ଖେଳିଗଲା; କିନ୍ତୁ ଭୟରେ ସେ ପ୍ରାୟ ଅଚେତ ହୋଇପଡ଼ିଲା । କୌଣସିମତେ ନିଜକୁ ସମ୍ଭାଳି ନେଲା; କିନ୍ତୁ ତାର ମୁହଁରୁ ମଧ ବାହାରିଗଲା, 'ହାୟ ଆଲ୍ଲା, ମୈ ଅବ୍ କ୍ୟା କରୁଁ ।'

ଦୁହେଁ ହିଁ ବୁଝିପାରିଲେ ପ୍ରେମରେ ପଡ଼ିଛନ୍ତି ଏବଂ ଏହାର ପରିଣାମ ଭାବି ଦୁହେଁ ଶଙ୍କିତ ହେଲେ । ଦୁହେଁ ଏପରି ଦୁଇ ଭିନ୍ନ ଧର୍ମର ଯେ, ଦୁଇ ଧର୍ମର ଲୋକଙ୍କ ଭିତରେ ଶହ ଶହ ବର୍ଷର ଗ୍ଳାନି, ଅବିଶ୍ୱାସ, ଶତ୍ରୁତା ଶେଷରେ ଭାରତକୁ ଖଣ୍ଡ ଖଣ୍ଡ କରିଚି । ତେବେ ବି ସେ ଶତ୍ରୁତା ଯାଇନାହିଁ । ସାମାନ୍ୟ ସାମାନ୍ୟ କାରଣରୁ ଦୁହେଁ ଦୁହିଁଙ୍କୁ ହାଣିପକାଉଛନ୍ତି, ନାନା ବୀଭତ୍ସ କାଣ୍ଡରେ ମାତିଉଠୁଛନ୍ତି । ମାତ୍ର କିଛିଦିନ ପୂର୍ବେ ମସଜିଦ୍ ସାମନାରେ ବାଜା ବଜାଇବା ନେଇ କେତେ ହତ୍ୟାକାଣ୍ଡ ହୋଇଯାଇଛି, କେତେ ନିରୀହ ଲୋକଙ୍କ ଘର ଜଳି ପାଉଁଶ ହୋଇଯାଇଛି ପୁଣି, ଏ ସନ କୃଷ୍ଣପୁରର ଦୋଳପୂର୍ଣ୍ଣିମାକୁ ଅହମଦପୁରର ମସଜିଦ୍ ସାମନାରେ ବାଜା ବଜାଇ ଗୋବିନ୍ଦପୁର ମେଳଣକୁ ଯିବାର ଗୁପ୍ତ ମସୁଧାରେ ମାତିଲେଣି । ଏହାର ସୁରାକ ପାଇ ଅହମଦପୁରର ମୁସଲମାନମାନେ ମଧ ସଜବାଜ ହେଲେଣି । ଗୋବିନ୍ଦପୁର ଓ କୃଷ୍ଣପୁର ଭିତରେ ମାଡ଼ପିଟ ଲାଗି ତିରିଶ ବର୍ଷ ହେବ ଶ୍ରୀ ଶ୍ରୀ ରାଧାବଲ୍ଲଭ ଜୀଉଙ୍କ ଗୋବିନ୍ଦପୁର ମେଳଣକୁ ଯିବା ବନ୍ଦ ହୋଇଥିଲା । ଖାଲି ସେତିକି ନୁହେଁ, ଦୁଇ ଗାଁ ଭିତରେ କଳିଗୋଳ ଏତେ ଦୂରକୁ ଯାଇଥିଲା ଯେ ଏକ ଗାଁର ଲୋକ ଦେବାତ ଅନ୍ୟ ଗାଁ'ର କୌଣସି ଲୋକକୁ ନିଜ ଗାଁ ପାଖରେ ଏକୁଟିଆ ପାଇଲେ ନିସ୍ତୁକ ମାଡ଼ ଦେଉଥିଲା । ଏ ପର୍ଯ୍ୟନ୍ତ ଶହେ ସରିକି ଫୌଜଦାରୀ ମକଦ୍ଦମା ପଡ଼ିରହିଚି; କିନ୍ତୁ ଏ ସନ ଦୁଇ ଗାଁର ଲୋକେ ଏକତ୍ର ମିଳି ନିଷ୍ପତ୍ତି କରିଛନ୍ତି, ଶ୍ରୀ ଶ୍ରୀ ରାଧାବଲ୍ଲଭ ଜୀଉ ଗୋବିନ୍ଦପୁର ମେଳଣକୁ ଯିବେ ଏବଂ ଅହମଦପୁର ଗାଁ ଭିତରଦେଇ ଯିବେ । ବୁଢ଼ାବୁଢ଼ୀମାନେ ମଧ କହିଲେ, ଠାକୁରେ ଆଗରୁ ଯେପରି ଗୋବିନ୍ଦପୁର ମେଳଣକୁ ଯାଉଥିଲେ ସେଇପରି ଯିବେ, ନିଜ ନିଜ ଭିତରେ ଭେଦଭାବ ଭୁଲିଯାଇ ଠାକୁରଙ୍କ ଗୋଟିଏ ସେବା ପୁଣି ଫେରାଇ ଆଣିବା ଉଚିତ ।

କୃଷ୍ଣପୁରର ହିନ୍ଦୁମାନଙ୍କର ଏ ବର୍ଷ ଏପରି ଭକ୍ତିଭାବ ଓ ଅଭେଦଭାବ ଫେରିଆସିବାକୁ ତେଣେ ଶ୍ରୀ ଶ୍ରୀ ରାଧାବଲ୍ଲଭ ଜୀଉ ଶ୍ୟାମଘନ ଓ ହସନ୍ ଭିତରେ ଏକ କୂଟ ଲଗାଇଦେଲେ ପରା ! ଦୁହେଁ ଦୁହିଁଙ୍କ ପରିଚୟ ପାଇବା ପୂର୍ବରୁ ପ୍ରେମରେ ପଡ଼ିଲେ । ଏ ପ୍ରେମ ଯେ ଖାଲି କୃଷ୍ଣପୁର ଓ ଅହମଦପୁର ଭିତରେ ଜଳୁଥିବା ନିଆଁକୁ ଆହୁରି ତେଜି ନ ଦେବ, ସାରା ଭାରତରେ ନିଆଁ ଜାଳି ନ ଦେବ, କିଏ କହିପାରିବ ? ଦୁଇ ଗାଁ ଭିତରେ ଏପରି ଛକାଛକି ହୋଇ ଅଛନ୍ତି ଯେ ଏ ଗାଁରେ ଖୁଡ୍ କିନା ହେଲେ, ସେ ଗାଁରେ ତୁରନ୍ତ ତା'ର ଖବର ପହଞ୍ଚି ଯାଉଛି; ଏଥିରେ ଏ କଥା କଅଣ ଅଛପା ରହିଯିବ !

ହସନ୍ ପୁଣି ଥରେ କହିଲା-ହାୟ ଆଲ୍ଲା !

ଶ୍ୟାମଘନ ମଧ ପୁଣି ଥରେ କହିଲେ- ରାଧାବଲ୍ଲଭ, ଏ କଅଣ କଲ !

ହସନ୍ ଥରି ଥରି ଦୌଡ଼ିବାକୁ ଲାଗିଲା ଘରଆଡ଼କୁ; କିନ୍ତୁ ତା'ର ମନେହେଲା ସେ ଯେପରି ଘରଆଡ଼କୁ ନ ଯାଇ ଶ୍ୟାମଘନ ଆଡ଼େ ଯାଉଛି । ଅସହାୟଭାବରେ ଚାରିଆଡ଼କୁ ଚାହିଁ ସେ ପୁଣି

ଦୌଡ଼ିବାକୁ ଲାଗିଲା । ଶ୍ୟାମଘନ ପାଣିଭିତରେ ସ୍ଥାଣୁ ଭଳି ଛିଡ଼ାହୋଇ ଚାହିଁରହିଲେ ହସ୍‌ନୁଆଡ଼େ । ଥରେ ମାତ୍ର ସେ ପାଟିକରି ଡାକିଲେ 'ହସ୍‌ନୁ' ! ଆଖିରୁ ତାଙ୍କର ଅଶ୍ରୁ ଝରି କୁଶଭଦ୍ରାର ସ୍ରୋତରେ ଟପ୍ ଟପ୍ ପଡ଼ିବାକୁ ଲାଗିଲା । କୁଶଭଦ୍ରା ଯେପରି ଖିଲିଖିଲି ହସି ସେ ଅଶ୍ରୁକୁ ବୋହିନେଇଗଲା ମହାସମୁଦ୍ରକୁ ।

ହସ୍‌ନୁ ଚାଲିଯିବା ପରେ ଶ୍ୟାମଘନ ଟିକିଏ ପ୍ରକୃତିସ୍ଥ ହୋଇ ଭାବିବସିଲେ ଆଗପଛ କଥା । ସେ ନିଜକୁ ନିଜେ କହିଲେ, ଏ ସବୁ ତୁଚ୍ଛା ରୋମାଣ୍ଟିସିଜମ୍ । କୁଶଭଦ୍ରାକୁ ଜୀବନ୍ତ ଭାବି ତା ସହିତ କଥା କହିବା, ରାଧାବଲ୍ଲଭ ପଥରମୂର୍ତ୍ତିକୁ ଭଗବାନ୍ ଭାବି ତାଙ୍କୁ ହିଁ ଏ ସବୁପାଇଁ ଦାୟୀ କରି ଆନନ୍ଦ ବା ବେଦନା ପାଇବା-ଏ ସବୁ ମିଥ୍ୟା, ତୁଚ୍ଛା ରୋମାଣ୍ଟିସିଜମ୍ ନୁହେଁ ତ କଅଣ ? ଆଜିକାଲି ବିଜ୍ଞାନଯୁଗରେ ଏ ସବୁ ହାସ୍ୟାସ୍ପଦ; କାରଣ ତା' ଉପରେ ତ କାହାରି କ୍ରିୟାକଳାପ ନିର୍ଭର କରେନାହିଁ ବା କରିବା ଉଚିତ୍ ନୁହଁ । ମୋର ବୈଜ୍ଞାନିକ ଭଳି ଭାବିବା ଉଚିତ, ଯାହାକୁ ମୁଁ ପ୍ରେମକରୁଛି ତା କେବଳ ଲାଳସା, ମାଂସର ଲାଳସା । ହସ୍‌ନୁର ଦେହ ତ ମୋତେ ଆକୃଷ୍ଟ କରିଛି ? ଏ ଲାଳସାର ସ୍ରୋତରେ ମୋର କଣ ଭାସିଯିବା ଉଚିତ ? ହସ୍‌ନୁ ମୁସଲମାନ, ମୁଁ ହିନ୍ଦୁ । ମୁଁ ଯଦି ହସ୍‌ନୁକୁ ବାହା ହୁଏ, ତେବେ ସାମାଜିକ ବିଶୃଙ୍ଖଳା କଥା ଛାଡ଼ିଦେଲେ ବି ମୋର ବିବାହିତ ଜୀବନ କଅଣ ବିଷମୟ ହୋଇଯିବ ନାହିଁ ? ତା'ର ରୀତିନୀତି, ଖାଦ୍ୟ, ଚାଲିଚଳଣ ସବୁ କେବଳ ଭିନ୍ନ ନୁହେଁ, ମୋର ଠିକ୍ ଓଲଟା । ସେଥିରେ ପୁଣି ହିନ୍ଦୁ ମୁସଲମାନ କଳିଗୋଳବେଳେ ଆମ ଭିତରେ କଅଣ ପ୍ରେମ ରହିପାରିବ ? ନା, ଆଗେ ମୁଁ ନିଜକୁ ନିଜେ ବିଡ଼ିବି; ଏ ଉନ୍ମାଦନା ଲାଳସାରୁ ଜାତ ନା ପ୍ରେମରୁ । ତେବେ ଯାଇ ଯେଉଁ କଥା । ଜ୍ଞାନୀଲୋକମାନଙ୍କର ମନକୁ ମଧ ଇନ୍ଦ୍ରିୟ ଗୋଳମାଳ କରିଦିଏ । ବିପକ୍ଷରେ ତାଙ୍କର ମନ ଅନେକ ଯୁକ୍ତି ବାଢ଼ିଲା ସତ; କିନ୍ତୁ ତାଙ୍କ ମନ ତାଙ୍କୁ ଗୋଟିଏ ପ୍ରଶ୍ନ ପଚାରି ସବୁ ଯୁକ୍ତିକୁ ନୀରବ କରିଦେଲା-ତୁମେ ଯେ ଏହା ବିରୁଦ୍ଧରେ ଏତେ ଗଭୀର ଚିନ୍ତା କରୁଚ ତାହା ହିଁ କଅଣ ସୂଚାଇ ଦେଇ ନାହିଁ କି ଏହା କେବଳ ଯୌନ ଆବେଗ ନୁହଁ, ତା ସହିତ ଆଦିମ ଓ ମୌଳିକ ବେଦନା ଓ ଆନନ୍ଦର ଦୁଆର ମଧ ଖୋଲିଯାଇଛି ।

ସାରା ବିଶ୍ୱରେ କୁଆଡ଼େ ଏଇ ବେଦନା-ଆନନ୍ଦ ନିଅରଭାବରେ ବିଛାଡ଼ି ରହିଚି । ସେଇ ଅସୀମ ବେଦନା ଯେତେବେଳେ ନାନାଭାବରେ ସସୀମ ଭିତରେ ପ୍ରକାଶ ପାଏ, ସେତେବେଳେ କୁଆଡ଼େ ନାନାପ୍ରକାର ଘଟନା ଘଟେ । ଏହା ବୈଜ୍ଞାନିକର ଶେଷ ସିଦ୍ଧାନ୍ତ ବା ତୁଚ୍ଛା ମିଥ୍ୟା ରୋମାଣ୍ଟିସିଜମ୍ କିଏ କହିବ ! ଏ କି ଆକୁଳତା ଭୁବନେ ! ଏ କି ଚଞ୍ଚଳତା ପବନେ ପବନେ ! ଟଲ୍‌ଷ୍ଟୟ କହିବା ଭଳି ଫଳଟି ଗଛରୁ ଝଡ଼ିପଡ଼ିବାର କାରଣ ମାଧ୍ୟାକର୍ଷଣ ଶକ୍ତି ହୋଇପାରେ, ବା ଗଛ ତଳେ ଛିଡ଼ାହୋଇଥିବା ପିଲାଟି ଲୋଲୁପ ଦୃଷ୍ଟିରେ ଫଳଟିକୁ ଚାହିଁ ଫଳଟିକୁ ତଳେ ପକାଇଦେବା ପାଇଁ ଭଗବାନଙ୍କୁ ପ୍ରାର୍ଥନା କରୁଥିବାରୁ ହୋଇପାରେ, ବା ଉଭୟ କାରଣରୁ ହୋଇପାରେ । କିଏ ଜାଣେ ଘଟନାମାନ କେଉଁ କାରଣରୁ ଘଟେ ? ସେ ଯାହାହେଉ, ସେଇ ମୁହୂର୍ତ୍ତରେ ଯେଉଁ ସାମାନ୍ୟ ଘଟନାଟି ଘଟିଗଲା, ତାହା ଚାହୁଁ ଚାହୁଁ ଏକ ବିରାଟ ପ୍ରବାହରେ ପରିଣତ ହେଲା । ଆଉ ଶ୍ୟାମଘନ ଓ ହସ୍‌ନୁ ଭାସିଗଲେ ସେ ସ୍ରୋତରେ ଏବଂ ତାଙ୍କ ସହିତ କୃଷ୍ଣପୁର ଓ ଅହମଦପୁରର ହିନ୍ଦୁ-ମୁସଲ୍‌ମାନମାନେ ନାନା ପ୍ରକାରରେ ।

ଟଳିଟଳି ଘର ଭିତରକୁ ପଶି ବାରଣ୍ଡାରେ କଚାଡ଼ି ପଡ଼ିଲା ହସ୍‌ନୁ । ରହିମ୍‌ଙ୍କ ସ୍ତ୍ରୀ ଜେବୁନ୍ନିସା ଅଗଣା ଲିପୁଥିଲେ । ନାତୁଣୀକୁ ଏପରି ପଡ଼ିଯିବାର ଦେଖି ସେ ପାଟିକରି ଡାକ ଛାଡ଼ିଲେ- ''ଆରେ ଓ ମିଆଁ, ଆରେ ଜଲଦି ଆଓ ମ । ଦେଖୋ ଦେଖୋ ହସ୍‌ନୁ କ୍ୟା ହୋ ଗିୟା । ହାୟ ମେରି ଆଲ୍ଲା । ମୈ ମନା କରତି ଥି ନଈକୁ ଯାନେକୁ । ଆରେ, କୁଶପୁରକା କୋଇ ହିନ୍ଦୁ ତୁମକୁ କୁଛ କହିସ୍ କ୍ୟା, କୁଛ ବେଇଜତି କିୟା କ୍ୟା ? ଆରେ ଓ ମିଆଁ...''

ରହିମ୍ ବାଡ଼ ବୁଜା ପକାଇଦେଇ ଦୌଡ଼ିଆସିଲେ । ହସ୍‌ନୁକୁ ଏପରି ଅବସ୍ଥାରେ ଦେଖି ସେ ଆବାକାବା ହୋଇ ଛିଡ଼ା ହୋଇରହିଲେ । ଜେବୁନ୍ନିସା ତାଙ୍କୁ ଧକ୍କାଏ ମାରି ପାଟି କରି କହିଲେ, ''ଆରେ ଉଲ୍ଲୁ କା ମାଫିକ୍ କ୍ୟା ଖଡ଼ା ହୁୟା ହୈ । ଆରେ କୁଛଭି ତୋ କରୋ । ହାୟ ଖୁଦା, ଆରେ ଶ୍ୟାମଘନ ଆୟା ହୈ ଡାକତର୍ ହୋ କେ, ଉସ୍‌କୁ ବୁଲାଓ ଜଲ୍‌ଦି..''

ସ୍ତ୍ରୀଙ୍କ କଥାରେ ରହିମ୍‌ଙ୍କ ହୋସ ଫେରିଆସିଲା । ସେ ହଠାତ୍ ଚଞ୍ଚଳ ହୋଇ ମୁଣ୍ଡରେ ଗାମୁଛାଟା ବାନ୍ଧି ଦେଇ କହିଲେ, ''ଅବ୍‌ଭି ଯାତା ହୁଁ, ତୁମ୍ ଉସ୍‌କି ଶିର ମେ ପାନି ଡାଲୋ ।'' ରହିମ୍ ଧଇଁସଇଁ ହୋଇ ଦୌଡ଼ିଲେ କୁଶୁପୁର ଶ୍ୟାମଘନକୁ ଓ ସଙ୍ଗାତ ରାମ ପଧାନଙ୍କୁ ଡାକି ଆଣିବାକୁ; କିନ୍ତୁ ତାଙ୍କୁ କୁଶୁପୁର ପର୍ଯ୍ୟନ୍ତ ଯିବାକୁ ପଡ଼ିଲା ନାହିଁ । ନଈ ମଝିରେ ଶ୍ୟାମଘନ ସେମିତି ସ୍ଥାଣୁ ଭଳି ଛିଡ଼ାହୋଇଥାନ୍ତି । ରହିମ୍ ତାଙ୍କୁ ଦେଖି ତରତର ହୋଇ ସବୁ କଥା କହି ହାତ ଧରି ଟାଣିବାକୁ ଲାଗିଲେ । ଶ୍ୟାମଘନ ସବୁ ବୁଝିପାରିଲେ ନାହିଁ, ଖାଲି ଏତିକି ବୁଝିଲେ ଯେ ହସ୍‌ନୁ ବେହୋସ୍ ହୋଇ ତଳେ ପଡ଼ିଯାଇଚି । କିଛି କ୍ଷଣ ସେ ବଲ୍‌ବଲ୍ କରି ରହିମ ଅଜା ଆଡ଼େ ଚାହିଁରହିଲେ । ମନେ ମନେ କେବଳ କହୁଥାନ୍ତି, ''ରାଧାବଲ୍ଲଭ, ଏ କ'ଣ କଲ ! ମୁଁ ଯେ କିଛି ବୁଝିପାରୁନାହିଁ, ଘଟନାମାନଙ୍କର ଏ ଧଇଁସଇଁ ଗତିରେ ମୁଁ ଯେ କିଛି ବିଚାର କରିବାର ବେଳ ପାଉନାହିଁ ।''

ରହିମ୍ ଅଧିରଭାବରେ କହିଲେ, ''ଆରେ ନାତି ! ଐସା ବଲ୍‌ବଲ୍ କର୍‌କେ ତକାତା ହୈ କ୍ୟା ମ ? ଆରେ ଜଲ୍‌ଦି ଆଓ...''

ଶ୍ୟାମଘନ ବିହ୍ୱଳଭାବରେ କହିଲେ, ''ଅଜା...ମୁଁ...ହସ୍‌ନୁ...ନା...ନା...''

ରହିମ୍ ଚିତ୍‌କାର କରି କହିଲେ, ''ଆରେ ଏ କ'ଣ ସରମ ବେଳ, ହସ୍‌ନୁ ତ ତୋର ବହନ୍ ଅଛି...''

ଶ୍ୟାମଘନ ଦୀର୍ଘ ନିଃଶ୍ୱାସ ପକାଇ କହିଲେ, ''ଆଚ୍ଛା ଅଜା, ତୁମେ ଯାଅ, ମୋର ଔଷଧ ବାକ୍‌ସ ଓ ଷ୍ଟେଥୋଟା ନେଇ ଆସିବ । ମୁଁ ଏମିତି ଓଦା ଲୁଗାରେ ଯାଉଛି...''

ରହିମ୍ ଦୌଡ଼ିଲେ ପୁଣି କୁଶୁପୁର । ଶ୍ୟାମଘନ ମଧ୍ୟ ଦୌଡ଼ି ଦୌଡ଼ି ରହିମ୍ ଘରକୁ ଯାଇ ବାହାରପଟୁ ଡାକିଲେ ।

ଜେବୁନ୍ନିସା ଘରଭିତରୁ କାନ୍ଦି କାନ୍ଦି ଡାକିଲେ, ''ଆରେ ଶ୍ୟାମ ଆଇସ୍... ଆଓ ବେଟା, ଯୁଗ୍ ଯୁଗ୍ ଜିୟୋ ବେଟା ! ଅନ୍ଦର ଆଓ...''

ଶ୍ୟାମଘନ ଘର ଭିତରକୁ ଯାଇ ଦେଖିଲେ ଏକ ଅପୂର୍ବ ଦୃଶ୍ୟ । ହସ୍‌ନୁ ଖଣ୍ଡେ ସୁନ୍ଦର ଧଳା ଶାଢ଼ୀ ପିନ୍ଧି ମୁଣ୍ଡରେ କାଳିଆ କନାର ଓଢ଼ଣି ବାନ୍ଧି ପଶ୍ଚିମକୁ ମୁହଁ କରି ଦୁଇ ହାତ ପାପୁଲି ଉପରକୁ ଟେକି ଫତିହା ପଢୁଚି-

'ଆଉ ଜୋ ବିଲ୍ଲହେ ମିନ୍‌ଶ୍ ଶୈତାନୀର ରଜୀମ୍

ବିସ୍‌ମିଲ୍ଲାହିର ରହମାନିର ରହୀମ୍... ।'

ଆଖିରୁ ତା'ର ଦରଦର ଲୁହ ଝରିପଡୁଚି । ହସ୍‌ନୁ ସିନା କହୁଥାଏ, ମୋତେ ଶୈତାନଠାରୁ ବଞ୍ଚାଅ ଆଲ୍ଲା, ତୋରି ନା'ରେ ମୁଁ ସବୁ କାର୍ଯ୍ୟ ଆରମ୍ଭ କରୁଚି; କିନ୍ତୁ ପତିହା ସାଙ୍ଗରେ ଗୋଟିଏ ଗୀତ ଗୋଳେଇ ମିଶି ଯାଉଥାଏ, ଅଜାଙ୍କ ପ୍ରିୟ ଗୀତ, 'ମେରେ ଅଙ୍ଗନା ମେ ଆୟେ ଘନଶ୍ୟାମ, ମୈ ହୋଗୟି ବାବରି'... ମୋ ଅଗଣାକୁ ଘନଶ୍ୟାମ ଆଚମ୍ବିତେ ଆସିଲେ, ମୁଁ ପାଗଳ ହୋଇଯିବି କି ! ଶ୍ୟାମଘନଙ୍କ ଭାରି ଇଚ୍ଛା ହେଲା- ସେ ବି ସେମିତି ବସି ନମାଜ ପଢ଼ନ୍ତେ !

ରହିମ୍ ଓ ରାମ ପଧାନ ସେତେବେଳକୁ ପହଞ୍ଚିସାରିଥିଲେ । ରାମ ଅଜାଙ୍କ ପାଟି ଶୁଣି ହସ୍‌ନୁ ଚମକି ପଡ଼ି ଚାହିଁ ଦେଖିଲା ତା'ର ଅତି ନିକଟରେ ଛିଡ଼ା ହୋଇଛନ୍ତି ତା'ର ପ୍ରିୟ ! ସମସ୍ତ ଦେହ ତା'ର ଥରିଉଠିଲା । ସେ ଆଉ ସମ୍ଭାଳି ନ ପାରି ଗଡ଼ିପଡ଼ିଲା ସେଇଠି । ଶ୍ୟାମଘନ ଏଥର ଆଉ ଲୁହ ସମ୍ଭାଳି ପାରିଲେ ନାହିଁ ।

ଜେବୁନିସା ପୁଣି କାନ୍ଦିଉଠିଲେ । ରାମ ପଧାନ ମ୍ଳାନଭାବରେ ହସି କହିଲେ, ''ଭାଉଜ, ହସ୍‌ନୁର କିଛି ହୋଇନାହିଁ...''

ଜେବୁନିସା କହିଲେ, ''ନେହିଁ ଜୀ, ସେ କହୁଥିଲା ଗାଧୋଇଲାବେଳେ ସେ ତା'ର ଅବ୍‌ବାକୁ ଦେଖିଲା, ଅବଦୁଲ୍ କୁଆଡ଼େ ତାକୁ ଡାକିଲା..''

ରହିମ୍ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ । ରାମ ପଧାନ ଦୀର୍ଘ ନିଃଶ୍ୱାସ ପକାଇ କହିଲେ, ''ସେ ସବୁ କିଛି ନୁହଁ, ଆମେ ବାହାରକୁ ଯାଉଛୁ, ତୁମେ ତାକୁ ଗରମ ଦୁଧ ପିଇବାକୁ ଦିଅ ।''

ଶ୍ୟାମଘନକୁ ଘରକୁ ଯିବାକୁ କହି ରାମ ପଧାନ ରହିମ୍‌ର ହାତ ଧରି ବାହାରକୁ ଆଣି କହିଲେ, ''ବୁଝିଲ କିଛି ସଙ୍ଗାତ ? ବଡ଼ ଆଶ୍ଚର୍ଯ୍ୟ...''

ରହିମ୍ ଆକୁଳଭାବରେ ପଚାରିଲେ, ''ସଙ୍ଗାତ କ'ଣ ହୋଇଚି କହ, ଲୁଚାଅ ନାହିଁ । ହସ୍‌ନୁ ବଞ୍ଚିବ ତ ?

ରାମ ପଧାନ ସେତେବେଳକୁ ନିଜେ ଅଧୀର ହୋଇପଡ଼ିଲେଣି ନାନା କଥା ଭାବି । ରହିମ୍‌କୁ ଗୋଟିଏ ନିଭୃତ ସ୍ଥାନକୁ ନେଇ ଯାଇ କହିଲେ, ''ବୁଝିଲ ସଙ୍ଗାତ, ହସ୍‌ନୁ ଓ ଶ୍ୟାମ ପ୍ରେମରେ ପଡ଼ିଛନ୍ତି । ଦୁହିଁଙ୍କଠି ମୁଁ ତା'ର ସବୁ ଲକ୍ଷଣ ଦେଖିବାକୁ ପାଇଲି- ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, ବେପଥୁ, ବୈବର୍ଣ୍ଣ୍ୟ, ଅଶ୍ରୁ, ମୂର୍ଚ୍ଛା ।''

ରହିମ୍ ଆଖି ବଡ଼ ବଡ଼ କରି ଗାଲରେ ହାତଦେଇ କହିଲେ, ''ତୋବା ତୋବା ! ଶାଲେ ବଡ଼ି ନଟଖଟ୍ କି ବାତ କିୟା ! ଅବ୍‌ଭି ଉପାୟ କଅଣ ସଙ୍ଗାତ ! ଏଙ୍କ ବାପାମାନେ ହଣାହଣି ହୋଇ ମରିଚନ୍ତି ! ଆଉ ଯେ ଦି ଜଣ..., ସିରାତୁଲ୍ ଲଜୀନ୍ ଅନ୍ ଅମଦ୍ ଅଲୈହିମ... ଖୁଦା, ତୁହି ତ ଶେଷ ବିଚାର କରିବୁ, ତୁହି ବାଟ ଦେଖା ।''

ରାମ ପଧାନ ରହିମ୍‌ଙ୍କ କାନ୍ଧରେ ହାତ ରଖି କହିଲେ, ''ହଁ ସଙ୍ଗାତ, ତାଙ୍କ ଛଡ଼ା ଆଉ କିଏ ଅଛି । ତାଙ୍କର କି ଉଦ୍ଦେଶ୍ୟ ଅଛି ଏଥିରେ କିଏ ଜାଣେ... ଭ୍ରାମୟନ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା... ସବୁ ତାଙ୍କରି ଲୀଳା ।''

ଦୁହେଁ ନୀରବରେ ତଳକୁ ମୁଣ୍ଡପୋତି ଧୀରେ ଧୀରେ ଚାଲିଗଲେ । ଜେବୁନିସା ପାଣି ଆଣି ହସ୍‌ନୁର ମୁହଁରେ ଛାଟିବାକୁ ଲାଗିଲେ । ହସ୍‌ନୁ ଧୀରେ ଧୀରେ ଆଖି ଖୋଲି କାହାକୁ ଯେପରି ଅସହାୟଭାବରେ ଖୋଜିଲା । ତା'ପରେ ହଠାତ୍ ତା'ର ଗୋସିମା'କୁ ଜାବୁଡ଼ି ଧରି କଇଁ କଇଁ ହୋଇ କାନ୍ଦି କହିଲା, ''ଅମ୍ମିଜାନ୍, ମୈ ମର ଗୟି ।'' ତା'ପରେ ହଠାତ୍ ଗମ୍ଭୀର ହୋଇ କହିଲା, ''ନେହିଁ ମା' ମେରା କୁଛ ହୁଆ ନେହିଁ । ଆଲ୍ଲା ସବ୍ ଠିକ୍ କର୍ ଦେଙ୍ଗେ ।'' ପ୍ରକୃତିସ୍ଥ ହୋଇ ପୁଣି ସେ ପତିହା ପଢ଼ିବାକୁ ଲାଗିଲା-

ଆଲ୍ ହମ୍‌ଦୁ ଲିଲ୍ଲାହେ ରବ୍‌ବିଲ୍ ଆଲମୀନ୍...

ଆର୍ ରହଆନିର୍ ରହିମ୍‌ମାଲ୍‌କେ ୟୋମିଦ ଦୀନ୍...

ହେ ଆଲ୍ଲା, ତୁ ଦୟାର ସାଗର, ମୁଁ ତୋରି ଆରାଧନା କରୁଚି, ତୋରି ସାହାଯ୍ୟ ମାଗୁଚି...

ଶ୍ୟାମଘନ ଗାଁକୁ ଫେରି ଘରକୁ ନ ଯାଇ ସେମିତି ଓଦା ଲୁଗାରେ ସିଧା ରାଧାବଲ୍ଲଭଙ୍କ ମନ୍ଦିରକୁ ଗଲେ । ସେତେବେଳେ ରାଧାବଲ୍ଲଭ ହୋରି ଖେଳିବାକୁ ବିଜେ କଲେଣି । ହୋଲିଆମାନେ ଗାଉଥାନ୍ତି-

ନବ ବୃନ୍ଦାବନେ ନବ ନାଗର ତ୍ରିଭଙ୍ଗ,
ବୋଳନ୍ତି ସଭିଙ୍କ ଅଙ୍ଗେ ପୀରତିର ରଙ୍ଗ ।

ଶ୍ୟାମଘନ ନାସ୍ତିକ; କିନ୍ତୁ ଆଜି ସେ ସିଧାସଳଖ ରାଧାବଲ୍ଲଭଙ୍କ ମୁହଁକୁ ଚାହିଁ ପଚାରିଲେ... ଏ ସବୁ କଅଣ ହଉଚି ଶୁଣେ ? କି କୈଫିୟତ୍ ଅଛି ତୁମର ? ମୁଁ କଅଣ ତେବେ ମୁସଲମାନ ହେବି ? ତାଙ୍କର ମନେହେଲା- ରାଧାବଲ୍ଲଭ ଟିକିଏ ହସିଦେଲେ; ଆଉ କି ସୁନ୍ଦର ସେ ହସ ସବୁ ଧର୍ମ, ରୀତି, ନୀତି, ମାନ, ଅଭିମାନ, ଅହଂକାର ଯେପରି ତୁଚ୍ଛ ମନେହେଲା ସେ ହସ ଟିକକ ନିକଟରେ !

• • •

ସେଇ ଦିନ ଅଧରାତିରେ କୁଶଭଦ୍ରାର ଏ ପାଖ ଅତଡ଼ା ଉପରେ ରାମ ପ୍ରଧାନଙ୍କ ଘର ପାଖରେ ଗୋଟିଏ ଦୀପ ଜଳିଲା । କିଛି କ୍ଷଣ ପରେ ସେ ଅତଡ଼ା ଉପରେ ରହିମ୍‌ର ଘର ପାଖରେ ଆଉ ଗୋଟିଏ ଦୀପ ଜଳିଲା । ଶ୍ୟାମଘନଙ୍କ ସମସ୍ତ ଦେହ ରୋମାଞ୍ଚ ହୋଇଉଠିଲା । ସେ ବିଶ୍ୱାସ କରିପାରିଲେ ନାହିଁ ଏ ପ୍ରହେଳିକା ନା ସତ୍ୟ । ସେ ବାତୁଳଭାବରେ ଦୀପ ଜାଳିଥିଲେ ଏଇ କ୍ଷୀଣ ଆଶାରେ ଯେ ହସନୁ ଯଦି ତା'ର ଘର ବାହାରକୁ ଆସିଥାଏ ବା ଝରକା ପାଖରେ ନଇ ଏ ପଟକୁ ଚାହିଁ ଶୋଇଥାଏ, ତେବେ ଦୀପକୁ ଦେଖି ହୁଏତ ଭାବିବ ସେ ସଙ୍କେତ ଦେଉଛନ୍ତି; କିନ୍ତୁ ଏ ଯେ ଅଭାବନୀୟ ଘଟିଗଲା । ଶ୍ୟାମଘନ ଆରତି କରିବା ଭଳି ଦୀପଟିକୁ ହଲାଇଲେ । ସେ ପାଖରେ ଦୀପଟି ମଧ୍ୟ ସେମିତି ହଲିଲା ।

ଶ୍ୟାମଘନଙ୍କ ଶ୍ୱାସରୁଦ୍ଧ ହୋଇଗଲା । ସେ ଦୀପ ପୋପାଡ଼ିଦେଇ ଦୌଡ଼ିଲେ ଆର ପଟକୁ । ଦୌଡୁ ଦୌଡୁ ସେ ଭାବୁଥାନ୍ତି, କି ଆଶ୍ଚର୍ଯ୍ୟ ! ପୃଥିବୀ ତା'ର ସମୁଦ୍ର, ଘରବାଡ଼ି, ନଈନାଳ, ଗଛବୃଛ ନେଇ ମହାଶୂନ୍ୟରେ ବୁଲି ଚାଲିଚି । ସେ ଏକ ଘଟଣା ଏବଂ ସେ ଆଉ ଏକ ଘଟନାର ସାମାନ୍ୟ ଅଂଶ ମାତ୍ର । ପୁଣି ସେ ଘଟନା ଭିତରେ ଘଟିଯାଉଚି ସମସ୍ତ ମାନବସମାଜ କ୍ଷେତ୍ରରେ କେତେ ଘଟନା ।

ତା' ଭିତରେ ଘଟୁଚି ବିଭିନ୍ନ ସାମାଜିକ ଘଟନା, ଆଉ ତା' ଭିତରେ ପୁଣି ଅସଂଖ୍ୟ ବ୍ୟକ୍ତିଗତ ଘଟନା । ସମସ୍ତ ବିଶ୍ୱରେ ଯେଉଁ ଘଟନାମାନ ଘଟିଚି ବା ଘଟୁଚି ତା ସହିତ ମୋର ଏଇ ଘଟନାର କୌଣସି ସମ୍ବନ୍ଧ ନାହିଁ ? ହୁଏ ତ ଏଇ ମୂହୂର୍ତ୍ତରେ କେଉଁଠି ଯୁଦ୍ଧ ଲାଗିଚି କିମ୍ବା କେଉଁଠି ହିନ୍ଦୁ ମୁସଲମାନ ଦଙ୍ଗା ଲାଗିଚି, ତା' ସହିତ କଅଣ ଏହାର କୌଣସି ସମ୍ପର୍କ ନାହିଁ ?

କୁଶଭଦ୍ରାର କ୍ଷୀଣ ସ୍ରୋତ ପାର ହୋଇ କିନ୍ତୁ ଶ୍ୟାମଘନ ଫେରିଯିବାକୁ ଭାବିଲେ । ତାଙ୍କର ମନେ ହେଲା ସେ ଅତି ଦୁର୍ବଳ, ଘଟନାସ୍ରୋତରେ ଭାସିଯାଉଛନ୍ତି ଅସହାୟଭାବରେ ନିଜର ସମାଜ, ଧର୍ମ ପ୍ରତି ନ ଚାହିଁ ।

...ଯାଓ ବେଟା, ଯାଓ ଇସ୍‌କୁ ଦିଲ୍‌କା କମ୍‌ଜୋରି ମତ୍ ସମ୍‌ଝୋ; ଉଧର ଶ୍ରୀରାଧା ତଡ଼ପ୍ ରହି ହେ...

ଶ୍ୟାମଘନ ଚମକି ପଡ଼ିଲେ । ଅତି ନିକଟରେ ଗୋଟିଏ ବୁଲା ଫକୀର ଶୋଇଥିବା ସେ ଦେଖି ପାରି ନ ଥିଲେ । ଫକୀରଟି ଉଠି ବସି ଗାଇବାକୁ ଲାଗିଲା...

'କ୍ୟା କରୁ ସଜ୍‌ନି ନ ଆୟେ ଶ୍ୟାମ,
ତଡ଼ପିତ ବିତେ ମୋରି ଉନ୍‌ବିନ୍ ରାତିୟା...'

ଯାଓ ଯାଓ...ମୈ ସବ୍ ଦେଖା, ସବ୍ ସମଝ ଲିୟା...ବେଟା, ସମାଜ୍ ଧରମ୍ ସବ୍ ଝୁଟା...

ଶ୍ୟାମଘନ ସ୍ତମ୍ଭିତ ହୋଇ ରହିଲେ । କୁଆଡ଼ୁ କୁଆଡ଼ୁ ଘଟନାମାନ କ୍ଷିପ୍ରଗତିରେ ଆସି ମିଳିଯାଉଛନ୍ତି କୁହୁକପରି । ସେ କିଛି କୂଳକିନାରା ପାଇଲେ ନାହିଁ । କିଛି ନ କହି ସେ ପୁଣି ଦୌଡ଼ିଲେ । କୁଶଭଦ୍ରାର ସେ ପଟରେ ପହଞ୍ଚିବା ବେଳକୁ ହସନ୍ ଅତଡ଼ା ତଳକୁ ଓହ୍ଲାଉଥାଏ । ଶ୍ୟାମଘନ ଆଶ୍ଚର୍ଯ୍ୟ ହୋଇ ହସନ୍‌ର ହାତ ଧରି ପକାଇ କହିଲେ, ''ହସନ୍, ମୋତେ ପ୍ରଥମେ କହ, ତୁମେ କେମିତି ଜାଣିଲ ମୁଁ ଦୀପ ଜାଳିବି ବୋଲି...''

ହସନ୍ ମୁଣ୍ଡ ପୋତି କହିଲା, ''ମୋର କାହିଁକି କେଜାଣି ମନେହେଲା ତୁମେ ନିଶ୍ଚୟ ଆଜି ରାତିରେ ଆସିବ । କିଏ ଯେମିତି କହିଦେଲା ଏ କଥା । ମୁଁ ଆମ ଝରକାବାଟେ ଅନାଇଥିଲି ତୁମ ଘର ଆଡ଼େ ଏଥିପାଇଁ....ଦେଖିଲି...ବୁଝିପାରିଲି...''

-ଆଶ୍ଚର୍ଯ୍ୟ ! ମୁଁ କିଛି ବୁଝିପାରୁନାହିଁ ହସନ୍ ! କ'ଣ ସବୁ କାହିଁକି ଘଟୁଚି...

-ରାମ ଅଜା ଦିନେ ମୋ ଅଜାକୁ ଆମ ଘରେ କହୁଥିଲେ, ସାଧାରଣ ମଣିଷ ତା'ର ଇନ୍ଦ୍ରିୟ ଉପରେ ନିର୍ଭର କରି ବରଷ ପରେ ବରଷ, ଜୀବନ ପରେ ଜୀବନ ନାନା ଅବସ୍ଥାରେ ପଡ଼ି ଅନେକ ମାଡ଼ ଖାଇ ଯେଉଁ ଜ୍ଞାନ ପାଏ, ପ୍ରେମ ହେଲେ ମଣିଷ ମୂହୂର୍ତ୍ତକେ ସେ ଜ୍ଞାନ ପାଇଯାଏ, ତାକୁ ଆଉ ଏତେ ଘଟଣା-ଜାଲରେ ଛନ୍ଦି ହେବାର ଦରକାର ପଡ଼େନାହିଁ; ଶହ ଶହ ଘଟଣା ଗୋଟିଏ ସାମାନ୍ୟ ଘଟଣାରେ ଘଟିଯାଏ । ମୁଁ ସେ କଥା ଖାଲି ଶୁଣିଥିଲି ସିନା, ତୁମ ପ୍ରେମରେ ପଡ଼ି ସବୁ ବୁଝିପାରୁଛି ଏଇକ୍ଷଣି । ଆମେ ଦୁହେଁ ଯଦି ଦୁହିଁଙ୍କ ଦେହକୁ ଖାଲି ଚାହୁଁଥାନ୍ତେ, ତେବେ କେତେ ଚକ୍ରାନ୍ତ କରିବାକୁ ପଡ଼ିଥାନ୍ତା ମିଳିବା ପାଇଁ... କିନ୍ତୁ ଦେଖ, କେହି କାହା ସହିତ କଥା ନକହି ବି କେମିତି ଜାଣିପାରିଲୁଁ...

-କିନ୍ତୁ ଏ କଅଣ ହେଲା ହସ୍‌ନୁ ! ଏ ପ୍ରେମ ଯେ ଦୁହିଁଙ୍କୁ ଜାଳି ପୋଡ଼ି ଦେବ ! ଖାଲି ଆମକୁ ନୁହେଁ, ଏ ଦୁଇ ଗାଁ କୁ ବି ! ସାରା ଭାରତରେ ଯେ ଏ ନିଆଁ ଜାଳି ନ ଦେବ ବର୍ତ୍ତମାନ ଅବସ୍ଥାରେ କିଏ କହିବ...

-ତୁମେ ଯଦି ମୋର ଦେହକୁ ଭଲପାଉଥାଅ, ତେବେ ଏ କଥା ଏତିକିରେ ଥାଉ...

-ଦେହର ଲାଳସା ଯେ ମୋର ନାହିଁ, ସେ କଥା ତ ମୁଁ କହିପାରୁନାହିଁ ।

-ଥିଲେ ବା କ୍ଷତି କଅଣ ! ଗଙ୍ଗା ନଈରେ ତ କେତେ ମଇଳା ପାଣି ପଡ଼େ; ସେ ସବୁ ତ ପବିତ୍ର ହୋଇଯାଏ । ଦେହ ତ ଖାଲି ଏକମାତ୍ର ସତ ନୁହେଁ । ଆହୁରି ତା ତଳକୁ ତଳକୁ ଅନେକ ସତ ଅଛି । ତା' ନ ହେଲେ ପିଲାବେଳେ କାହିଁକି ତୁମେ ମୋତେ ବଞ୍ଚାଇଥାନ୍ତ.... କାହିଁକି ତୁମକୁ ଦେଖିବା ମାତ୍ରେ...

-କେଜାଣି । ଯେଉଁ କଥା ଜାଣିହେବ ନାହିଁ, ତାହା ବିଷୟରେ ଯାହା କହିଲେ ବି ସତ୍ୟ ହେବ, ଆଉ ପ୍ରମାଣ ଜୁଟିଯିବ...

-ଏ ସବୁ ବୁଦ୍ଧିର କଥା । ବୁଦ୍ଧିରେ କ'ଣ ସବୁ ବୁଝି ହୁଏ ? ଅନ୍ୟକୁ ବୁଝିବା ପାଇଁ ମନ ଭିତର ଯଦି ତହଳ ବିକଳ ନ ହେବ ତେବେ ଖାଲି ବୁଦ୍ଧିରେ ସବୁ ବୁଝି ହେବନାହିଁ ବୋଧହୁଏ ।

-କିନ୍ତୁ ହସନୁ, ଏହା ପରେ ଆମର ବାହା ହେବା ଉଚିତ୍ । ଆଉ ବାହାପରେ ଯଦି ପଦେ ପଦେ ଅମେଳ ହୁଏ ?

-କାହିଁକି ?

-ପାକିସ୍ତାନ ହେବା ପରେ ହିନ୍ଦୁ ମୁସଲମାନ ଭିତରେ ଅବିଶ୍ୱାସ ବଢ଼ିଯାଇଚି । ସାମାନ୍ୟ ସାମାନ୍ୟ କଥାରେ ହଣାହଣି ହେଉଚନ୍ତି । ଏ ଅବସ୍ଥାରେ ଆମେ କଅଣ ସଂପୂର୍ଣ୍ଣ ଭଲପାଇପାରିବା ? ତୁମ ମନ ତ ନିଶ୍ଚୟ ମୁସଲମାନ ଆଡ଼େ ଟାଣିବ, ଆଉ ମୋ ମନ ହିନ୍ଦୁ ଆଡ଼େ । ତା ଛଡ଼ା...

ହସ୍‌ନୁ ଅଧୀରଭାବରେ ବାଧା ଦେଇ କହିଲା, ''କାହିଁକି ? ଆମର ଦୁହିଁଙ୍କ ମନ କାହିଁକି ନ୍ୟାୟ ଆଡ଼େ ନ ଯିବ ? ମସଜିଦ୍ ସାମନାରେ ବାଜା ନ ବଜାଇବା କୋରାନ୍ ସରିଫ୍‌ରେ ନାହିଁ । କେଉଁଥିପାଇଁ ଆମ ଏ ଦେଶରେ ଏ କଥା ଅଛି, ସମସ୍ତେ ଜାଣନ୍ତି । ତେଣୁ ଆଇନ ଯଦି କହିଲା, ଆଉ ମନ ଯଦି କହିଲା, ରାସ୍ତାରେ ବାଜା ବଜାଇ ଯିବାରେ ସମସ୍ତଙ୍କର ଅଧିକାର ଅଛି, ତେବେ ମୁଁ ମୁସଲମାନ ବୋଲି ତାକୁ ନ ମାନିବି କାହିଁକି ? ଆଉ ହିନ୍ଦୁମାନେ ଯଦି ମୁସଲମାନମାନଙ୍କୁ ଅପମାନ ଦେବାପାଇଁ ମସ୍‌ଜିଦ୍ ସାମନାରେ ବେଶି କରି ବାଜା ବଜାନ୍ତି, ତେବେ ତୁମେ ହିନ୍ଦୁ ବୋଲି ତାଙ୍କୁ ମନା ନ କରିବ କାହିଁକି ?''

ଶ୍ୟାମଘନ ଅବାକ୍ ଭାବରେ ଚାହିଁରହିଲେ ହସ୍‌ନୁ ଆଡ଼େ । ହସ୍‌ନୁ କହିଲା, ''ତୁମେ ଭାବୁଚ ନିଶ୍ଚେ ମୁଁ ମୂର୍ଖ, ଏତେ କଥା ଜାଣିଲି କିପରି ।''

-ହଁ, ପୁଣି ତମେ ମୋ ମନକଥା କହି ଆହୁରି ଆଶ୍ଚର୍ଯ୍ୟ କରିଦେଲ ।

-ଏ ସବୁ ତ ମୁଁ ଅଜାମାନଙ୍କ ପାଖରୁ ଶୁଣିଚି । ସେମାନେ ଯେତେବେଳେ ଆମ ଘରେ ଶାସ୍ତ୍ର ଚର୍ଚ୍ଚା କରନ୍ତି, ମୁଁ ମନଦେଇ ସବୁ ଶୁଣେ । ସେଥିରୁ କିଛି ବୁଝିଥିଲି, ଅନେକ ବୁଝିପାରି ନ ଥିଲି । ଆଜି କିନ୍ତୁ ବୁଝିପାରୁଚି ସବୁ । ବୁଝିପାରୁଚି, ସବୁ ଧର୍ମ ଏକ, ମଣିଷ ମଣିଷ ମଧ୍ୟରେ ଭେଦ ଆମର

ଭୟରୁ ବାହାରିଚି; ତେବେ ବି ପ୍ରେମର ସବୁବେଳେ ଜୟ ହୋଇଚି । ଆଜି ତ ମୁଁ ଶ୍ରୀକୃଷ୍ଣଙ୍କୁ ଅନ୍ତର ଭିତରେ ବୁଝିପାରୁଚି; କି ପ୍ରେମିକ ସେ ! ତାଙ୍କୁ ତ ମୁଁ ଆଜିପର୍ଯ୍ୟନ୍ତ ବୁଝି ପାରି ନ ଥିଲି...

-ହଁ ହସନ୍ନୁ, ଆଜି ମୁଁ ବି ବୁଝିପାରୁଚି ଆଲ୍ଲା ବି ମୋର ! ସତେ ହସନ୍ନୁ, ଏ ପୃଥିବୀର ଇତିହାସ ଘୃଣା ଓ ଭୟରୁ ଜାତ ହତ୍ୟାର ଇତିହାସ ନୁହେଁ, ପ୍ରେମରୁ ଜାତ ଐକ୍ୟର ଇତିହାସ । ଯୁଦ୍ଧଖୋରମାନେ ମଣିଷକୁ ଗଢ଼ିନାହାନ୍ତି; ବୁଦ୍ଧ, ଯୀଶୁ, ମହମ୍ମଦ, ଚୈତନ୍ୟ, ଜୋରାଥୃଷ୍ଟ ଭଳି ପ୍ରେମିକମାନେ ଗଢ଼ିଚନ୍ତି । ଏକଥା ବର୍ତ୍ତମାନ ଅବସ୍ଥାରେ ମୋତେ ବେଶ୍ ପରିଷ୍କାର ଜଣା ପଡୁଚି ଖାଲି ନୁହଁ, ବୁଝିପାରି ମନରେ ଆବେଗ ହେଉଚି; କିନ୍ତୁ ମନର ଏ ଅବସ୍ଥା ତ ରହିବ ନାହିଁ, ନାନା ବିଭେଦକାରୀ ଯୁକ୍ତି ସେ ଅବସ୍ଥାରୁ ମନକୁ ତଳକୁ ଖସାଇଦେବ-ଅହଂକାର, ସ୍ପର୍ଦ୍ଧା ଇତ୍ୟାଦି । ମନେ ପଡ଼ିଯିବ ମୁସଲମାନମାନେ ଆମର ଜଗନ୍ନାଥଙ୍କୁ ଚମଦଉଡ଼ିରେ ବାନ୍ଧି ବଡ଼ଦାଣ୍ଡରେ ଘୋଷାଡ଼ି ଥିଲେ ଦିନେ... ସେତେବେଳେ ?

-ଜଗନ୍ନାଥଙ୍କୁ ଖାଲି ତୁମର ବୋଲି କାହିଁକି କହୁଚ କି ? ସେସବୁ ଯିଏ କରେ ସେ ଅସଭ୍ୟ, ସେ ହିନ୍ଦୁ ହେଉ ବା ମୁସଲମାନ ହେଉ । ହିନ୍ଦୁମାନଙ୍କ ଭିତରେ ସାହି ସାହି କଳି ଲାଗି ଯେତେବେଳେ ଦୁର୍ଗାଙ୍କ ମୁଣ୍ଡ ଭାଙ୍ଗି ତଳେ ପକାଇ ଦିଅନ୍ତି, ସେ ବି ସେଇ ଅସଭ୍ୟତା । ଯେଉଁମାନେ ଏପରି କରନ୍ତି ବା କରିଥିଲେ ସେମାନେ ଯା'ନ୍ତି, ଗଲେଣି; କିନ୍ତୁ ଜଗନ୍ନାଥଙ୍କ ପ୍ରତି ଭକ୍ତି ସେମିତି ରହିଚି । ମଣିଷ ସେଥିରୁ ଟଳିନାହିଁ ।

-ପ୍ରେମ ସତେ ମହାନ୍ । ମୋର ଏଇକ୍ଷଣି ମନେ ହେଉଚି ଦୁନିଆରେ ସମସ୍ତେ ଭଲ । ସମସ୍ତଙ୍କ ପାଦତଳେ ପଡ଼ିଯିବାକୁ ଇଚ୍ଛା ହେଉଚି । ଆମର ଯଦି ଭୟ ବା ହିଂସା ନଥାନ୍ତା, ତେବେ ଏ ନାନାପ୍ରକାର ବିଭିନ୍ନତା ମଣିଷ ଭିତରେ ଦେଖି ଖୁସି ଲାଗନ୍ତା !!

-ସମସ୍ତେ ଭଲ ତ । ସବା ମୂଳ କଥାଟି ଯଦି ଭଲ ନ ଥାନ୍ତା, ତେବେ ତ ମଣିଷ କେବେଠୁଁ ନାଶ ପାଇସାରନ୍ତାଣି ।

-କିନ୍ତୁ ତୁମେ ଜାଣିଛ ହସନ୍ନୁ, ପଅରଦିନ ଫଗୁଣ ପୂର୍ଣ୍ଣିମାରେ ଆମ ଦୁଇ ଗାଁର ହିନ୍ଦୁ ମୁସଲମାନ ଭିତରେ କଳିଗୋଳ ଲଗାଇବାର ସବୁ ବନ୍ଦୋବସ୍ତ ହେଉଚି..

-ହଉ, ତାକୁ ବନ୍ଦ କରିବାକୁ ଆମେ ଜୀବନ ଦେବା । ଆମେ ଦୁହେଁ ହାତ ଧରାଧରି ହୋଇ ତାଙ୍କ ମଝିରେ ଛିଡ଼ାହେବା..

-ମୁଁ ପାରିବି ନିଶ୍ଚୟ ।

-ନିଶ୍ଚେ ପାରିବ । ତୁମେ ଯଦି ନ ପାର ମୁଁ ତୁମକୁ ସାହସ ଦେବି । ଆଉ ମୁଁ ନପାରିଲେ, ତୁମେ ।

-ହସନ୍ନୁ, ତୁମେ ଏତେ ଜ୍ଞାନକଥା ଜାଣିଲ କିପରି ?

-କହିଲି ପରା...

ହଠାତ୍ ବେଣାବୁଦା ପଛପଟୁ ଶୁଭିଲା-ପ୍ରେମରେ, ବାବା ପ୍ରେମରେ...

ଶ୍ୟାମଘନ ଓ ହସନ୍ନୁ ଚମକି ପଡ଼ି ଦୌଡ଼ି ପଳାଇ ଯାଉଥିଲେ । ବେଣାବୁଦା ପଛପଟୁ ରାମ ପ୍ରଧାନ ଓ ରହିମ୍ ସେମାନଙ୍କ ହାତଧରି ଅଟକାଇ ହସି ହସି କହିଲେ, ''ଭାବିଥିଲ ଆମେ

କିଛି ଜାଣୁନା...''

ରାମ ପଧାନ ଶ୍ୟାମଘନ ଆଡ଼େ ଚାହିଁ କହିଲେ, ''ହସ୍‌ନୁ ଏତେ ସବୁ ଜାଣିଲା ତୋ ପ୍ରେମରେ ପଡ଼ି । ଘୋର ଜଙ୍ଗଲରେ ଗୋଟିଏ ଗଜ ଥିଲା । ସେ ମୁନିମାନଙ୍କ ଘରଦ୍ୱାର ଭାଙ୍ଗିପକାଇ ସେମାନଙ୍କୁ ଭାରି ହଇରାଣ କରୁଥିଲା; କିନ୍ତୁ ମୁନିମାନେ ଭଗବାନଙ୍କ ବିଷୟରେ ଯାହା ସବୁ ଚର୍ଚ୍ଚା କରୁଥିଲେ, ସେସବୁ ତା କାନରେ ପଡୁଥିଲା । ଦିନେ ଗୋଟିଏ କୁମ୍ଭୀର ଚଲାଖି କରି ଗଜକୁ ପାଣିଭିତରକୁ ଟାଣି ନେଇଗଲା ଖାଇବ ବୋଲି । ଆତଙ୍କରେ ପଡ଼ି ତା'ର-

ଶରୀର ଜ୍ଞାନ ଉପୁଜିଲା,
ପୂର୍ବର ହେତୁ ସୁମରିଲା ।
ଗଜ ଯେ ବିଚାରଇ ମନେ,
ଯେ କାଳେ ଥିଲି ଘୋର ବନେ ।
ମୁହିଁ ମାରଇ ବୋଲି କରି
ରୁଣ୍ଡ ହୁଅନ୍ତି ତପଚାରୀ ।
ମୁନି ହୁଅନ୍ତି କୁହାକୋହି,
ଆତଙ୍କକାଳେ ଭାବଗ୍ରାହୀ ।

ଆତଙ୍କରେ ପଡ଼ିବାରୁ ତା'ର ଶୁଣା କଥାସବୁ ଜ୍ଞାନ ପାଇଟିଗଲା । ଆତଙ୍କରେ ଓ ପ୍ରେମରେ ପଡ଼ିଲେ କୁଳକୁଣ୍ଡଳିନୀ ଜାଗେ । ମଣିଷର ବୁଦ୍ଧି ଖୋଲିଯାଏ ।''

ରହିମ୍ କହିଲେ, ''ସଙ୍ଗାତ, ଆମେ ଯେଉଁସବୁ କଥା କହୁଁ, ଏମାନେ ତାକୁ କାମରେ କରିସ୍ । ଏ ଶାଳେ ଲୋକ୍‌କୁ ଫଗୁଣ ପୂନେଇକୁ ସାଦି କରାଦେଙ୍ଗେ, ରାଜି ?''

ରାମ ପଧାନ ରହିମ୍‌ର ହାତଧରି କହିଲେ, ''ରାଜି । ତା'ପରେ କୁରୁକ୍ଷେତ୍ରପାଇଁ ଆମେ ପ୍ରସ୍ତୁତ ହୋଇଯିବା । ଆଲ୍ଲା ଓ ରାଧାବଲ୍ଲଭ ଏଙ୍କର ମଙ୍ଗଳ କରନ୍ତୁ ।''

ଶ୍ୟାମଘନ ଓ ହସ୍‌ନୁ କାନ୍ଦିପକାଇଲେ ।

# ସ୍ମୃତିରତ୍ନାକର

ମାଘ ମାସ ଶୀତଦିନ ସକାଳ । ଆଜି ରବିବାର । ଛଅଟି ଦିନ ଅଫିସ୍‌ରେ ହାଡ଼ଭଙ୍ଗା ଖଟଣି ପରେ ଆଜି ଟିକିଏ ବିଶ୍ରାମ । ଉତ୍ତରା ପବନ ଆଜି ସକାଳୁ ଯେପରି ହିମାଳୟର ବରଫ ପରିବେଷଣ କରୁଚି ।

ବାମନ ବାବୁଙ୍କ ବୈଠକଖାନା ଘର କିନ୍ତୁ ସେ ପବନକୁ ହାର ମନାଇଚି । ବାମନ ବାବୁ ନିତ୍ୟକର୍ମ ସାରି ଅଳସଭାବରେ ଗଦି ଚୌକିରେ ବସି କଫି ପାନକରିବାକୁ ଲାଗିଲେ । ପିଆଲାରୁ ଚୁମୁକେ କଫି ପିଇ ସେ ଦାମିକା ଚୁରୁଟ୍‌ରେ ଅଗ୍ନି ସଂଯୋଗ କଲେ । କଲେ ଧୂଆଁ ଟାଣି ମୁହଁ ଗୋଲିଆ କରି କେତେଗୁଡ଼ିଏ ଧୂଆଁର କୁଣ୍ଡଳୀ ଉପରକୁ ଛାଡ଼ିଦେଇ ସେମାନଙ୍କୁ ଚାହିଁରହିଲେ । ଘରର ଦ୍ୱାର କବାଟ ସବୁ ବନ୍ଦ ଥିଲେ ହେଁ ବିଜୁଳି ଆଲୁଅରେ କୁଣ୍ଡଳୀ ଗୁଡ଼ିକର ଗତି ସ୍ପଷ୍ଟ ଦିଶୁଚି । କୁଣ୍ଡଳୀଗୁଡ଼ିକ ତାଙ୍କ ପାଟିରୁ ଗୋଟିଏ ସ୍ରୋତରେ ବାହାରିଗଲେ ଏବଂ ହଠାତ୍ କିଛି ଉପରକୁ ଉଠି ମନ ଆନନ୍ଦରେ ଯେପରି ପିଲାଙ୍କ ଭଳି ଖେଳିବାକୁ ଲାଗିଲେ । କେତେବେଳେ ଓଲଟି, କେତେବେଳେ ଉପରକୁ ଉଠି, କେତେବେଳେ ବା ଖସି କୁଣ୍ଡଳୀଗୁଡ଼ିକ ଯେପରି ନବଜନ୍ମ ଉପଭୋଗ କରିବାକୁ ଲାଗିଲେ । ହଠାତ୍ କୁଣ୍ଡଳୀଜଗତରେ ଗୋଟିଏ ଚାଞ୍ଚଲ୍ୟ ସୃଷ୍ଟିହେଲା । କୁଣ୍ଡଳୀଗୁଡ଼ିକ ଯେପରି ଭୟରେ ଏଣେତେଣେ ଧାଇଁବାକୁ ଲାଗିଲେ । ତା'ପରେ ହଠାତ୍ ସେଗୁଡ଼ିକ ଫାଟିଗଲେ ଏବଂ ଘର ପାତଳା ଧୂଆଁରେ ପୂର୍ଣ୍ଣ ହୋଇଗଲା ।

ବାମନ ବାବୁଙ୍କର ହଠାତ୍ ଖିଆଲ ହେଲା, ତାଙ୍କର ଯୌବନ ଯାଇ ପ୍ରୌଢ଼ତ୍ୱ ଆସିଲାଣି । ଇସ୍...ଦେଖୁ ଦେଖୁ ଜୀବନର ପଇଁଚାଳିଶ ବର୍ଷ ଚାଲିଗଲାଣି । ଆଉ ବେଶି ଜୋର ପନ୍ଦର କି କୋଡ଼ିଏ ବର୍ଷ । ମୋଟେ ଆଉ ପନ୍ଦର ବର୍ଷ । ବାମନ ବାବୁ ଆତଙ୍କିତ ହୋଇ ଭାବିବାକୁ ଲାଗିଲେ... ମୋ ପରେ ଏଇ ସୁନ୍ଦର ଦୁନିଆରେ କେତେ ନୂଆ ନୂଆ ଘଟନା ଘଟିବ, କେତେ ଆମୋଦ-ପ୍ରମୋଦ ଚାଲିବ । ମୁଁ ତ ସେ ସବୁ ଦେଖିପାରିବି ନାହିଁ, ସେ ସବୁ ଉପଭୋଗ କରିପାରିବି ନାହିଁ । ବାମନ ବାବୁ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ପ୍ରକାଣ୍ଡ ଦର୍ପଣ ସାମନାରେ ଛିଡ଼ାହେଲେ ଏବଂ ଘରର ସବୁ ଆଲୁଅ ଜାଳିଦେଇ ଦର୍ପଣ ଆଡ଼କୁ ନଇଁ କାନ ପାଖର ବାଳ ଟେକି ନିରିଖିବାକୁ ଲାଗିଲେ । ଗୋଟିଏ ଧଳାବାଳ ଦେଖି ସେ ଆଉ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇଲେ ଏବଂ ମନେ ମନେ ଆବୃତ୍ତି କରି କହିଲେ, ''ନା, ନା, ମରିତେ ଚାହିନା ଆମି ସୁନ୍ଦର ଭୁବନେ-ମୁଁ କିଛି ଉପଭୋଗ କରିନାହିଁ... ବାଲ୍ୟ ଓ ଯୌବନ ଗଲା ଦାରିଦ୍ର୍ୟ, ପଢ଼ା ଏବଂ ଚାକିରିରେ ଉନ୍ନତି ପାଇଁ କଠିନ ପରିଶ୍ରମରେ, ମାତ୍ର ଚାରି ପାଞ୍ଚ ବର୍ଷ ହେବ ମୁଁ ସୁଖ, ପ୍ରତିପତ୍ତି ପାଇବାକୁ ଆରମ୍ଭ କରିଚି ।'' ବାମନ ବାବୁ ଗୋଟି ଗୋଟି କରି ଧଳାବାଳ ସବୁ ଓପାଡ଼ି ପୁଣି ଆସି ଚୌକିରେ ବସି ଧୂଆଁ ଆଡ଼େ ଚାହିଁରହିଲେ । ଧୂଆଁର ଆଉ କୌଣସି ଆକାର

ନାହିଁ । ପାତଳା ଧୂଆଁ ଯେପରି ମୁକ୍ତି ପାଇଁ ବ୍ୟାକୁଳ ହୋଇ ଘରର ପ୍ରତ୍ୟେକ ଦୁଆର ଓ ଝରକାରେ ଆଘାତ କରୁଛନ୍ତି । ବାମନ ବାବୁ ଉଠି ଗୋଟିଏ ଝରକା ଖୋଲିଦେଲେ । ସମସ୍ତ ଧୂଆଁ ଯେପରି ମୁକ୍ତିର ଆନନ୍ଦରେ ସେହି ପଟେ ବାହାରିଗଲେ ।

ବାମନ ବାବୁ ଚୌକିରେ ବସି ପୁଣି କଫି ପାନ କରିବାକୁ ଲାଗିଲେ-ନା, ଜୀବନଟାକୁ ଏଥର ନିବିଡ଼ଭାବରେ ଉପଭୋଗ କରିବାକୁ ହେବ । ସେ ପୁଣି ଉଠି ପକେଟରୁ ଚାବି ବାହାର କରି ଆଲମାରିରୁ ମୂଲ୍ୟବାନ ବିଲାତି ମଦ ବାହାର କରି ଟିକିଏ ବେଶି ମାତ୍ରାରେ କଫି ପିଆଲାରେ ଢାଳି ପାନ କରି ଡାକିଲେ, ''ଶୁଣୁଚ ।''

ଘରର ଦୁଆର ଠେଲି ପ୍ରବେଶ କଲେ ତାଙ୍କର ସ୍ତ୍ରୀ ଚପଳା । ବାମନ ବାବୁ ଚପଳାକୁ ଯେତେବେଳେ ବିବାହ କରିଥିଲେ, ସେତେବେଳେ ସେ ଥିଲେ ଜଣେ ସାମାନ୍ୟ କିରାଣୀ । ଚପଳାର ବୟସ ସେତେବେଳେ ପନ୍ଦର । ସେ ଥିଲେ ନିହାତି ଦରିଦ୍ର କନ୍ୟା । ସୌନ୍ଦର୍ଯ୍ୟ ଭିତରେ ଧଳା ଚମଡ଼ା ଛଡ଼ା ଆଉ କିଛି ନ ଥିଲା । ନିହାତି ପାତଳି ସେ ଥିଲେ ସେତେବେଳେ । ତାଙ୍କର ଚାଲିଚଳଣ ମଧ ଥିଲା ନିପଟ ମଫସଲି ଭଳି । କଟକକୁ ଆଣି ବନ୍ଧୁମହଲରେ ବାମନ ବାବୁ କେତେଥର ଅପଦସ୍ଥ ହୋଇଛନ୍ତି ତାଙ୍କ ପାଇଁ ! ଯେତେ ଅନୁରୋଧ ଅପମାନ କଲେ ବି ଚପଳା ସେ ଢଙ୍ଗ ଛାଡ଼ି ପାରି ନ ଥିଲେ । ବାମନ ବାବୁ ତାଙ୍କୁ ଚଷମା ପିନ୍ଧାଇଛନ୍ତି, କୁଞ୍ଚ କରି ଶାଢ଼ୀ ପିନ୍ଧାଇବାକୁ ଶିଖାଇଛନ୍ତି, ନିଜେ ପରିଶ୍ରମ କରି ଇଂରାଜୀ ପଢ଼ାଇଛନ୍ତି, ସନ୍ଧ୍ୟାବେଳେ ସାଙ୍ଗରେ କାଠଯୋଡ଼ି କୂଳକୁ ବୁଲି ବାହାରିଛନ୍ତି; କିନ୍ତୁ ସବୁ ବିଫଳ ହୋଇଥିଲା । ଯେତେ କହିଲେ ବି ଚପଳା ତାଙ୍କ ପଛେ ପଛେ ନିହାତି ମଫସଲି ଭଳି ଓଢ଼ଣାକୁ ହାତରେ ଚିବୁକ ତଳେ ଚାପି ରଖି ଅଦ୍ଭୁତ ଭଙ୍ଗୀରେ ଚାଲନ୍ତି । କେବେହେଁ ତାଙ୍କ ପାଖେ ପାଖେ ଚାଲନ୍ତି ନାହିଁ; କିନ୍ତୁ ପରେ ବାମନ ବାବୁଙ୍କ ଉନ୍ନତି ଓ ଧନବୃଦ୍ଧି ସହିତ ଚପଳାଙ୍କର ମଧ ଚାଲିଚଳଣ ବଦଳିଛି । ଦିଲ୍ଲୀରେ ତିନି ବର୍ଷ ଚାକିରି ପରେ ବାମନ ବାବୁ ଯେତେବେଳେ ପୁଣି କଟକ ବଦଳିହେଲେ, ସେତେବେଳେ ତାଙ୍କର ବନ୍ଧୁମାନେ ତାଙ୍କର ସ୍ତ୍ରୀଙ୍କୁ ଦେଖି ଚମକି ପଡ଼ିଲେ । ଏ ଉନ୍ନତ ବକ୍ଷ, ସୁଗୋଲ ବାହୁ, ଚପଳ ଚାହାଣି, ପତଳା ଓଠ, କଥା କଥାକେ ଇଂରାଜୀ- ଏ ସବୁ ଥିଲା କେଉଁଠି ! ବନ୍ଧୁମାନଙ୍କ ଆଶ୍ଚର୍ଯ୍ୟ ଭାବ ଦେଖି ବାମନ ବାବୁ ମନେ ମନେ ସେ ଦିନ ଗର୍ବ ଅନୁଭବ କରିଥିଲେ । ଚପଳା ବର୍ତ୍ତମାନ ନିଜେ ମୋଟର ଚଳାନ୍ତି ଓ ସିନେମା ଭ୍ରମଣ ବା ପାର୍ଟିକୁ ଗଲେ ତାଙ୍କ ମୁଣ୍ଡରେ ଲୁଗା ନ ଥାଏ । ସେ ଚାଲନ୍ତି ଆଗେ ଆଗେ ଓ ବାମନ ବାବୁ ଚାଲନ୍ତି ତାଙ୍କ ପଛେ ପଛେ ଆନନ୍ଦରେ ।

ବାମନ ବାବୁ ତାଙ୍କୁ ଚାହିଁ ଆଜି ଅଧିକ ସୁଖ ପାଇଲେ । ଜୀବନର ସୁଖ ଉପଭୋଗ କରିବାର ଆକାଂକ୍ଷା ତାଙ୍କର ସଫଳ ହୋଇଛି ସବୁଆଡୁ । ଏ ସୁଖକୁ ନିବିଡ଼ତର ଭାବରେ ଉପଭୋଗ କରିବାକୁ ହେବ ।

ଚପଳା ଆସି ତାଙ୍କ ଦେହକୁ ଲାଗି ବସିଲେ । ବାମନ ବାବୁ ତାଙ୍କୁ ଗାଢ଼ ଆଲିଙ୍ଗନ କରି ଚୁମ୍ବନ ଦେଇ କହିଲେ, ''ଚପଳା, ଆଜି ସନ୍ଧ୍ୟାରେ ଗୋଟିଏ ପାର୍ଟିର ଆୟୋଜନ କର । ମୁଁ ମୋର ସବୁ ବନ୍ଧୁଙ୍କୁ ନିମନ୍ତ୍ରଣ କରିବି ।''

ଚପଳା ହସି କହିଲେ, ''ମୁଁ ମଧ ସେଇକଥା ଭାବୁଥିଲି । ବାଃ, ଭାରି ମଜାରେ ଯିବ ଆଜି ସନ୍ଧ୍ୟା । ତୁମର ସବୁ ବନ୍ଧୁ ତ ଆଜି ବଡ଼ଲୋକ ହୋଇଛନ୍ତି ।''

ବାମନ ବାବୁ ଗର୍ବର ସହିତ ହସି କହିଲେ, "ହଁ, ସମସ୍ତେ ପ୍ରତିଷ୍ଠା ପାଇଛନ୍ତି । ସେମାନେ ସମସ୍ତେ ମୋର ଅନ୍ତରଙ୍ଗ ବନ୍ଧୁ ।"

ଫୋନ ଉଠାଇ ବାମନ ବାବୁ ଡାକିଲେ, ଡବଲ ଫାଇଭ ଟୁ-ଇୟେସ୍ ପ୍ଲିଜ୍-ହ୍ୟାଲୋ-କିଏ ? -ହ୍ୟାଲୋ-ଓ-ଓ-ଓ, ମିସେସ୍ ସାନ୍ତରା-ନମସ୍କାର-ସୁଜୟ ଅଛି ? -ନାହିଁ ? -ଆଚ୍ଛା, ମିସେସ୍ ମହାନ୍ତି ଆପଣଙ୍କ ସହିତ କଥା କହିବାକୁ ଚାହାନ୍ତି ।

ବାମନ ବାବୁ ଫୋନଟି ଚପଳା ହାତକୁ ବଢ଼ାଇ ଦେଲେ । ଚପଳା ଫୋନ ଧରି କହିଲେ, ମୀନା, ବାଃ ତୋର ତ ଆଉ ଦେଖାନାହିଁ । ଶୁଣୁ, ଆଜି ସନ୍ଧ୍ୟାବେଳକୁ ତୋତେ ଓ ମିଃ ସାନ୍ତରାଙ୍କୁ ନିମନ୍ତ୍ରଣ ରହିଲା, ଆସିବୁ, ବୁଝିଲୁ...ଧେତ୍...ଆଚ୍ଛା, ଆଚ୍ଛା, କହୁଚି ତାଙ୍କୁ... ।

ଫୋନ୍‌ରେ ସବୁ ବନ୍ଧୁଙ୍କୁ ନିମନ୍ତ୍ରଣ କରି ସାରି ଦୁହେଁ ମିଳି ସାନ୍ଧ୍ୟମିଳନ ପାଇଁ ଖାଦ୍ୟ ତାଲିକା ପ୍ରସ୍ତୁତ କରିବା ପରେ ଚପଳା ଉଠିଗଲେ ଆୟୋଜନ କରିବାପାଇଁ । ବାମନ ବାବୁ ପୁଣି ଚୁରୁଟ ଲଗାଇଲେ ଏବଂ ପୁଣି ମୁହଁ ଗୋଲିଆ କରି ଧୂଆଁର କୁଣ୍ଡଳୀ ଉପରକୁ ଛାଡ଼ିବାକୁ ଯାଉଥିଲେ; କିନ୍ତୁ ହଠାତ୍ ଅମକି ଯାଇ ତଳକୁ ମୁହଁ କରି ଧୂଆଁର ସ୍ରୋତ ତଳକୁ ଛାଡ଼ିଦେଲେ ।

-ବେହେରା, ବେହେରା, ବାବୁ ଅଛନ୍ତି ? -ବାହାରୁ ଶୁଭିଲା ।

ବାମନ ବାବୁ ବିରକ୍ତ ହୋଇ କହିଲେ, କିଏ ?

-ଆଜ୍ଞା, ମୁଁ ।

-ମୁଁ କିଏ ? ଯାଅ, ଏହିକ୍ଷଣି ସମୟ ନାହିଁ ।

-ଆଜ୍ଞା ଟିକିଏ ଶୁଣନ୍ତୁ ।

-କିଏ, ତୁମେ ?

-ମୁଁ ବିନୟ ।

-କିଏ ବିନୟ ? କାଲି ଆସିବେ, ଯାଆନ୍ତୁ ।

-ଆଜ୍ଞା, ମୁଁ ବାମନ ବାବୁଙ୍କ ବାଲ୍ୟବନ୍ଧୁ ବିନୟ ।

ବାମନ ବାବୁଙ୍କର ଆଦୌ ମନେ ପଡ଼ିଲାନାହିଁ ବିନୟ କିଏ । ସେ ଅପ୍ରସନ୍ନ ଭାବରେ ଦୁଆର ଖୋଲି ଦେଖିଲେ ଛିଡ଼ା ହୋଇଛି ଜଣେ ପ୍ରୌଢ଼ । ପିନ୍ଧିଚି ଖଣ୍ଡେ ଅଧମଇଳା ଲୁଗା ଓ ଲୋଚାକୋଚା ସଫା ଜାମା । କାନରେ ନୋଳି ଓ କାନ୍ଧରେ ଗାମୁଛା । ବାମନ ବାବୁ ଅପ୍ରସନ୍ନ ଓ ଆଶ୍ଚର୍ଯ୍ୟ ଦୃଷ୍ଟିରେ ତାଙ୍କୁ ଚାହିଁରହିଲେ ।

ଲୋକଟି ଆନନ୍ଦରେ ହସି କହିଲା, "ଚିହ୍ନି ପାରୁନା । ପିଲାବେଳର କଥା, ଗାଁ ସ୍କୁଲ କଥା, ମନେନାହିଁ ଭାଇ । ସନ୍ଧ୍ୟାବେଳେ ନଈବାଲିକୁ ଯାଇ କେତେ ଠାକୁରପୂଜା କରୁଥିଲୁ, ତୋତେ କେତେ ଶ୍ଳୋକ ଶିଖାଇଥିଲି ମୁଁ । ସେ ସବୁ ମନେ ପଡ଼ିଲେ ମୋ ମନ କଅଣ ହୋଇଯାଏରେ । ଠାକୁରପୂଜା ପାଇଁ ତୁ କଅଣ କମ୍ ପାଗଳ ଥିଲୁ । ଆଜି କାଲି ଅଛି ନା ସେସବୁ ?"

ବାମନ ବାବୁ ଆନନ୍ଦର ଅଭିନୟ କରି କହିଲେ, "ଆରେ, ବିନ । କଅଣ କରୁଚୁ ଆଜିକାଲି ?"

-କଅଣ କରିବି ଭାଇ ଆଉ । ଗାଁରେ ପୈତୃକ ଯଜମାନି ଅଛି । କିଛି ଜମି ଅଛି । ଜମି

ଚାଷ କରି, ଠାକୁରପୂଜା କରି କୌଣସିମତେ ଗୁଜରାଣ ମେଣ୍ଟିଯାଏ । ତୁମେ ସବୁ ବଡ଼ଲୋକ ହେଲ ଦେଖି ମନଟା ଭାରି ଆନନ୍ଦ ହୁଏ । କଟକରେ ଟିକିଏ କାମ ଥିଲା, ଭାବିଲି ସବୁ ପିଲାବେଳ ସାଙ୍ଗମାନଙ୍କୁ ଥରେ ଦେଖିଯାଏ । ବୟସ ହେଲାଣି ଆସି, କେବେ ପାଚିଲା ବେଲ ପରି କିଏ ଖସି ପଡ଼ିବ କିଏ ଜାଣେ ? ମରିବାଟା ତ ଆଶ୍ଚର୍ଯ୍ୟ ନୁହଁ, ବଞ୍ଚିବାଟା ହିଁ ଆଶ୍ଚର୍ଯ୍ୟ କଥା ।

ବାମନ ବାବୁଙ୍କ ଆଖି କ୍ରୋଧରେ ଦପ୍ କରି ଜଳି ଉଠିଲା । ସେ ନିଜକୁ ସମ୍ଭାଳି ନେଇ କହିଲେ, ''ହଁ, ହଁ ତା ଠିକ୍ । ମରଣକୁ ମୋର ଭାରି ଡର ମାଡ଼ିଲାଣି-''

ବିନୟ ହସି କହିଲା, ନାଇଁରେ ଡର କାହିଁକି ! ମରଣ ତ ସବୁ ଯୁଗରେ ସମସ୍ତଙ୍କ ପାଇଁ ସମାନ । ଯାହା ସମସ୍ତଙ୍କ ପାଇଁ ସମାନ, ତା ପାଇଁ ଡର କଅଣ ! ସବୁ ତାଙ୍କୁ ଅର୍ପଣ କଲେ, ଆଉ ଡର ନ ଥାଏ ରେ, ଆଉ ଡର ନଥାଏ । ତାଙ୍କଠାରୁ ଅଲଗା ହୋଇ ଜୀବନ କଟାଇଲେ ଡର ମାଡ଼ିବସେ ମରିବାକୁ ।''

ବାମନ ବାବୁଙ୍କର ହଠାତ୍ ଯେପରି ମନେ ହେଲା- ବିନୟ ଯେମିତି ବନ୍ଧୁ ନୁହେଁ, ମୃତ୍ୟୁଦୂତ ରୂପେ ଆସିଚି । ସେ ଦୁଆର ଆଉଜାଇ ଦେଇ କହିଲେ, ''ଯା, ଭାଇ ଯା । ମୋର ଅଫିସ ବେଳ ହୋଇଗଲାଣି ।''

ବିନୟ ଆଶ୍ଚର୍ଯ୍ୟ ହୋଇ କହିଲା, ''ଆଜି ପରା ରବିବାର...''

-ଅଫିସର୍'ର ରବିବାର ନାହିଁ, ସବୁଦିନ କାମ । ଯା ଭାଇ, ଯା ।

ବାମନ ବାବୁ ଦୁଆର ଲଗାଇଦେଇ ଫେରି ଦେଖିଲେ, ତାଙ୍କ ପଛରେ ଚପଳା ଛିଡ଼ା ହୋଇଛନ୍ତି । ସେ ପୁଣି ଉନ୍ମାଦ ଭାବରେ ତାଙ୍କୁ ଆଲିଙ୍ଗନ କରି ତାଙ୍କୁ ଟେକି ନେଇ ଚୌକି ଉପରେ ବସିଲେ ।

ଚପଳା ପଚାରିଲା, ''ସେ ତୁମର ବାଲ୍ୟବନ୍ଧୁ ?''

ବାମନ ବାବୁ ଅବଜ୍ଞା ଭରି କହିଲେ, ''ହଁ କହୁଚି ତ ସିଏ, ମୋର ତ ମନେ ପଡୁନାହିଁ । ଛାଡ଼ଃ-ସବୁ ପ୍ରସ୍ତୁତ ତ ?''

-ହଁ ।

-ବାଃ, ତୁମେ ନ ଥିଲେ ମୋର..., ବାମନ ବାବୁ ଆନନ୍ଦରେ ଚପଳାକୁ ଚାହିଁ ରହିଲେ ।

• • •

ସନ୍ଧ୍ୟାବେଳେ ସବୁ ବନ୍ଧୁ ସସ୍ତ୍ରୀକ ଆସିଲେ । ଟାହା ଟେବୁଲ ହସ କୌତୁକ ଓ ଖାଦ୍ୟରେ ଭରିଉଠିଲା । କଥା-କଥାକେ ଅନନ୍ତ ବାବୁ କହିଲେ, ''ଆରେ ବାମନ, ସକାଳେ ବିନୟ ତୋ ଘରକୁ ଆସିଥିଲା ? ତୋର ଭାରି ପ୍ରଶଂସା କରୁଥିଲା ସିଏ । ସେ କହିଲା, ତୁ ତାକୁ ଡାକି ଜଳଖିଆ ଖାଇବାକୁ ଦେଲୁ । ମିସେସ୍ ମହାନ୍ତିଙ୍କ ସହିତ ପରିଚୟ କରାଇଦେଲୁ । ମୁଁ ତ ଭାଇ ପ୍ରଥମେ ଆଦୌ ଚିହ୍ନି ପାରିଲିନାହିଁ । ଟିକିଏ ବିରକ୍ତ ବି ହେଲି । କିନ୍ତୁ ଯେତେହେଲେ ବାଲ୍ୟବନ୍ଧୁ ତ, ସକାଳେ ଜଳଖିଆ ଖାଇବାକୁ ଡାକିଲି । ମନା କଲା । କହିଲା ଅଧ୍ୟାପକ କରଙ୍କ ଘରେ ଖାଇକରି ଆସିଚି ।''

ଅଧ୍ୟାପକ କର କହିଲେ, ''ମୋ ଘରକୁ ସକାଳେ ଯାଇଥିଲା ସେ । ମୁଁ ତ ତାକୁ ଖରାବେଳେ ଖାଇବାକୁ କହିଲି । ସେ କହିଲା, ବାମନ ଖରାବେଳେ ଖାଇବାକୁ ଡ଼ାକିଚି ।''

ବାମନବାବୁ କହିଲେ, ''ହଁ, ମୋ ଘରକୁ ଆସିଥିଲା । ହଁ ଭାଇ, ବାଲ୍ୟବନ୍ଧୁମାନଙ୍କୁ କଅଣ ସହଜେ ଭୁଲିହୁଏ । ମୁଁ ତାକୁ ଏଇ ସାନ୍ଧ୍ୟମିଳନକୁ ଡାକିଲି ଯେ, କହିଲା, ଅନନ୍ତ କୁଆଡ଼େ ଭାରି ଜିଦ୍ କରି ଡାକିଛି ସନ୍ଧ୍ୟାବେଳକୁ ଜଳଖିଆ ଖାଇବାକୁ ।''

ଅନନ୍ତବାବୁ କହିଲେ, ''ସନ୍ଧ୍ୟାରେ ସେ ମୋ ଘରକୁ ଯାଇଥିଲା ସତ । ମୁଁ ତ ତାକୁ ...ହଁ...ନାଁ...ହଁ ଡାକିଥିଲି । ପିଲାବେଳର ସାଙ୍ଗଟା ।''

# ବାବା ଡହରାନନ୍ଦଙ୍କ ବିବାହ ବୃତ୍ତାନ୍ତ

ପୂରାକାଳରେ ମୁଁ, ମଦନ, ସ୍ୱପ୍ନେଶ୍ୱର ଓ ତ୍ରିଲୋଚନ ଋଷିଗଣ ନୈମିଷାରଣ୍ୟରେ (ତ୍ରିଲୋଚନ ଯେଉଁ ଅଟ୍ଟାଳିକା ଗଢ଼ିଚନ୍ତି, ତା'ର ନାଁ'ଟି 'ନୈମିଷାରଣ୍ୟ' କାହିଁକି ରଖିଚନ୍ତି ତାହା ମନସ୍ତତ୍ତ୍ୱବିତ୍‌ମାନଙ୍କର ଗବେଷଣାର ଉପଯୁକ୍ତ ବିଷୟ ହୋଇପାରେ) ସୁସ୍ୱାଦୁ ଖାଦ୍ୟ ଓ ପାନୀୟ କାମନାରେ (ସେ ଦୁଇର ଅଧିଷ୍ଠାତ୍ରୀ ଦେବୀ ତ୍ରିଲୋଚନଙ୍କ ଅର୍ଦ୍ଧାଙ୍ଗିନୀ ଅନ୍ନପୂର୍ଣ୍ଣା-ଆମେ କହୁ ଅରଣାଦେବୀ) ପ୍ରତ୍ୟେକ ରବିବାର ସକାଳୁ ଦିବା ଏକ ଘଣ୍ଟା ପର୍ଯ୍ୟନ୍ତ ଆଲୋଚନା କର୍ମରେ ବ୍ୟାପୃତ ହେଉଥିଲୁ ।

ଏକ ରବିବାର ପ୍ରାତଃକାଳରେ ଆମ୍ଭେ ଋଷିଗଣ ନିତ୍ୟନୈମିତ୍ତିକ କର୍ମ ଆରମ୍ଭ କରି ଉପବେଶନ କରିଅଛୁଁ, ଏହିପରି ସମୟରେ ଅରଣାଦେବୀଙ୍କ ବିଶ୍ୱସ୍ତ ଭୃତ୍ୟ, ତେଣୁ ତ୍ରିଲୋଚନଙ୍କର ମଧ ପ୍ରଭୁ, ମହାତ୍ମା ଉଗ୍ରଶ୍ରବା ଉପସ୍ଥିତ ହୋଇ ଯାହା ଘୋଷଣା କଲେ-ଭାଗବତୀୟ ଭାଷାରେ ତାହା ଏହିରୂପ-ଭୋ ଭୋ ରସବିଶେଷ ଭାବନା-ଚତୁର ଭାବୁକବୃନ୍ଦ, ଶୃଣ୍ୱନ୍ତୁ- ଶୃଣ୍ୱନ୍ତୁ ! ଗୃହାଭ୍ୟନ୍ତରରୁ ମାତାଙ୍କର ଆଦେଶ ଶ୍ରବଣ କରନ୍ତୁ । ସମ୍ମୁଖରେ ଦାରୁଣ କଳିକାଳ ଉପସ୍ଥିତ ଦେଖି ଆପଣମାନେ ବ୍ୟଥିତ ଓ ଚିନ୍ତିତ ହୋଇ ଦୀର୍ଘ ବାକ୍ୟଯଜ୍ଞ ଆରମ୍ଭ କରିଛନ୍ତି । ତେଣୁ ଆପଣମାନଙ୍କର ପ୍ରଚୁର ଅବକାଶ ଅଛି । ଏ ଦଗ୍‌ଧ କଳିକାଳରେ ଜିହ୍ୱା ହିଁ ସମସ୍ତ ପ୍ରକାର ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ଉତ୍ପାତର କାରଣ ଏଥିରେ ସନ୍ଦେହ ନାହିଁ । ଭାଗବତରେ ଅଛି, କଳିକାଳରେ ବହୁକଥନ ହିଁ ପାଣ୍ଡିତ୍ୟର ପରିଚାୟକ ଓ ବାଚାଳତା ହିଁ ସତ୍ୟତାର ପ୍ରତିପାଦକ ହେବ । ଅତଏବ କି ଉପାୟ ଅବଲମ୍ବନ କଲେ ଜିହ୍ୱାର କ୍ରିୟା ସଂଯତ ହେବ ତାହାର ଉପାୟ ଆଜି ଉଦ୍ଭାବନ କରନ୍ତୁ, ନଚେତ୍...

ଆମ୍ଭ ଋଷିଗଣଙ୍କର ବୁଦ୍ଧି ଅତି ସୂକ୍ଷ୍ମ ଓ ତୀକ୍ଷ୍ଣ ଥିବାରୁ 'ନଚେତ୍' ପରେ ଭୃତ୍ୟ ପୁଙ୍ଗବ ଉଗ୍ରଶ୍ରବା ତସ୍ୟ ମାତା ଓ ଆମ୍ଭମାନଙ୍କର ନିତ୍ୟ ଭୀତ୍ୟୁତ୍ପାଦନକାରିଣୀ ଅରଣା ଦେବୀଙ୍କର କି ଆଦେଶ ଘୋଷଣା କରିବେ ତାହା ନିମିଷକେ ବୁଝିପାରି ବିଶେଷ ଭୟାତୁର ହେଲୁ । ତେଣୁ ସେ ଘୋଷଣା ସ୍ଥଗିତ କରିବା ମାନସରେ ଆମ୍ଭେ ଋଷିଗଣ ଘୋଷଣା ଶୁଣିବାର ଆଗ୍ରହ ଛଳନା କରି ସମବେତ କଣ୍ଠରେ ତାରସ୍ୱରରେ ପ୍ରଶ୍ନ କଲୁ, ନଚେତ୍ ? ନଚେତ୍ ?

ମହାତ୍ମା ଉଗ୍ରଶ୍ରବା ଆମ୍ଭମାନଙ୍କର ଶବ୍ଦତରଙ୍ଗ ସଂଗ୍ରହ କରି ତାଙ୍କ କର୍ଣ୍ଣଗହ୍ୱରକୁ ଚାଳିତ କରିବା ମାନସରେ ତାଙ୍କର ଦୁଇକର୍ଣ୍ଣର ପଶ୍ଚାଦ୍ଦେଶରେ ଦୁଇହସ୍ତ ସ୍ଥାପନ କରି ପଚାରିଲେ, ଓ ଓ ଓ ଓ, କଅଣ କହିଲେ ? ଆମ୍ଭେମାନେ ନୀରବ ରହିଲୁ । ତତ୍‌ପରେ ସେ ଅବଜ୍ଞାସୂଚକ ଭଙ୍ଗୀରେ ଆମ୍ଭମାନଙ୍କୁ ତାଙ୍କର ବିରାଟ ପୃଷ୍ଠ ଦର୍ଶାଇଲେ ।

ହତାଶାରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଆମ୍ଭେମାନେ କିଛିକ୍ଷଣ ନୀରବ ରହିବା ପରେ ମଦନ

ତ୍ରିଲୋଚନଙ୍କ ଆଡ଼େ କ୍ରୂର ଦୃଷ୍ଟି ନିକ୍ଷେପ କରି କହିଲେ-ହ୍ୟାପ୍, କିଏ କୁହେବେ ନାରୀ ଅବଳା, କୋମଳା, ଦୟାଳୁ ? କିଏ କୁହେବେ ?

ଆମ୍ଭେମାନେ ସେପରି କେବେ କହି ନଥିବାରୁ ନୀରବତାଦ୍ୱାରା ସେ ପ୍ରଶ୍ନର ଉତ୍ତର ଦେଲୁ । ମଦନଙ୍କ କ୍ରୋଧ ତଦ୍ୱାରା ବୃଦ୍ଧିପ୍ରାପ୍ତ ହେଲା । ସ୍ୱପ୍ନେଶ୍ୱର କହିଲେ, ପ୍ରକୃତିର ନିୟମ ଅନୁସାରେ ଯିଏ ଅନ୍ତରରେ ଯେତେ କ୍ରୁର ତାହାର ବାହ୍ୟ ଆବରଣ ସେତେ କୋମଳ ଓ ମନୋଲୋଭା, ଏବଂ ଯିଏ ଅନ୍ତରରେ ଯେତେ କୋମଳ ତାହାର ବାହ୍ୟ ଆବରଣ ସେତେ କଠିନ...

ତ୍ରିଲୋଚନ ଏଥର ଅଙ୍ଗେଇ ଅଙ୍ଗେଇ କହିଲେ, ତା' ଯଦି ହୋଇଥାଏ ତେବେ ସେ ତ ପ୍ରକୃତିର ନିୟମ । ଏଥିରେ କ୍ଷୁବ୍‌ଧ ହେବାର କଅଣ ଅଛି ?

ମଦନ ଏଥର ଚିତ୍କାର କରି ଟେବୁଲ୍ ଉପରେ ବିଧାମାରି କହିଲେ, ତୁ ଚୁପ୍‌କର ହ୍ୟାପ୍ । ମଣିଷର ଆଶା ଯେତେବେଳେ ସଫଳ ହୁଏ ନାହିଁ ବା ସଫଳ କରିବାର କ୍ଷମତା ଥାଏନାହିଁ, ସେତେବେଳେ ମାନସିକ ଯନ୍ତ୍ରଣାରୁ ଉଦ୍ଧାର ପାଇ ଶାନ୍ତି ପାଇବାପାଇଁ ସେ ବିଫଳତାର ଉପଯୁକ୍ତ କାରଣ ଅନୁସନ୍ଧାନ କରେ ଏବଂ କାରଣ ପାଇଗଲେ ଶାନ୍ତି ପାଏ । ଅଥବା କିଛି କାରଣ ନ ପାଇଲେ ଭାଗ୍ୟ ଭଗବାନ ଆଦିଙ୍କ ଉପରେ ଦୋଷ ଲଦିଦେଇ ଶାନ୍ତି ପାଏ । ମୁଁ କହିଲି, ଆଜିକାଲି ଯେଉଁ ଦୁର୍ମୂଲ୍ୟ ଓ ଟିକସର ଯୁଗ, ସେଥିରେ ପ୍ରତ୍ୟେକ ରବିବାର ଆମ୍ଭ ଋଷିଗଣଙ୍କ ପାଇଁ ଖାଦ୍ୟପେୟରେ ପାଞ୍ଚଟଙ୍କା ବ୍ୟୟ କରିବା ଅସମ୍ଭବ ନୁହେଁ କି ? ଅର୍ଥ ହିଁ ଆମ୍ଭମାନଙ୍କର ଆଚାର ବ୍ୟବହାର ନିୟନ୍ତ୍ରଣ କରେ ।

ମଦନ ହାତ ହଲାଇ କହିଲେ, ସେ କଥା ତୁମ୍ଭର ମାରଙ୍କଷ ଋଷି କେବଳ କହି ନାହାନ୍ତି, ଭାଗବତରେ ମଧ୍ୟ ଲେଖାଅଛି- କଳିକାଳରେ ଧନହିଁ ମାନବସମାଜର ଜନ୍ମ, ଆଚାର, ଗୁଣ ପ୍ରଭୃତିର ନିର୍ଦ୍ଧାରକ ହେବ ଏବଂ ଧର୍ମ ନ୍ୟାୟନିରୂପଣର ମୂଳ ହେବ ।

ତ୍ରିଲୋଚନ ଏଥର ସାହସ ପାଇ କହିଲେ, ସତେ ଭାଇ ! ରାମରାଜ୍ୟ କହିଲେ ଚଳେ ! ପୁରାଣରେ ଲେଖାଅଛି, ରାମଚନ୍ଦ୍ରଙ୍କ ରାଜତ୍ୱ କାଳରେ ଲୋକମାନଙ୍କ ଘର ସବୁ ହୀରା ମୋତି ମାଣିକ୍ୟରେ ଓ ରାସ୍ତାସବୁ ରୂପାରେ ତିଆରି ହୋଇଥିଲା । ଲୋକେ ବଜାରକୁ ସଉଦା କରିବାକୁ ଗଲେ ପାଛିଆ ପାଛିଆ ମୋତି ମାଣିକ୍ୟ ନେଇଯାଉଥିଲେ । ଶାଗ କିଣିବାବେଳେ ଶାଗବାଲୀକୁ କହୁଥିଲେ, ମୋତି ପାଛିଆଏ ନେ, ଶାଗ ପାଛିଆଏ ଦେ ! ସେ ରାମରାଜ୍ୟ ଆସିଗଲାଣି । ଆମେ ବି ଦିନେ କହିବୁ, ଟଙ୍କା ପାଛିଆଏ ନେ, ପୋଇଖଡ଼ା ଚାଖଣ୍ଡେ ଦେ, ସେଥିରୁ ପତର ଦି'ଟା କାଢ଼ିନେବୁ ତ ନେ । ଏହାର କାରଣ କମ୍ ଉତ୍ପାଦନ ନୁହଁ, ଅସାଧୁତା ।

ମୁଁ କହିଲି, ଚମତ୍କାର ! ସମସ୍ତେ ଆଗେ ଥୋଡ଼ା ଧନ ଅସାଧୁ ଉପାୟରେ ସଞ୍ଚୟ କରି ତା'ପରେ ଅନ୍ୟମାନଙ୍କୁ ଉପଦେଶ ଦେଉଛନ୍ତି, ଭାଇମାନେ ସାଧୁ ହୁଅ !

ସ୍ୱପ୍ନେଶ୍ୱର କହିଲେ, ଆରେ ନା ନା, ସରକାର ଯେତେ ଯୋଜନା କଲେଣି ଆଉ ଅଳ୍ପ କେତୁଟା ଦିନ କଷ୍ଟ ସହିଗଲେ ଅବସ୍ଥା ଓଲଟିଯିବ । ଲୋକେ କହୁଛନ୍ତି ଯେ ଯୋଜନାରେ ଯେତେ ଖର୍ଚ୍ଚ ହେଉଚି ସେଥିରୁ ଶତକଡ଼ା ସତୁରି କାମରେ ଲାଗୁନାହିଁ । ମୁଁ କହେ, ବାକି ତିରିଶ ତ କାମରେ ଲାଗୁଚି, ସେତିକି କଅଣ କମ୍ !!

ମଦନ କହିଲେ, ଠିକ୍ କଥା, ଯେତେ ଟଙ୍କାର କାମ ହେଲା ତା'ର ହିସାବ ରହୁଚି ଓ ଆଖିକୁ ଦିଶୁଚି; କିନ୍ତୁ ବାକି ଟଙ୍କା ଆମର କେତେ ନୈତିକ ଅବନତି ଆଣିଲା ତା'ର ହିସାବ ? କିଏ ରଖୁଚି ତା'ର ହିସାବ ଶୁଣେ ? ଏ ବସ୍ତୁବାଦ ଯୁଗରେ ସରକାର ମନୁଷ୍ୟମନରେ ନାନା ପ୍ରକାର ଇଚ୍ଛା ଆକାଂକ୍ଷା ଉଦ୍ରେକ କରାଉଛନ୍ତି-ଅଣ୍ଡା ଖାଅ, ଦୁଧ ଖାଅ, ଭଲ ଘରେ ରହ ଇତ୍ୟାଦି । ଆକାଙ୍କ୍ଷାକୁ ଖାପ ଖୁଆଇ ଉତ୍ପାଦନ କୌଣସି ଯୁଗରେ ହୋଇ ପାରିବ ନାହିଁ । ଆକାଙ୍କ୍ଷା ଶହେଗୁଣ ହେବାବେଳକୁ ଉତ୍ପାଦନ ହେବ ହୁଏତ ଏକଗୁଣ । ଅତଏବ ଉତ୍ପାଦନର ଫଳ ଭୋଗ କରିବେ ଅଳ୍ପ କେତେକ ଚତୁର ଲୋକେ । ଅନ୍ୟମାନଙ୍କର ବିଫଳ ଆକାଙ୍କ୍ଷା କି ବିକୃତି ସୃଷ୍ଟି କରିବ, କି ହିଂସା ଦ୍ୱେଷ ସୃଷ୍ଟି କରିବ ତା'ର ହିସାବ ରଖୁଚି କିଏ ? ଏଇଥିପାଇଁ ତ ପୂର୍ବକାଳରେ ଧର୍ମ ଓ ଦର୍ଶନଦ୍ୱାରା ଆକାଙ୍କ୍ଷାକୁ ସଂଯମ କରିବାର ପ୍ରୟାସ ଥିଲା । ଆଜିକାଲି ତ ଧର୍ମ, ଦର୍ଶନ ଭଗବାନଙ୍କୁ ମୂଳରୁ ଉଡ଼ାଇଦେଲେଣି । ଭାଗବତରେ ତେଣୁ ଲେଖାଅଛି, କଳିକାଳରେ ଅନଭିଜ୍ଞ ଓ ଅସାଧୁ ଲୋକେ ଉତ୍ତମ ବ୍ୟକ୍ତିର ଆସନ ଗ୍ରହଣ କରିବେ ।

ଏହି ସମୟରେ ଦୈବବାଣୀ ଭଳି ଶୁଣାଗଲା, ଭୋ ଭୋ ଋଷିଗଣ ! ତୁମ୍ଭେମାନେ ବୃଥା ତର୍କରୁ କ୍ଷାନ୍ତ ହୁଅ; କାରଣ ଭଗବାନ ନାରାୟଣଙ୍କ ଏହା ହିଁ ଇଚ୍ଛା ଯେ ମନୁଷ୍ୟଗଣ ଆପଣା ଆପଣାକୁ ପାଳନ କରିବେ ଓ କ୍ରମେ କ୍ରମେ ଶାସକମାନେ ସ୍ୱାର୍ଥାନ୍ଧ ହୋଇ ପାଳନ କାର୍ଯ୍ୟରେ ଅସାଧୁ ଓ ଅସଂଯମୀ ହେବାରୁ ହିଂସା ଓ ଦ୍ୱେଷ ବୃଦ୍ଧି ପାଇବ ଓ ମନୁଷ୍ୟମାନେ ପରସ୍ପରକୁ ବିନାଶ କରିବାରେ ବ୍ୟାପୃତ ହେବେ ଓ ଫଳରେ ସୃଷ୍ଟି ଲୋପ ପାଇବ !!

ଆମ୍ଭେମାନେ ଆନନ୍ଦରେ ଚିତ୍କାର କରିଉଠିଲୁ, ଆରେ ! ବାବା ଡହରାନନ୍ଦ ଯେ ! ଆସନ୍ତୁ, ଆସନ୍ତୁ, ଆସ ଆସ, ଆବ୍‌ବେ !!

ବାବା ଡହରାନନ୍ଦ ଆଶୀର୍ବାଦ ମୁଦ୍ରା ସହ ହସ୍ତ ଉତ୍ତୋଳନ କରି ପ୍ରବେଶ କଲେ । ପୁଣି ତାଙ୍କର ସେହି ଜଟାଧାରୀ ସନ୍ନ୍ୟାସୀବେଶ ଦେଖି ଆମ୍ଭେ ଆଶ୍ଚର୍ଯ୍ୟ ହେଲୁ ।

ମଦନ ପଚାରିଲେ, କିନ୍ତୁ ବାବା, ଏ କି ହତାଶାର ବାଣୀ ଶୁଣାଇଲେ ଆପଣ ବେଃ !

ବତ୍ସ ମଦନାନନ୍ଦ ମୋଦକ, ବାବା କହିଲେ, ଶ୍ରୀ ଶ୍ରୀମଦ୍ଭାଗବତ ପ୍ରଥମ ସ୍କନ୍ଧ ପଞ୍ଚଦଶ ଅଧ୍ୟାୟ ୨୧-୨୭ ଶ୍ଳୋକ ଦେଖ ।

ସ୍ୱପ୍ନେଶ୍ୱର ପଚାରିଲେ, କିନ୍ତୁ ବାବା, ଆପଣ ଏପରି ତେଜୋଭ୍ରଷ୍ଟ ଦେଖାଯାଉଛନ୍ତି କାହିଁକି ? କୌଣସି ବନ୍ଧୁଙ୍କ ଗୃହରେ ବହୁକାଳ ବାସ କରିଥିଲ ବୋଲି କଅଣ ବନ୍ଧୁପତ୍ନୀ ଦୁର୍ବ୍ୟବହାର କଲେ ? ତୁମ୍ଭେ କି କୌଣସି ଅଗମ୍ୟା ନାରୀ ନିକଟକୁ ଗମନ କରିଥିଲ ? ଅଥବା କୌଣସି ଗମ୍ୟା ନାରୀକୁ ଦରିଦ୍ର ବୋଲି ତ୍ୟାଗ କରିଅଛ ? ଅଥବା କର୍ମକ୍ଷେତ୍ରରେ ତୁମ୍ଭର ସମାନ ବା ତୁମ୍ଭଠାରୁ କୌଣସି ନିକୃଷ୍ଟ ବ୍ୟକ୍ତି କଅଣ ତୁମ୍ଭ ଉପରକୁ ଉଠାଇ ଦିଆହୋଇଛି ? ତୁମ୍ଭେ ଏ ପାଞ୍ଚବର୍ଷ ଯାବତ୍ କୁଆଡ଼େ ଥିଲ ?

ବାବା ଡହରାନନ୍ଦ ଆନନ୍ଦରେ ହସି ହସି ଗଡ଼ିଯାଇ କହିଲେ, ମୁଁ ଅତ୍ୟନ୍ତ ଆନନ୍ଦିତ ଯେ ତୁମ୍ଭେ ମଧ୍ୟ ଭାଗବତ ପଢ଼ିଅଛ । ଏ ପ୍ରଶ୍ନଗୁଡ଼ିକ ପ୍ରଥମ ସ୍କନ୍ଧର ଚତୁର୍ଦ୍ଦଶ ଅଧ୍ୟାୟରେ ଯୁଧିଷ୍ଠିର ଅର୍ଜୁନଙ୍କୁ ପଚାରିଥିଲେ । ସେ ପ୍ରଶ୍ନଗୁଡ଼ିକର ଉତ୍ତରରେ ହିଁ ମୋର ଏ ପାଞ୍ଚବର୍ଷର ବିଚିତ୍ର ଅଭିଜ୍ଞତା-ଜଡ଼ିତ

ଇତିହାସ ଅଛି ।

ଏହି ସମୟରେ ମହାତ୍ମା ଉଗ୍ରଶ୍ରବା ପ୍ରଚୁର ଜଳଖିଆ ଓ ଚାହା ଧରି ଦ୍ୱାରଦେଶରେ ଆବିର୍ଭୂତ ହୋଇ ପଚାରିଲେ- ଓ ଓ ଓ ଓ, କଅଣ କହିଲେ ?

ଆମ୍ଭେମାନେ ସେ ମହାତ୍ମାଙ୍କର ହସ୍ତ ସାଦରେ ଧାରଣ କରି ଟାଣିଆଣିଲୁ ଏବଂ ନାରୀ ବିଷୟରେ ଆମ୍ଭର ପୂର୍ବମତ ବଦଳାଇଦେଲୁ ।

ଖାଉ ଖାଉ ବାବା ଡହରାନନ୍ଦ ଆରମ୍ଭ କଲେ...

ମୁଁ ପାଞ୍ଚବର୍ଷ ଯାବତ ଚୁକ୍ତିବନ୍ଧଭାବରେ ବମ୍ୱେରେ ଥିଲି । ଅଦ୍ଭୁତ ଚୁକ୍ତି । ସେ ଚୁକ୍ତିରୁ ମୁକ୍ତି ପରେ ମୁଁ ପୁଣି ସନ୍ୟାସଧର୍ମ ଅବଲମ୍ୱନ କରିଅଛି ଓ ପ୍ରବ୍ରଜ୍ୟା ବ୍ରତ ପାଳନ କରୁଅଛି । ଜୟ ରାଧେ, ଜୟ ରାଧେ ।

ରସବତୀ ବାଘୁଣୀଦ୍ୱାରା ଘାଉଲା ହେବା ପରେ ମନର ଘା ଶୁଖାଇବାକୁ ହିମାଳୟ ପିମାଳୟରେ କିଛି କାଳ ବୁଲି ପହଞ୍ଚିଲି ବମ୍ୱେରେ । ବମ୍ୱେରେ ମୋର ମନ ପୁଣି ସଂସାର ପ୍ରତି ଆକୃଷ୍ଟ ହେଲା । ଅଦ୍ଭୁତ ମନର ଗତି । ବମ୍ୱେରେ ମୁଁ ପୁଣି ଚାକିରୀ କଲି । ଗୋଟାଏ କୋମ୍ପାନୀରେ ଫୋରମ୍ୟାନ ଚାକିରି ପାଇଲି । ମାସିକ ବେତନ ଦୁଇଶହ ଟଙ୍କା । ସାନ କୋମ୍ପାନୀଟିଏ ।

କାମରେ ଯୋଗଦେବାର କିଛି ଦିନ ପରେ ମୁଁ ଗୋଟାଏ ଭାରୀ ଆଶ୍ଚର୍ଯ୍ୟ ଓ ମନୋମୁଗ୍ଧକର ଦୃଶ୍ୟ ଦେଖିଲି । କମ୍ପାନୀ ଗୋଟିଏ ନଳକୂପ ଖୋଳାଉଥାଏ । ଦୁଇଜଣ ଲୋକ ମେସିନ୍‌ର ଦୁଇ ପାଖରୁ ଧରି ତଳ ଉପର କରୁଥାଆନ୍ତି । ଜଣେ ମହିଳା ବୋଲୁଥାଏ-

ଚନ୍ଦ୍ରବଦନୀ..... ହେଇଁ ଯବାନ
ହୋଇଚି ଠିଆ... ହେଇଁ ଯବାନ
ପର୍ବତ ତୋଡ଼ି... ହେଇଁ ଯବାନ
ଚଲା ଇନ୍‌ଜିନ... ହେଇଁ ଯବାନ
ପାତାଳ ପାଣି... ହେଇଁ ଯବାନ
ଆଣେରେ ଟାଣି... ହେଇଁ ଯବାନ

ସ୍ତ୍ରୀଲୋକ ଏ କାମ କରିବାର ମୁଁ କେବେ ଦେଖି ନ ଥିଲି । ପ୍ରଥମେ ଦୃଷ୍ଟିକଟୁ ହେଲା ସତ, କିନ୍ତୁ ସେଇଥିପାଇଁ ବୋଧହୁଏ ମୁଁ ତାଙ୍କପ୍ରତି ଆକୃଷ୍ଟ ହେଲି ।

ତାଙ୍କ ନାଁ'ଟି ହେଉଛି, ପରେ ବୁଝିଲି, କଳାବନ୍ତୀ । ଖଣ୍ଡେ ଦାମସ୍କସୀୟ ଛୁରୀ ଭଳି ସୁନ୍ଦର । ସେମିତି କ୍ଷୁଦ୍ରକାୟା, ଶୁଭ୍ରବର୍ଣ୍ଣା, ସତେଜା । ଇଞ୍ଜିନିୟରିଂ ପାଶ୍ କରିବା ପରେ କିଛିଦିନ କଣ୍ଟ୍ରାକ୍ଟରି କରି ବେଶ୍ ଦି' ପଇସା ରୋଜଗାର କରିଥିଲେ; କିନ୍ତୁ ଜୁଆଖେଳରେ ସବୁ ହରାଇ କୋମ୍ପାନୀରେ ଚାକିରି ନେଇଥାଆନ୍ତି ମାତ୍ର ଦୁଇଦିନ ଆଗେ । ମୁଁ ସେତେବେଳକୁ ପ୍ରାୟ ବର୍ଷେ ହେବ କୋମ୍ପାନୀରେ ଚାକିରି କଲିଣି ।

ଆଉଦିନେ ଦେଖିଲି, ସେ କମ୍ପାନୀର ନାରୀ-କର୍ମଚାରୀମାନଙ୍କ ସଭାରେ ବକ୍ତୃତା ଦେଉଥାଆନ୍ତି । କହୁଥାନ୍ତି, ହେ ନାରୀ, ତୁମ୍ଭେ ଜାଗ, ଆଉ ପୁରୁଷତଳେ ପଡ଼ି ରହନା । ସମାନ ସ୍ତରକୁ ଆସ । କୌଣସି ଦେଶର ପ୍ରଗତିର ପରିଚୟ ସେଠା ମହିଳାମାନଙ୍କ ଥିବା ସ୍ତରରୁ ଜଣାପଡ଼ିଯାଏ ।

ଅନ୍ୟାନ୍ୟ ଦେଶରେ ମହିଳାମାନେ ପୁରୁଷମାନଙ୍କ ସମାନ ସ୍ତରକୁ ଆସିବା ପାଇଁ ଆନ୍ଦୋଳନ କରୁଥିବା ସ୍ଥଳେ ଆମ ସଂବିଧାନ ସେ ଅଧିକାର ଦେଇସାରିଛି । ସେ ଅଧିକାରକୁ ଆମେ କେବଳ କାର୍ଯ୍ୟକାରୀ କରିବୁ ।

ମଦନ ପଚାରିଲେ, ଭୟେ କି କଥା-ତଳେ ନ ରହିଲେ ନାହିଁ, ଉପରକୁ ଯାଆନ୍ତୁ, ସମାନ ସ୍ତରରେ ରହିଲେ ଅସୁବିଧା ସୃଷ୍ଟି ହେବନାହିଁ କି ? ଉଦାହରଣସ୍ୱରୂପ, ପୁରୁଷମାନଙ୍କ ପାଇଁ ତ ଯଥେଷ୍ଟ କାମ ନ ଥିବାରୁ ବେକାର ସମସ୍ୟା ବଢ଼ୁଚି । ସେଥିରେ ପୁଣି ମହିଳାମାନେ ଯୋଗ ଦେଲେ ବେକାର ସମସ୍ୟା ଉତ୍କଟତର ହେବ ନାହିଁ କି ? ତା ଛଡ଼ା, ଗୃହ, ପରିବାର ଏ ସବୁର ତ ଉଚ୍ଛେଦ ହେବ । ହୋଟେଲ ହିଁ ଆମର ଗୃହ ହେବ, କ୍ଲବ୍ ଆମର ବିଶ୍ରାମ ସ୍ଥାନ ଏବଂ ଡାକ୍ତରଖାନା ହେବ ଆମର ସେବାଗୃହ । ମୋ ମତରେ, ମହିଳାମାନେ ସମାନ ସ୍ତରକୁ ଆସିଲେ କାମ ଭଲ ଚାଲିବ ନାହିଁ ।

ବସ ମଦନାନନ୍ଦ ମୋଦକ, ତହରାନନ୍ଦ କହିଲେ, ସଂବିଧାନ ସେମାନଙ୍କୁ ସମାନ ଅଧିକାର ଦେଇଚି । ଆଇନ ଅନୁସାରେ ତୁମେ ମାନିବାକୁ ବାଧ ଯେ ଆମର ନିର୍ବାଚିତ ପ୍ରତିନିଧିମାନେ ଯେଉଁ ସଂବିଧାନ ପ୍ରଣୟନ କରିଛନ୍ତି ସେଥିରେ ନିଶ୍ଚୟ ଆମର ମଙ୍ଗଳ ହେବ । ଅତଏବ ସେ ବିଷୟରେ ପ୍ରଶ୍ନ ଉଠାଇବା ସଂବିଧାନବିରୋଧୀ ଅପରାଧ । ଅତଏବ ମହିଳାମାନଙ୍କର ପୁରୁଷମାନଙ୍କ ତଳେ ବା ଉପର ସ୍ତରରେ ରହିବା କଥା ଉଠିପାରେନା । ଯଦି ଭବିଷ୍ୟତରେ କେବେ ପୁରୁଷମାନେ ଦେଖନ୍ତି ଯେ ନାରୀମାନେ ଉପରସ୍ତରକୁ ଉଠିଗଲେଣି, ସେମାନେ ତଳେ ପଡ଼ିଛନ୍ତି, ତେବେ ସଂବିଧାନ ଅନୁସାରେ ପୁରୁଷମାନେ ସମାନ ଅଧିକାର ଦାବି କରିବେ । ସେ ସମତ୍ୱ ପୁରୁଷମାନଙ୍କୁ ନାରୀମାନଙ୍କ ସ୍ତରକୁ ଉଠାଇ ହେଉ ବା ନାରୀମାନଙ୍କୁ ପୁରୁଷମାନଙ୍କ ସ୍ତରକୁ ଖସାଇ ହେଉ, ଯାହା ସରକାର ବିଚାର କରିବେ । ସେ କଥା ଛାଡ଼ ।

କଅଣ କହୁଥିଲି ? ବସ ମଦନାନନ୍ଦ, ତୁମେ ଆଉ କଥା ମଝିରେ ସୂକ୍ଷ୍ମତତ୍ତ୍ୱ ଉଠାଇ ରସଭଙ୍ଗ କରିବ ନାହିଁ । କଅଣ କହୁଥିଲିଟି ?

ମୁଁ ମନେ ପକାଇ ଦେଲି, କଳାବନ୍ତୀ ନାରୀମାନଙ୍କ ସଭାରେ ବକ୍ତୃତା ଦେଉଥିଲେ ଯେ..

ହଁ, ତହରାନନ୍ଦ ପୁଣି ଆରମ୍ଭ କଲେ, ମୁଁ ତାଙ୍କ ପ୍ରତି ଆକୃଷ୍ଟ ହେଲି । ମୋ ସୌଭାଗ୍ୟକୁ, ସେତେବେଳେ ସୌଭାଗ୍ୟ ମଣିଥିଲି, ଅଳ୍ପଦିନ ପରେ ସେ ମୋରି ତଳେ ସହକାରୀ ଫୋରମ୍ୟାନ୍ ଚାକିରି ପାଇଲେ । ତାଙ୍କର ପଦୋନ୍ନତି ଘଟିଲା । ଆହୁରି ସୌଭାଗ୍ୟର କଥା ଯେ ସେ ମୋରି ଘର ପାଖ ଘରେ ରହିଲେ ।

ଫୋରମ୍ୟାନ ସ୍ତ୍ରୀ-ଲୋକ ? ମଦନ ଆଶ୍ଚର୍ଯ୍ୟାନ୍ୱିତ ହେଲେ ।

ସ୍ୱପ୍ନେଶ୍ୱର ମନ୍ତବ୍ୟ କଲେ, ଯେ କୌଣସି କ୍ଷେତ୍ରରେ ସୃଷ୍ଟିର ଦୁଇଟି ନିୟମ କାର୍ଯ୍ୟ କରୁଚି, ରକ୍ଷଣଶୀଳତା ଓ ପରିବର୍ତ୍ତନଶୀଳତା । ସାମାଜିକ ଜୀବନରେ ମଧ୍ୟ ସେହି ଦୁଇ ନିୟମ କାର୍ଯ୍ୟ କରୁଚି । ସମାଜ ଯଦି ଖାଲି ପରିବର୍ତ୍ତନଶୀଳ ହୁଏ, ତେବେ ନିଶ୍ଚିହ୍ନ ହୋଇଯିବ । ଖାଲି ରକ୍ଷଣଶୀଳ ହେଲେ ମଧ୍ୟ ତଦ୍ରୂପ । ଚିନ୍ତାଶୀଳ ଓ ଦୂରଦୃଷ୍ଟି ସମ୍ପନ୍ନ ଶାସକପକ୍ଷରେ ଏ ଦୁଇର ସମନ୍ୱୟ ସୃଷ୍ଟି କରିବା ଉଚିତ୍ । ରେଳଗାଡ଼ି ଚାଲୁଚି । ପ୍ରତ୍ୟେକ ମୁହୂର୍ତ୍ତରେ ପରିବର୍ତ୍ତନ ହେଉଚି ସତ, କିନ୍ତୁ ରେଳଗାଡ଼ି ରେଳଗାଡ଼ି ରହିଚି ।

ଡହରାନନ୍ଦ ଧମକ ଦେଇ କହିଲେ, ବସ ସ୍ୱପ୍ନେଶ୍ୱର ! ପୁଣି ତୁମର ଦୋଷ ହେଲା । କଥାରେ ବାଧା ଦିଅନା । ହଁ.... ତା'ପରେ...

...ସେ ସକାଳୁ ଚାଲିଯାଆନ୍ତି ସାଇକେଲରେ ଖାକି ପେଣ୍ଟ ଓ ଖାକି କାମିଜ ପିନ୍ଧି ହୁଇସିଲ୍ ମାରୁ ମାରୁ । ମୁଣ୍ଡ ପଛବାଳ ଏକଦମ୍ ମୁଣ୍ଡ ତାଳୁପର୍ଯ୍ୟନ୍ତ କ୍ଷୁରରେ ଚଞ୍ଚାହେବା ଭଳି ପତଳା ହୋଇ କଟା ଓ ସାମନାରେ ସାମାନ୍ୟ ବାଳ । ଆଃ, କି ସୁନ୍ଦର ଦୃଶେ ତାଙ୍କୁ ସେ ବେଶରେ....

ଆବେ ଡହରା, ଶ-, ତୋ'ର ମୁଣ୍ଡ ଖରାପ ହୋଇଗଲାଣି କି ? ନା ତୁ ଏକଦମ୍ ଲଫଙ୍ଗା ବୟେଇ ବଜାରି ହୋଇଗଲୁଣି ? ମଦନ ଘୃଣାଭରି କହିଲେ ।

ବସ ମଦନାନନ୍ଦ, ଡହରା ଧ୍ୟାନଗମ୍ଭୀର ସ୍ୱରରେ କହିଲେ, ମୋର ରୁଚି ସମ୍ବିଧାନ ଓ ଆଧୁନିକ ରୁଚିସମ୍ମତ, ଆଉ ତୋର ରୁଚି, ହ୍ୟାପ ଛି, ସମ୍ବିଧାନବିରୋଧୀ ଓ ନିହାତି ପୁରୁଣା କାଳିଆ । ଯୁଗ ଚାହୁଁଛି ଯେ ପୁରୁଷ ଓ ନାରୀ ଦୁହେଁ ସମାନ କାର୍ଯ୍ୟକ୍ଷମ ହେବେ, ସମାନ ରୋଜଗାର କରିବେ, ସମାନ ଅଧିକାର ପାଇବେ । ତାହା ହେଉଚି ଓ ହେବ, କେହି କେହି ରୋଧ କରିପାରିବେ ନାହିଁ । ଅତଏବ ବର୍ତ୍ତମାନ ରୁଚି ବଦଳିବ, ଯୌନ ଆକର୍ଷଣ ବଦଳିବ, କବିତା ଓ ସାହିତ୍ୟ ବଦଳିବ । ବଦଳୁଚି ଅନ୍ୟାନ୍ୟ ଦେଶମାନଙ୍କର ଏବଂ ସେ ଦେଶମାନେ ଉନ୍ନତି ପଥରେ ଆଗେଇ ଚାଲିଛନ୍ତି । ଆମ ଦେଶରେ ହେବ ଓ ମୋର ହୋଇସାରିଚି । ବୁଝିଲ ବସ ! ଚୁପ୍‌କର ।....ତା'ପରେ...

...ବୟଲର ତାପ କମିଆସିଲେ ସେ ଯେତେବେଳେ ତାପମାନ ଯନ୍ତ୍ରରେ ଛୁଞ୍ଚର ଅବସ୍ଥିତି ଦେଖି ବୟଲର ଅଗ୍ନ୍ୟୁଦ୍‌ଗାରୀ ମୁହଁ ମେଲାକରିଦେଇ ପ୍ରକାଣ୍ଡ ଫାଉଡ଼ାରେ କୋଇଲା ନିକ୍ଷେପ କରନ୍ତି ବା ମଜୁରିଆମାନେ କିଛି ଗୋଟାଏ ଭାରି ଲୁହା ଠେଲି ଦେଉଥିବାବେଳେ ସେ ଯେତେବେଳେ 'ଖବରଦାର' ବୋଲି ଚିତ୍କାର କରନ୍ତି, ସେତେବେଳେ ମୁଗ୍ଧ ହୋଇ ମୁଁ ଦେଖୁଥାଏ ।

ଦିନେ ସେ କାରଖାନାର ଅବସର ସମୟରେ ହୋଟେଲରେ ବସି-ସେ ଦୁଇବେଳା ହୋଟେଲରେ ହିଁ ଖାଆନ୍ତି-ଦୁଇଟି କୁକୁଡ଼ା ରୋଷ୍ଟ ଚୋବାଉଥାନ୍ତି ? ଆଃ, କି ସୁନ୍ଦର ସେ ଦିଶୁଥାନ୍ତି ସେତେବେଳେ । ମୁଁ ଯାଇ ତାଙ୍କ ପାଖରେ ବସିଲି ।

ହଠାତ୍ ରାଗିଯାଇ ସେ ପାଟିକରି ଉଠିଲେ, ହଟୋ ହିଁୟାସେ, ଏ ଜାୟଗା ଔରତକେ ଲିୟେ...

ମଦନ ଗୋଟାଏ ପ୍ରଚଣ୍ଡ ତାଳିମାରି କହିଲେ, ବାଃ ବାଃ, ଏକଦମ୍ ମିଳିଯାଉଛି ସବୁ କଥା । ଆଚ୍ଛା, ସେ କଅଣ ଖୁବ୍ ବାଙ୍ଗର ।

ହଁ, ଡହରାନନ୍ଦ କହିଲେ, ତାକୁ ଚିହ୍ନୁନା କଅଣ ?

-ନା, କିନ୍ତୁ ବ୍ୟାସଦେବ ଚିହ୍ନନ୍ତି । ସେ ଭାଗବତରେ କହିଛନ୍ତି-କଳିକାଳରେ ନାରୀମାନେ ଖର୍ବକାୟା, ଅଧିକ ଭୋଜନପ୍ରିୟା, କଟୁଭାଷିଣୀ, ଛଳନାପଟୁ ଓ ଯଥେଷ୍ଟ ସାହସୀ ହେବେ । ଆଉ ପୁରୁଷମାନେ ସ୍ତ୍ରୈଣ ହେବେ । ନାରୀମାନଙ୍କ ସବୁ ଭାବ ପ୍ରେମମୂଳକ ନ ହୋଇ ସୁରତମୂଳକ ହେବେ । ଆଚ୍ଛା, ସେ କାରଖାନା ମାଲିକ କଅଣ କିଳାପୋତେଇ ବ୍ୟବସାୟ କରେ ?

ଡହରାନନ୍ଦ କହିଲେ, ଆରେ ବାଃ, ପାକିସ୍ତାନକୁ ଚୋରା ରପ୍ତାନି କରି ଓ ବିଦେଶରୁ ସୁନା ଚୋରା ଆମଦାନୀ କରି ତ ସେ ଆଜି କ୍ରୋଡ଼ପତି । ସେହି ତ ତାର ଅସଲ ବ୍ୟବସାୟ । ଏ

କାଉଖାନାଟା ଖାଲି ନାମକୁ ମାତ୍ର, ବା'କୁ ବଡ଼ା । ବା ବି କାହିଁ !

ମଦନ ଅଧିକ ଆନନ୍ଦରେ କହିଲେ, ବାସ୍ ବାସ୍ । ଏକଦମ୍ ମିଳିଗଲା । ବ୍ୟାସଦେବ କହିଚନ୍ତି କଳିରେ ନୀଚାଶୟ ପ୍ରବଞ୍ଚକ ବଣିକମାନେ କ୍ରୟ-ବିକ୍ରୟ କରିବେ । ହ୍ୟାପ, ସବୁ ଲକ୍ଷଣ ଜୁଟିଗଲା ଏକା ଜାଗାରେ । ଏଥର ଭଗବାନ ନିଜେ ଅବତୀର୍ଣ୍ଣ ହେବେ । ''ଯଦାଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ..''

ରଖ୍ ତୋ ବ୍ୟାସଦେବ, ବୁଦ୍ଧଦେବ, ଡହରାନନ୍ଦ ରାଗିଯାଇ କହିଲେ, ହ୍ୟାପ ସେ ନାଁ ଗୁଡ଼ାକ ଧରି ଆଉ ରଗାଅନା ମୋତେ । ମୁଁ ଆଉ କହିବି ନାହିଁ । ଯାଃ, ବନ୍ଦ କଲି ମୋ କଥା ।

ଆମେ ସମସ୍ତେ ଅନୁନୟ ବିନୟ କଲୁ । ତ୍ରିଲୋଚନ ଛିଡ଼ାହୋଇ ହାତ ଯୋଡ଼ି କହିଲେ- ଗୁରୁଦେବ, କହନ୍ତୁ ଆପଣ, ଆମେମାନେ ଆପଣଙ୍କ ଅପୂର୍ବ ଜ୍ଞାନପୂର୍ଣ୍ଣ ବୃତ୍ତାନ୍ତ ଶୁଣି ସାତିଶୟ ଆନନ୍ଦିତ ହେବୁନାହିଁ କେବଳ, ଆମ୍ଭମାନଙ୍କର ସମସ୍ତ ପାପ ସୂର୍ଯ୍ୟୋଦୟେ କୁହେଳିକାବତ୍ ଦୂରୀଭୂତ ହେବ । ନରାଧମ ମଦନାନନ୍ଦର ମୂର୍ଖ କଥା ଆପଣଙ୍କ ଭଳି ବିଜ୍ଞ ବ୍ୟକ୍ତିକୁ ବିଚଳିତ କରିପାରେ କି ? ଆମେ ସମସ୍ତେ ସମସ୍ୱରରେ କହିଲୁ, ''ନୈବ ଚ ନେବଚ ।'' ଡହରାନନ୍ଦ ପ୍ରସନ୍ନ ବଦନରେ ପଚାରିଲେ- ହଁ, କଅଣ କହୁଥିଲିଟି ?

ମୁଁ କଥାର ଖିଅ ଧରାଇଦେଲି, କଳାବନ୍ତୀ ଦୁଇଟି କୁକୁଡ଼ା ରୋଷ୍ଟ ଚର୍ବଣ କରୁଥିଲେ, ଆଉ...

ହଁ ହଁ, ଡହରାନନ୍ଦ ପୁଣି ଆରମ୍ଭ କଲେ, ସେ ମୋତେ ଉଠିଯିବାକୁ କହିଲେ । ମୁଁ ବି କହିଲି, ହାମ୍ ନେହିଁ ଉଠେଙ୍ଗେ ଜବ୍ଭି । ଏଠି ବସିବାକୁ ମୋର ସମାନ ଅଧିକାର ଅଛି ।

ଏତିକି କହିଚି ଆଉ ଯାଏ କୁଆଡ଼େ ? କଳାବନ୍ତୀ ଯେ ବକ୍ସିଂରେ କେତେଥର ପୁରସ୍କାର ପାଇଚନ୍ତି ମୋତେ କଅଣ ସେ କଥା ଜଣାଥିଲା । ଠିକ୍ ମୋ ନାକ ଉପରେ ଦେଲେ ଥୋଇ ଏକ ବାଇଶିପଲିଆ ମୁଥ । ମଥା ମୋର ଘୂରିଗଲା, ଆଖିରୁ ସୋରିଷ ଫୁଲ ବାହାରିଗଲା, ଚାରିଆଡ଼ ଅନ୍ଧାର ଦିଶିଲା; କିନ୍ତୁ ମୁଁ ସମ୍ଭାଳି ନେଲି । ଛାଡ଼ିଲି ଏକ ମୁଥ ତାଙ୍କ ନାକକୁ ଲକ୍ଷ୍ୟକରି । ଅଦ୍ଭୁତ ଦକ୍ଷତା ଓ କ୍ଷିପ୍ରତା ସହ ମୁଣ୍ଡ ଘୁଞ୍ଚାଇନେଇ ସେ ଥୋଇଲେ ଆଉ ଏକ ମୁଥ ମୋ ନାକ ଉପରେ । ଗୋଟାଏ ଲୁହା ମୁଦ୍‌ଗର ଯେମିତି ପଡିଲା ମୋ ନାକ ଉପରେ । ଦରଦର କରି ରକ୍ତ ବାହାରିଲା ନାକରୁ । ମୁଁ ନଥିକିନା ବସି ପଡ଼ିଲି । ସାଙ୍ଗେ ସାଙ୍ଗେ ଛାତି ଉପରେ ଏକ ପ୍ରଚଣ୍ଡ ଗୋଇଠା । ଏଥର ଚିତ୍‌ପଟାଙ୍ଗ ହୋଇ ପଡ଼ିଗଲି । ସେତେବେଳେ ମୁଁ ପ୍ରାୟ ହତଜ୍ଞାନ । ସେ ଆଉ ଗୋଟାଏ ଗୋଇଠା ଦେବାକୁ ଯାଉଥିଲେ, ଅନ୍ୟାନ୍ୟ ଲୋକେ ତାଙ୍କୁ ଜୁଣ୍ଟାଇ ଧରି କହିଲେ, ଛୋଡ଼ିଏ ଛୋଡ଼ିଏ, ନାଦାନ ବଚ୍ଚା ହେୟ । ହାତ ଝାଡ଼ିଝୁଡ଼ି ଦେଇ ସେ ଯୁଦ୍ଧଜୟୀ ବୀର ଭଳି ପଦକ୍ଷେପ କରି ନିଜ ଜାଗାରେ ବସି ଅର୍ଦ୍ଧଭୁକ୍ତ କୁକୁଡ଼ା ଖାଇବାକୁ ଲାଗିଲେ ।

ମୋତେ ପ୍ରଥମେ ଭାରି ଲଜ୍ଜା ଲାଗିଲା । ଅନ୍ୟ ପୁରୁଷମାନଙ୍କୁ ଚାହିଁଲି କରୁଣଭାବରେ, ପୁରୁଷ ଜାତି ପ୍ରତି ଏ ଅପମାନର ପ୍ରତିଶୋଧ ନେବାକୁ; କିନ୍ତୁ ଦେଖିଲି ସମସ୍ତେ ଅମ୍ଲାନ ବଦନରେ ଖାଇବାରେ ଲାଗିଛନ୍ତି, ଯେମିତି କିଛି ଘଟିନାହିଁ, ମୋ ଆଡ଼କୁ ଚାହୁଁ ବି ନାହାନ୍ତି କି କାହାରି ମୁହଁରେ ଅପମାନର କୌଣସି ଚିହ୍ନ ନାହିଁ । ମୁଁ ବି ଖାଇବାକୁ ବସିଲି ଅନ୍ୟ ଜାଗାରେ । ଖାଇପାରିଲି ନାହିଁ ।

କିନ୍ତୁ ଅଦ୍ଭୁତ କଥା-ଅଦ୍ଭୁତ କାହିଁକି, ଯୁଗ ଅନୁସାରେ ଏହା ସ୍ୱାଭାବିକ-ତା'ପରେ ମୁଁ ତାଙ୍କ ପ୍ରତି ଆହୁରି ଆକୃଷ୍ଟ ହେଲି । ହେଲେ ଆଉ ଆଗେଇବାକୁ ସାହସ କଲିନାହିଁ, କେବଳ ଅସହାୟଭାବରେ ଥରେ ଥରେ ତାଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କରିବା ଛଡ଼ା ।

ଏମିତି ଥାଏ । କିଛିଦିନ ଗଲା । ଏହି ସମୟରେ ଆସିଗଲା ନିର୍ବାଚନ । କଳାବନ୍ତୀ ଥାଆନ୍ତି ନେତୃସ୍ଥାନୀୟା, ସେ ଛିଡ଼ାହେଲେ । ବାପ୍‌ରେ, କି କାର୍ଯ୍ୟଦକ୍ଷତା ତାଙ୍କର ! ଖଣ୍ଡେ ଜିପ୍ ଗାଡ଼ି ଚଳାଇ ସେ ଚରକି ପରି ବୁଲୁଥାଆନ୍ତି ତାଙ୍କ ମଣ୍ଡଳୀର ଏ ମୁଣ୍ଡରୁ ସେ ମୁଣ୍ଡ । ଦିନକେ କୋଡ଼ିଏରୁ ତିରିଶ ଦୀର୍ଘ ବକ୍ତୃତାମାନ ଦେଇ । ଆମ ନେତାଙ୍କୁ ବି ସେ ବଳିଗଲେ । ସବୁଠି ହଜାର ହଜାର ଜନତା ଏକସ୍ୱରରେ କହୁଥାନ୍ତି, କଳାବନ୍ତୀର ଜୟ, ସମସ୍ତେ ଜାଣିଲେ ତାଙ୍କର ବିଜୟ ନିଶ୍ଚିତ ।

ଦିନେ ସେ ପ୍ରଚାର କାର୍ଯ୍ୟରେ ଯାଉଥାଆନ୍ତି ଖୁବ୍ ଜୋର୍‌ରେ ଜିପ୍‌ଗାଡ଼ି ଚଳାଇ । ମୁଁ ଆସୁଥାଏ ବିପରୀତ ଦିଗରୁ । ଅନେକ ଦିନ ଆଗରୁ ତାଙ୍କର ଦର୍ଶନ ମୁଁ ପାଇ ନ ଥାଏ, ହଠାତ୍ ଦେଖି ମୁଁ ମୁଗ୍ଧ ହୋଇ ଛିଡ଼ାହୋଇଗଲି ରାସ୍ତାକଡ଼ରେ । ଜିପ୍ ଗାଡ଼ି କିନ୍ତୁ ମୋ ଆଡ଼କୁ ମାଡ଼ିଆସିଲା । ବଞ୍ଚିରହିବାର ସ୍ୱାଭାବିକ ପ୍ରବୃତ୍ତି ମୋତେ ରାସ୍ତା ବାହାରକୁ ଠେଲି ଦେଲା ସତ, କିନ୍ତୁ ତଥାପି ମୋ ଗୋଡ଼ ଉପରେ ଗୋଟାଏ ଚକ ମାଡ଼ିଗଲା । ମୋର କିଛି ସେମିତି ହେଲାନାହିଁ, ତଳେ କଚାଡ଼ି ପଡ଼ିଗଲି ମାତ୍ର, ମୁଣ୍ଡ ଟିକିଏ ଖଣ୍ଡିଆ ହୋଇଗଲା । ଗୋଡ଼ର କିଛି ହେଲାନାହିଁ ସୌଭାଗ୍ୟକୁ ।

ଏତେ ଜୋର୍‌ରେ ଜିପ୍ ସେ ଚଳାଉଥିଲେ ଯେ ଖୁବ୍ ଜୋର୍‌ରେ ବ୍ରେକ ଦେବାସତ୍ତ୍ୱେ ଗାଡ଼ି ଅନେକ ଦୂରରେ ଯାଇ ଅଟକିଲା । ସେ ଓହ୍ଲାଇ ଆସି ମୋ ହାତଧରି ଉଠାଇ ଦେଲେ । ସେଇ ମୁହୂର୍ତ୍ତରେ ମୋର ସବୁ ବ୍ୟଥା ଦୂର ହୋଇଗଲା । ହୃଦୟର ନିଭୃତ ଗହ୍ୱରରୁ ଏକ ଅପୂର୍ବ ବେଦନାମୟ ଆନନ୍ଦ ଉପରକୁ ଉଠିଆସି ମୋର ବାକ୍‌ରୋଧ କରିଦେଲା । ନୟନରୁ ମୋର ନୀର ବୋହିବାକୁ ଲାଗିଲା ।

'ଫୁଃ ଫୁଃ' ଫୁତ୍‌କାର ଦେଇ ସେ ପୁଣି ଜିପ୍ ଚଳାଇ ଚାଲିଗଲେ । ଗଲାବେଳେ ହାତ ହଲାଇ କହିଗଲେ, ଟା ଟା ।

କିନ୍ତୁ ସେଇଦିନ ସନ୍ଧ୍ୟାବେଳେ ସେ ମୋ ଘରକୁ ଝଡ଼ପରି ପଶିଆସିଲେ । ମନେହେଲା ସେ ଭାରି ବିଚଳିତା । ମୋତେ ଦେଖି ସେ କହିଲେ, ହ୍ୟାଲୋ, ଶୁଣିଚ, ପୁଲିସ୍ ଥାନାରେ କିଏ ମୋ ନାମରେ କହିଦେଇଚି ଯେ ମୁଁ ତୁମ ଉପରେ ଜିପ୍ ମଡ଼ାଇଦେଇଚି ଅସାବଧାନଭାବରେ ଜିପ୍ ଚଳାଉଥିବାରୁ । ତୁମେ ନିଶ୍ଚୟ ମୋତେ ଏତେବେଳେ ବିପଦରେ ପକାଇବ ନାହିଁ, ଜାଣେ । ତୁମେ ମୋତେ ବିବାହ କରିବାକୁ ଚାହଁ, ଜାଣେ । ଆସ ବିବାହ କରିବା । ଭାବ ନାହିଁ ଯେ ଏଟା କୂଟନୈତିକ ବିବାହ । ମୁଁ ଅନେକ ଦିନରୁ ତୁମର ମୋ ପ୍ରତି ଭାବ ଲକ୍ଷ୍ୟ କରିଚି । ମୁଁ ରାଜି, ଆସ, କିନ୍ତୁ ଗୋଟିଏ ସର୍ତ୍ତରେ ବିବାହ କରିବାକୁ ମୁଁ ରାଜି । ତୁମେ ମୋର କୌଣସି ସ୍ୱାଧୀନତାରେ ବାଧା ଦେବନାହିଁ ଏବଂ ମୁଁ ଭିନ୍ନ ଘରେ ବାସ କରିବି । ରାଜି ?

ଯନ୍ତ୍ରଚାଳିତବତ୍ କହିଲି, ରାଜି ।

ତେବେ ମୋ ସହିତ ଆସ, ସେ କହି ଆଗେଇ ଚାଲିଲେ ।

ଯନ୍ତ୍ରଚାଳିତ୍‌ବତ ତାଙ୍କ ପଛେ ପଛେ ଗଲି । ସେ ଜିପ୍ ଗାଡ଼ିରେ ଷ୍ଟିଅରିଂ ଧରି ବସି ମୋତେ

ତାଙ୍କ କଡ଼ରେ ବସିବାକୁ ସଙ୍କେତ ଦେଲେ । ବସିଲି, ଜିପ୍‌ଗାଡ଼ି ଚାଲିଲା । କେଉଁଆଡ଼େ ଗଲା ମୁଁ କହିପାରିବି ନାହିଁ । ମୁଁ କେବେ ସେ ନିର୍ଜନ ଅଞ୍ଚଳ ଦେଖି ନଥିଲି । ଜିପ୍ ରହିଲା ଗୋଟାଏ ନିର୍ଜନ ଘର ସାମନାରେ । ସେ ସେହି ଘରଭିତରକୁ ଗଲେ । ତାଙ୍କ ପଛେ ପଛେ ମୁଁ ବି ଗଲି । ସଙ୍ଗେ ସଙ୍ଗେ ପ୍ରବେଶ କଲେ ଏକ ଅଦ୍ଭୁତ ପୋଷାକପିନ୍ଧା ଲମ୍ବା ପୁରୁଷ । ସେ ଆମକୁ ଦେଖି ଟିକିଏ ହସି ଅଭିବାଦନ କରି ଅଦ୍ଭୁତ ଭାଷାରେ କଅଣ ଅଳ୍ପ କହିଲେ । ତା'ପରେ ସେ କଳାବନ୍ତୀକୁ କହିଲେ, ତୁମର ସହକର୍ମୀକୁ ମାର ଏକ ପ୍ରଚଣ୍ଡ ଥାପଡ଼ । ଏହାହିଁ ଏ ବିବାହର ପଦ୍ଧତି । ସାଙ୍ଗେ ସାଙ୍ଗେ କଳାବନ୍ତୀ ମାରିଲେ ଏକ ଥାପଡ଼ । ସମ୍ଭାଳିନେଲି, କାଟିଲା ନାହିଁ ମୋତେ । ତା'ପରେ ସେ ଅଦ୍ଭୁତ ପୁରୋହିତ ମୋତେ କହିଲେ, ତୁମେ ବି ତୁମର ସହକର୍ମୀକୁ ସେମିତି ଏକ ଥାପଡ଼ ମାର ।

ମୁଁ ହାତ ଉଠାଇଲି ମାରିବାକୁ, କିନ୍ତୁ ମୁଗ୍ଧଭାବରେ ଅନାଇ ରହିଲି ତାଙ୍କୁ । ହାତ ମୋର ଉଠିଲାନାହିଁ । କହିଲି, ନା, ପାରିବି ନାହିଁ ।

ପୁରୋହିତ କହିଲେ, ଆଚ୍ଛା, କିଛି କ୍ଷତି ନାହିଁ । ଏ ଗୋଟାଏ ପଦ୍ଧତି ମାତ୍ର । ଯାଅ ତୁମ୍ଭେମାନେ, ଆଜିଠାରୁ ତୁମ୍ଭେ ଦୁହେଁ ଚୁକ୍ତିବଦ୍ଧ ସହକର୍ମୀ, ଯାହାକୁ ଅନେକ କୁସଂସ୍କାରରେ ପଡ଼ି କହନ୍ତି ସ୍ୱାମୀ-ସ୍ତ୍ରୀ ।

ମଦନ ପୁଣି ଏକ ପ୍ରଚଣ୍ଡ ତାଳିମାରି କହିଲେ, ବ୍ୟାସଦେବ କହିଚନ୍ତି କଳିକାଳରେ ବିବାହ ଚୁକ୍ତି ଅନୁସାରେ ହେବ । ତେଣୁ...

ରଖ୍ ତୋ ବ୍ୟାସ, ଚାପ, ବୃଦ୍ଧ-ଡହରାନନ୍ଦ ଧମକ ଦେବାରୁ ମଦନ ଚୁପ୍‌କରିଗଲେ ।

...ନିର୍ବାଚନ ଥାଏ ଅନେକ ଦିନ । ଏହି ସମୟରେ କାରଖାନାରେ ମୋ' ଉପର ଚାକିରି ଖାଲିପଡ଼ିଲା । ମୁଁ କଳାବନ୍ତୀଠାରୁ ଚାକିରିରେ ବେଶିଦିନ ଥିବାରୁ ମୋର ପାଇବା କଥା ସେ ଚାକିରି; କିନ୍ତୁ କଳାବନ୍ତୀ ଦରଖାସ୍ତ କରି ବସିଲେ ଯୋଗ୍ୟତା ଅନୁସାରେ ସେ ସେହି ଚାକିରିପାଇଁ ହକ୍‌ଦାର ।

ସେ ଦରଖାସ୍ତ ମୁଁ ପଢ଼ିଲି । ଅବଶ୍ୟ ସେ ମୋତେ କେବେହେଁ ପଢ଼ିବାକୁ ଦେଇନଥିଲେ କି ସେ ବିଷୟରେ ମୋ ସହିତ କେବେ ଆଲୋଚନା କରିନଥିଲେ । ମୁଁ ଅଫିସରେ ତାଙ୍କ ଦରଖାସ୍ତ ଦେଖି ପଢ଼ିଥିଲି । ଦିନେ ସାହସ ଭରି ତାଙ୍କୁ କହିଲି, ଶୁଣୁଚ, ତୁମର ମୋ ବିରୁଦ୍ଧରେ ଦରଖାସ୍ତ କରିବା ଓ ସେଥିରେ ମୋର ବଦ୍‌ଗୁଣ ସବୁ ଲେଖିବା କଅଣ...

ସେ ରୋଷକଷାୟିତ ନୟନରେ ମୋତେ ଚାହିଁ କହିଲେ, ଖବରଦାର, ମୋର ମଧ୍ୟ ସେ ଚାକିରିପାଇଁ ସମାନ ଅଧିକାର ଅଛି । ମୋ ଅଧିକାର ହାସଲ କରିବାରେ ତୁମେ ମୋର ସହକର୍ମୀ ହିସାବରେ ବାଧା ଦେଇପାରିବ ନାହିଁ । ସ୍ୱାମୀତ୍ୱ ମୁଁ ସ୍ୱୀକାର କରେନାହିଁ । ମୁଁ ଶିକ୍ଷିତା, କାର୍ଯ୍ୟଦକ୍ଷା ନାରୀ, ତୁମର ପଦାନତା ସ୍ତ୍ରୀ ନୁହେଁ ।

ଏ ସମାନ ଅଧିକାର ମୋତେ ମହାଦ୍ୱନ୍ଦରେ ପକାଇଲା । ଏ କଥା ସତ ଯେ, ସେ ଯଦି ମୋର ସ୍ତ୍ରୀ ନ ହୋଇ ଜଣେ ପୁରୁଷ ହୋଇଥାନ୍ତେ ତେବେ ମୋ ସହିତ ପ୍ରତିଯୋଗିତା କରିବାର ତାଙ୍କର ସମାନ ଅଧିକାର ଥାଆନ୍ତେ; କିନ୍ତୁ ସାମାଜିକ କ୍ଷେତ୍ରରେ ସ୍ତ୍ରୀ ଓ କର୍ମକ୍ଷେତ୍ରରେ ସହକର୍ମୀ ଏପରି ଦୁଇ କ୍ଷେତ୍ରରେ ସମ୍ପୂର୍ଣ୍ଣ ବିରୋଧାତ୍ମକ ଭାବ ସହଜଭାବରେ ପୋଷଣ କରିବାକୁ ମୁଁ ସମ୍ପୂର୍ଣ୍ଣ ଅକ୍ଷମ ହେଲି । ହୁଏତ ଏହା ମୋର ବହୁଯୁଗର ସଂସ୍କାର ଥିବାରୁ ଦୁଇକୁ ଏକାମନରେ ସ୍ଥାନ ଦେଇପାରୁନାହିଁ । ହୁଏତ

କିଛି ବର୍ଷ ପରେ ଏହା ସହଜ ହୋଇଯିବ; କିନ୍ତୁ ତଥାପି.. ତଥାପି... ଛାଡ଼ ସେ ଗହନ ତତ୍ତ୍ୱକଥା ।

କାରଖାନାର ଜେନେରାଲ୍ ମେନେଜର ମୋ ବିରୁଦ୍ଧରେ ବିଚାର କରି ମୋ ସ୍ତ୍ରୀକୁ କର୍ମକ୍ଷେତ୍ରରେ ମୋ ଉପରକୁ ଉଠାଇଦେଲେ । ବଡ଼ ଆଘାତ ପାଇଲି ମନରେ । କାମରେ ଆଉ ମନ ଲାଗିଲାନାହିଁ । ଘରେ ସେ ମୋ ସହିତ ବେଶ ଭଲ ବ୍ୟବହାର କରନ୍ତି; କିନ୍ତୁ କାରଖାନାରେ ମୁଁ ଡ଼େରିକରି ଗଲେ ବା ଭୁଲ୍ କଲେ ସେ ମୋତେ ନିର୍ମମ ଭାବରେ ଗାଳି ଦିଅନ୍ତି । ଏମିତି କି ଜେନେରାଲ୍ ମେନେଜରଙ୍କୁ ରିପୋର୍ଟ କରି ଥରେ ମୋର ଦଶଦିନର ଦରମା ବି କଟାଇଦେଲେ ।

ଅସହ୍ୟ ହେଲା । ମର୍ମେ ମର୍ମେ ମୁଁ ମରିଯାଉଥାଏ ଅସହ୍ୟ ବେଦନାରେ । ଆଉ ପାରିଲି ନାହିଁ । ଚାକିରୀ ଛାଡ଼ିଦେଲି । ଦିନାକେତେ ବୁଲିଲି ଏଣେତେଣେ ବମ୍ବେଇରେ । ମୁଁ କୁଆଡ଼େ ଗଲି, କଅଣ ମୋ ମନକଷ୍ଟ, ଥରେ ସେ ଖବର ବି ନେଲେନାହିଁ ।

ତା' ପରେ ଗଲି ହିମାଳୟ, ଗୋପୀସାଧନା କରିବାକୁ । ସାଧନା ସାରି ସିଧା ତୁମ ପାଖକୁ ଆସିଲି । ଚାହା ଦିଅ-ଜୟ ରାଧେ, ଜୟ ରାଧେ ।

# ଇଚ୍ଛା ପୂରଣ

ଭଗବାନ୍‌ଙ୍କ ଦପ୍ତରରେ ''ଇଚ୍ଛାପୂରଣ'' ବିଭାଗ । ପ୍ରଥମେ ପଡ଼ିବ ଗ୍ରହ ଉପଗ୍ରହ ସୃଷ୍ଟି ବିଭାଗ ।

ତା'ପରେ ଜୀବସୃଷ୍ଟି ବିଭାଗ । ହଜାର ହଜାର ଚିତ୍ରକର ବସି ନାନା ଡିଜାଇନର ଜୀବମାନଙ୍କର ଚିତ୍ର ଅଙ୍କନ କରୁଛନ୍ତି । ସେଗୁଡ଼ିକ ସେ ବିଭାଗର କର୍ତ୍ତା ଅନୁମୋଦନ କରିବା ପରେ ଭଗବାନଙ୍କ ପାଖରେ ପେଶ୍ କରାହେଉଛି ତାଙ୍କର ଶେଷ ଅନୁମୋଦନ ପାଇଁ ।

ଜୀବସୃଷ୍ଟି ବିଭାଗ ପରେ ଜୀବ ଲୋପ ବୃଦ୍ଧି-ସ୍ଥିତି-ବିଭାଗ । ଏଠି ମଧ୍ୟ ହଜାର ହଜାର ଦେବତାମାନେ ବସି କେଉଁ କେଉଁ ଶ୍ରେଣୀର ଜୀବ କିପରି ଭାବରେ ଲୋପ କରାଯିବ ବା ବୃଦ୍ଧି କରାଯିବ ତାହା ବିଚାର କରି ଭଗବାନ୍‌ଙ୍କୁ ଜଣାଉଛନ୍ତି ।

ଶେଷୋକ୍ତ ବିଭାଗ ପରେ ପଡ଼ିବ ଇଚ୍ଛାପୂରଣ ବିଭାଗ । ଏମାନଙ୍କ ଛଡ଼ା ଆହୁରି ହଜାର ହଜାର ବିଭାଗର ଉପବିଭାଗ ଅଛି ।

ଦପ୍ତରର ଅନ୍ୟାନ୍ୟ ବିଭାଗଗୁଡ଼ିକ ତୁଳନାରେ ଇଚ୍ଛାପୂରଣ ବିଭାଗଟିର ପ୍ରାଧାନ୍ୟ କମ୍ । ହେଲେ ଏ ବିଭାଗର କର୍ମଚାରୀମାନେ ସର୍ବଦା କାର୍ଯ୍ୟବ୍ୟସ୍ତ ଏବଂ ବିଭାଗଟି ମଧ୍ୟ ଦିନରାତି ଖୋଲାଥାଏ । ଏ ବିଭାଗର ଗୋଟିଏ ଉପବିଭାଗରେ କେବଳ ମନୁଷ୍ୟମାନଙ୍କର ଇଚ୍ଛା ପୂରଣ ବିଷୟ ବିଚାର କରାଯାଏ । ଏ ଉପବିଭାଗର କାର୍ଯ୍ୟବିଧି ନିୟମ ଅନୁସାରେ ପ୍ରତ୍ୟେକ ମନୁଷ୍ୟ- ପ୍ରତ୍ୟେକ ଦିନର ଇଚ୍ଛାଗୁଡ଼ିକ ଉକ୍ତ ଉପବିଭାଗର କର୍ମକର୍ତ୍ତା ନିଜର ମତାନୁଯାୟୀ ଆନ୍ତରିକତାନୁସାରେ ସଜାଇ ଭଗବାନଙ୍କଠାରେ ପ୍ରତ୍ୟେକ ମୁହୂର୍ତ୍ତରେ ପେଶ୍ କରନ୍ତି । ଭଗବାନ୍ ଉକ୍ତ ପର୍ଯ୍ୟାୟକୁ ଅନୁମୋଦନ କଲେ କେଉଁ ଇଚ୍ଛା କେବେ ଏବଂ କିପରି ଭାବରେ ପୂରଣ କରିବାକୁ ହେବ ଆଦେଶ ଦିଅନ୍ତି । ଉପବିଭାଗୀୟ କର୍ମକର୍ତ୍ତାଙ୍କ ଇଚ୍ଛାଗୁଡ଼ିକର ଆନ୍ତରିକତାନୁସାରେ ପର୍ଯ୍ୟାୟ କରିବାକୁ ଭଗବାନ୍ ଯେ ସବୁବେଳେ ଅନୁମୋଦନ କରନ୍ତି ତା ନୁହେଁ । ବେଳେବେଳେ କୌଣସି ଗୋଟିଏ ଇଚ୍ଛା ବିଷୟରେ ଇଚ୍ଛାକାରୀ ବେଶି ଆନ୍ତରିକ ବୋଲି ମୁଖ୍ୟକର୍ତ୍ତା ମତ ଦେଲେହେଁ ଭଗବାନ୍ ତାହା ଅନୁମୋଦନ ନ କରି ଅନ୍ୟ ଗୋଟିଏ ଇଚ୍ଛା ବିଷୟରେ ଇଚ୍ଛାକାରୀ ବେଶି ଆନ୍ତରିକ ବୋଲି କହି ତାହା ପ୍ରଥମେ ପୂରଣ କରାଯିବାର ଆଦେଶ ଦିଅନ୍ତି । ପୁଣି ବେଳେବେଳେ କୌଣସି ଗୋଟିଏ ଇଚ୍ଛା ବିଷୟରେ ଭଗବାନ୍ ଆଦେଶ ଦିଅନ୍ତି ଯେ ଏହାର ପୂରଣ ମନୁଷ୍ୟର ସ୍ୱତନ୍ତ୍ର କ୍ଷମତାଭୁକ୍ତ ଦୃଷ୍ଟେ ସେ ନିଜେ ତାହାର ପୂରଣ ପାଇଁ ଚେଷ୍ଟା କରିବା ଉଚିତ୍ । ଅତଏବ ଭଗବାନଙ୍କ ଦପ୍ତରରୁ ତାହା ପାଇଁ କୌଣସି ସାହାଯ୍ୟ ମିଳିବା ଉଚିତ ନୁହେଁ । ଭଗବାନ୍‌ଙ୍କ ବିଚାରର ମୂଳମନ୍ତ୍ରଟି ବୁଝି ଇଚ୍ଛାଗୁଡ଼ିକୁ କ୍ରମାନ୍ୱୟରେ ସଜାଇବାରେ ଦକ୍ଷତା ଆସିବାକୁ ବିଭାଗୀୟ କର୍ମକର୍ତ୍ତାଙ୍କୁ ଅନେକ କାଳ ଲାଗେ । ତେଣୁ କୌଣସି କର୍ମକର୍ତ୍ତା ନୂତନ ନିଯୁକ୍ତ ହେଲେ

ସେ କାର୍ଯ୍ୟରେ ବିଭ୍ରାଟ ଘଟିବା ସ୍ୱାଭାବିକ ।

ମନୁଷ୍ୟର ଇଚ୍ଛାପୂରଣ ଉପବିଭାଗଟିର ପୁରାତନ ମୁଖ୍ୟକର୍ତ୍ତା ଅବସର ନେବାପରେ ବର୍ତ୍ତମାନ ଐଚ୍ଛିକ ସେ ପଦରେ ନୂତନ ନିଯୁକ୍ତ ହୋଇଛନ୍ତି । ଅନ୍ତର୍ଯ୍ୟାମୀ କ୍ଷମତା ମଧ୍ୟ ତାଙ୍କୁ ଦିଆହୋଇଯାଇଛି ।

ଭଗବାନ୍ ତାଙ୍କ ବିଶ୍ୱ ଅଫିସ ଘରେ ଅନନ୍ତ-ଚୌକିରେ ବସି ଜୀବ ସୃଷ୍ଟି-ବିଭାଗର ଡିଜାଇନଗୁଡ଼ିକ ତନଖି ଦେଖୁଛନ୍ତି । ମନୁଷ୍ୟମାନେ ମେଲେରିଆ ମଶା ବିରୁଦ୍ଧରେ ଅଭିଯାନ ଆରମ୍ଭ କରିବାପରେ ଉକ୍ତ ମଶାମାନଙ୍କର ଡିଜାଇନ ସାମାନ୍ୟ ବଦଳାଇ ଯେଉଁ ନୂଆ ଡିଜାଇନ ତିଆରି ହୋଇଚି, ତାହା ବର୍ତ୍ତମାନ କାର୍ଯ୍ୟକାରୀ କରାଯିବ କି ନା ସେ ବିଷୟରେ ଭଗବାନ୍ ଚିନ୍ତା କରୁଛନ୍ତି । ଜୀବ ଲୋପ ଓ ବୃଦ୍ଧି-ବିଭାଗର ଜୀବ ସ୍ଥିତି ବିଭାଗୀୟ କର୍ତ୍ତାଙ୍କ ମତ ଯେ ମଶାର ବିଲୋପ ସାଧନ କରିବା ମାନେ ମନୁଷ୍ୟଦ୍ୱାରା ଭଗବାନ୍‌ଙ୍କ ପରାଜୟ, ତେଣୁ ମଶାର ବିଲୋପ ସାଧନ କଦାପି ଉଚିତ ନୁହେଁ । ଭଗବାନ୍ ଉକ୍ତ ମତ ପଢ଼ି ସ୍ମିତହାସ୍ୟ କଲେ । ସେ ହାସ୍ୟଦ୍ୱାରା କହିଦେଲେ, ପରାଜୟ ହିଁ ମୋର ଜୟ । ମୁଖ୍ୟକର୍ତ୍ତା ମତ ଦେଇଛନ୍ତି ଯେ ଉକ୍ତ ଶ୍ରେଣୀର ମଶକ ଲୋପକରି ମନୁଷ୍ୟର ରକ୍ତଶୋଷଣକାରୀ ଅନ୍ୟାନ୍ୟ ଜୀବର ନୂତନ ସୃଷ୍ଟି ହେଉ ଅଥବା ସେପରି ଯେତେ ଜୀବ ଅଛନ୍ତି ସେଗୁଡ଼ିକର ବୃଦ୍ଧି କରାଯାଉ ଏବଂ ସେମାନଙ୍କୁ ସଂଜୀବନୀ ରସ ଅଧିକ ମାତ୍ରାରେ ଦିଆଯାଉ ।

ଏହି ସମୟରେ ଦିଲ୍ଲୀ ପାର୍ଲାମେଣ୍ଟର ଡି.ଡି.ଟି ଓ ଛାରପୋକ ବିଷୟରେ ତୁମୂଳ ବାଦାନୁବାଦ ଭଗବାନ୍‌ଙ୍କ କର୍ଣ୍ଣଗୋଚର ହେଲା । ଭଗବାନ ସ୍ମିତହାସ୍ୟ କରି ଫାଇଲ୍‌ଗୁଡ଼ିକ ରଖିଦେଇ ଆଦେଶଦେଲେ ଯେ ମନୁଷ୍ୟମାନଙ୍କର ସେ ବିଷୟରେ ଶେଷ ନିଷ୍ପତ୍ତି ପର୍ଯ୍ୟନ୍ତ ଅପେକ୍ଷା କରାଯାଉ ଏବଂ ମୋର ସୃଷ୍ଟିତତ୍ତ୍ୱ ଜାଣିବାରେ ମନୁଷ୍ୟର ବୁଦ୍ଧି ଆଜି ପର୍ଯ୍ୟନ୍ତ କେତେ ଅଗ୍ରସର ହୋଇଚି ସେ ବିଷୟରେ ଗୋଟିଏ ସବିଶେଷ ବିବରଣୀ ଦିଆଯାଉ ।

ଜୀବ ସୃଷ୍ଟି ଓ ଜୀବ ଲୋପ ଏବଂ ବୃଦ୍ଧି ବିଭାଗର କର୍ତ୍ତାମାନେ ସେମାନଙ୍କ ଫାଇଲ୍ ଆଦି ନେଇ ଚାଲିଯିବା ପରେ ଐଚ୍ଛିକ ଫାଇଲ୍ ଆଦି ଦାଖଲ କଲେ । ପ୍ରଥମେ ପଡ଼ିଲା ଦୁର୍ଗାଚରଣବାବୁଙ୍କ ସେଦିନର ଇଚ୍ଛାଗୁଡ଼ିକ । ଐଚ୍ଛିକ ଅନ୍ତର୍ଯ୍ୟାମୀ କ୍ଷମତାବଳରେ ଦୁର୍ଗାଚରଣ ବାବୁଙ୍କ ସେଦିନର ଇଚ୍ଛା ଗୁଡ଼ିକର ଯେଉଁ ସର୍ବଶେଷ ବିବରଣୀ ଦେଇଛନ୍ତି, ତାହା ନିମ୍ନରୂପ ।

...ଦୁର୍ଗାଚରଣ ଜଣେ ମନୁଷ୍ୟ ଏବଂ ମନୁଷ୍ୟମାନଙ୍କ ଶାସନ ଦପ୍ତରରେ ଜଣେ ଉଚ୍ଚପଦସ୍ଥ କର୍ମଚାରୀ । ସେ ଜଣେ ଲେଖକ ମଧ୍ୟ । ମେଲେରିଆ ଜ୍ୱରରେ ଆକ୍ରାନ୍ତ ହୋଇ ଆରୋଗ୍ୟ ଲାଭ କରି ଥିଲେହେଁ ସେ ଦୁର୍ବଳ ହୋଇ ପଡ଼ିଥିବାରୁ ବର୍ତ୍ତମାନ ଦୁଇଅନୁଲିତା (ମନୁଷ୍ୟମାନଙ୍କ ଗଣନାରେ ଦୁଇମାସ) ଛୁଟି ନେଇ ଘରେ ବିଶ୍ରାମ କରୁଛନ୍ତି । କୌଣସି କାର୍ଯ୍ୟ ନ ଥିବାରୁ ତାଙ୍କର ଇଚ୍ଛାଗୁଡ଼ିକ ଅନେକ ଗୁଣ ବୃଦ୍ଧି ପାଇଛି । ସେଥିଭିତରୁ କେତେଗୁଡ଼ିଏ ଇଚ୍ଛା ଅତି ହାସ୍ୟସ୍ପଦ ଥିବାରୁ ସେଗୁଡ଼ିକର ଉଲ୍ଲେଖ କରିନାହିଁ, ଯଥା-ତାଙ୍କର ଗୋଟିଏ ଇଚ୍ଛା ଐଶ୍ୱରିକ ଶକ୍ତି ପାଇ ସେ ଶୂନ୍ୟରେ ଭ୍ରମଣ କରୁଛନ୍ତି । (ଭଗବାନ୍ ଏହିଠାରେ କହିଲେ, ଐଚ୍ଛିକ, ତୁମ୍ଭେ ସେ ଇଚ୍ଛାଗୁଡ଼ିକର ଉଲ୍ଲେଖ ନ କରି ଉଚିତ କରିଛ; କିନ୍ତୁ ତୁମ୍ଭେ ଉଲ୍ଲେଖ ନ କରିବାର କାରଣ ହାସ୍ୟାସ୍ପଦତା ଦେଖାଇବା ଉଚିତ ହୋଇନାହିଁ । କାରଣ ଅନେକ ସମୟରେ ଉକ୍ତ ପ୍ରକାର ହାସ୍ୟାସ୍ପଦ କାରଣ ଗୁଡ଼ିକ ହିଁ ମନୁଷ୍ୟ ବୁଦ୍ଧିର ବିକାଶ

ଆଣିଦେଇଛି; କିନ୍ତୁ ସେ ପ୍ରକାର ଇଚ୍ଛା ଗୁଡ଼ିକର ପୂରଣ କରିବା ମନୁଷ୍ୟର ସ୍ୱତନ୍ତ୍ର କ୍ଷମତାଭୁକ୍ତ ତାଲିକାରେ ମୁଁ ରଖିଛି । ତେଣୁ ସେଥିପାଇଁ ଐଶରିକ ସାହାଯ୍ୟ ଦିଆଯିବ ନାହିଁ ।

...ଅନ୍ୟ ଇଚ୍ଛାଗୁଡ଼ିକ ମୁଁ ଚିନ୍ତାର ସମୟ ଅନୁସାରେ ସଜାଇ ନିମ୍ନରେ ଦେଲି....

...ସକାଳୁ ଉଠିବାକୁ ଦୁର୍ଗାଚରଣଙ୍କ ଡେରି ହେଲା । ଅନେକ ରାତି ପର୍ଯ୍ୟନ୍ତ ନିଜକୁ କେନ୍ଦ୍ରକରି ଅନେକ କଳ୍ପନା ସେ କରିଛନ୍ତି । କିପରି ସେ ଖୁବ୍ ବଡ଼ ଲେଖକ ହୋଇଛନ୍ତି, ସାରା ପୃଥିବୀ ତାଙ୍କୁ ସମ୍ମାନିତ କରିଛି, ସବୁ ପୁରସ୍କାର ସେ ପାଇଛନ୍ତି । ପୁଣି, କିପରି ସେ ପୃଥିବୀରେ ବଡ଼ ବିଚାରକ ହୋଇଛନ୍ତି, ତାଙ୍କର ବିଚାରପଦ୍ଧତିରେ ସାରା ପୃଥିବୀ ଚମତ୍କୃତ ଇତ୍ୟାଦି ଭାବି ଭାବି ସେ କ୍ଳାନ୍ତ ହୋଇ ଶୋଇପଡ଼ିଥିଲେ ଅନେକ ରାତିରେ ।

...ସକାଳୁ ଉଠି ଦାନ୍ତ ଘଷୁ ଘଷୁ ପୁଣି ସେଇ ଭାବନାଗୁଡ଼ିକ ସେ ଭାବି ବସିଲେ । ଭାବୁ ଭାବୁ ନିଜର କଳ୍ପିତ କ୍ଷମତାରେ ସେ ମୁଗ୍ଧ ହୋଇଗଲେ । ଦାନ୍ତ ଘଷିସାରି ପାଇଖାନାରେ ମଧ୍ୟ ସେହି ଭାବନା । ଗାଧୋଇ ସାରି ସେ ଜଳଖିଆ ଖାଇ ବସି ମଧ୍ୟ ସେଇୟା । ଆଜି ତାଙ୍କର ବରା ଖାଇବାକୁ ଇଚ୍ଛାହେଲା । ସାନ ପୁଅକୁ ପଠାଇଲେ ବରା ଆଣିବାକୁ । ପଦ୍ମପତ୍ରରେ ମୋଡ଼ି ଚାରୋଟି ଗରମ ବରା ପୁଅ ଆଣିଦେଲା ।

...ବରାଗୁଡ଼ିକ ଖାଇସାରି ତେଲିଆ ହାତ ପଦ୍ମପତ୍ରରେ ପୋଛିଦେଲାବେଳକୁ ତାଙ୍କର ଛାତ୍ର ଅବସ୍ଥାର ଗୋଟିଏ ସ୍ମୃତି ହଠାତ୍ ମନେପଡ଼ିଲା । ସେତେବେଳେ ସେ ଥିଲେ ଦରିଦ୍ର । ତାଙ୍କର ସହପାଠୀ ବନ୍ଧୁ ଦୀନା ଥାଏ ନିକଟରେ ଗୋଟିଏ ବେଞ୍ଚପରି ଘରେ । ସକାଳୁ ଉଠି ଗାଧୋଇ ସାରି ଦୁର୍ଗାଚରଣ ଚାଲିଯାଆନ୍ତି ଦୀନା ଘରକୁ । ଦୁଇଟି ବରା ବୁଲା ବିକାଳି ଦେଇଯାଏ ଧାରସୂତ୍ରରେ । ସେଥିରୁ ଗୋଟିଏ ଖାଆନ୍ତି ଦୀନା ଓ ଆଉ ଗୋଟିଏ ଦୁର୍ଗାଚରଣ । ଖାଇସାରି ଦୁଇଜଣଯାକ ପଦ୍ମପତ୍ରରେ ହାତ ପୋଛି ପାଣି ଗିଲାସେ ଗିଲାସେ ପିଇ ଯେତେବେଳେ ବସନ୍ତି, ସେତେବେଳେ ସେମାନଙ୍କର ଭାବରୁ ମନେହୁଏ ଯେପରି ନାନା ଉପାଦେୟ ଆହାର ସେମାନେ କରିଛନ୍ତି ।

...ଆଜି ବରା ଖାଇସାରି ଦୁର୍ଗାଚରଣଙ୍କ ହଠାତ୍ ସେଇ ସ୍ମୃତିଟି ମୂହୂର୍ତ୍ତକ ପାଇଁ ମନରେ ଜାଗିଲା । ବନ୍ଧୁ ସହିତ ପ୍ରାୟ ପାଞ୍ଚବର୍ଷ ହେବ ଦେଖା ହୋଇନାହିଁ । ମୁହୂର୍ତ୍ତକ ପାଇଁ ତାଙ୍କର ଗୋଟିଏ ଇଚ୍ଛା ଜାଗିଲା, ଦୀନା ସାଙ୍ଗରେ ଦେଖା ହୁଅନ୍ତା କି !

...ପର ମୁହୂର୍ତ୍ତରେ କିନ୍ତୁ ଦୁର୍ଗାଚରଣଙ୍କ ମନେ ପଡ଼ିଗଲା ସେଇ ଉଜ୍ଜ୍ୱଳମୟ ଭବିଷ୍ୟତ ଭାବନା ସବୁ । ତରତର ହୋଇ ସେ ଉଠିଗଲେ ଖଟ ଉପରକୁ, ସେ ସବୁ ଭାବିବାକୁ ।

ଏହା ପରେ ଏତେ ବିଭିନ୍ନ ପ୍ରକାରର ଇଚ୍ଛା ତାଙ୍କ ମନ ଭିତରେ ଜାଗିଲା ଯେ ସେଗୁଡ଼ିକ ସଜାଇ ଲିପିବଦ୍ଧ କରିବା ମୋ ପକ୍ଷରେ ଅସମ୍ଭବ ହୋଇ ଉଠିଲା । ଯାହା ହେଉ ଯଥାସମ୍ଭବ ମୁଁ ସେଗୁଡ଼ିକ କ୍ରମାନ୍ୱୟରେ ଦେଉଛି ।

...ଖଟ ଉପରେ ଶୋଇପଡ଼ି ପ୍ରଥମେ ଭାବିବାକୁ ଲାଗିଲେ, ସେ ଜଣେ ବଡ଼ ନେତା ହୋଇଛନ୍ତି । କେବଳ ରାଜନୈତିକ ନେତା ନୁହେଁ, ଆଧ୍ୟାତ୍ମିକ ନେତା ବି । ତାଙ୍କର ଆଧ୍ୟାତ୍ମିକତା ବଳରେ ଭଗବାନ୍‌ଙ୍କୁ ସେ ପ୍ରତ୍ୟକ୍ଷ ଭାବରେ ପାଇଛନ୍ତି ଏବଂ ଭଗବାନ୍‌ଙ୍କୁ ପ୍ରାର୍ଥନାକରି ସେ ତାଙ୍କଦ୍ୱାରା ସବୁ କାର୍ଯ୍ୟ କରାଉଛନ୍ତି । (ଭଗବାନ ସ୍ମିତହାସ୍ୟ କଲେ) ପ୍ରାର୍ଥନା ବଳରେ ସେ ଚୀନା ସୈନ୍ୟଙ୍କୁ ଭାରତ

ସୀମାରୁ ହଟାଇ ଦେଇଛନ୍ତି ।

ତା'ପରେ ସେ ମନେ ମନେ କହିଲେ, ନା, ପୁଣି ମୂଳରୁ ଭାବିବି । ଭାବିବାକୁ ଲାଗିଲେ- ମୁଁ ଜଣେ କର୍ମଚାରୀ ହେଲେ ମଧ୍ୟ ବଡ଼ ଲେଖକ ହୋଇଛି । କେବଳ ଓଡ଼ିଆ ଭାଷାରେ ନୁହେଁ, ଭାରତରେ ସବୁ ଭାଷାରେ ମୁଁ ବଡ଼ ବଡ଼ ଲେଖା ପ୍ରକାଶ କରୁଛି ଏବଂ ସମସ୍ତେ ପଢ଼ି ମୁଗ୍ଧ ହେଉଛନ୍ତି । (ଓଡ଼ିଆ ଛଡ଼ା ସେ ଆଉ କୌଣସି ଭାଷାର ଆଦ୍ୟ ଅକ୍ଷର ସୁଦ୍ଧା ଜାଣି ନାହାନ୍ତି) ମୋର ଲେଖାଗୁଡ଼ିକ ଭାରତରେ ଉଚ୍ଚ ପୁରସ୍କାର ଲାଭ କରିଛି ଏବଂ ପୃଥିବୀରେ ମଧ୍ୟ ଶ୍ରେଷ୍ଠ ପୁରସ୍କାର ପାଇଛି । ଯେଉଁଠାକୁ ଯାଉଛି, ସେଠି ଲୋକେ ମୋତେ ଦେଖି ଆଶ୍ଚର୍ଯ୍ୟ ଓ ମୁଗ୍ଧ ହେଉଛନ୍ତି । ଦିନେ ମୁଁ ରେଳଗାଡ଼ିରେ ଯାଉଛି, ମୋତେ କେହି ଚିହ୍ନି ପାରୁନାହାନ୍ତି; କିନ୍ତୁ କେତେକ ଯୁବକ ଯୁବତୀ ମୋର ଲେଖା ବିଷୟରେ ଆଲୋଚନା କରୁଛନ୍ତି ଏବଂ ଉଚ୍ଚ ପ୍ରଶଂସା କରୁଛନ୍ତି । ସେମାନେ ଜାଣି ନାହାନ୍ତି ଯେ ମୁଁ ଅଛି । ତା'ପରେ ମୁଁ ଆତ୍ମପ୍ରକାଶ କଲି । ନା, ସେଟା କରିବା ଅହମିକା ହେବ ।

...କିପରି ସେ ବିନୟ ରକ୍ଷାକରିବେ ଅଥଚ ନିଜକୁ ଜାହିର କରିବେ, ତାହାର ଉପାୟ ନ ପାଇ ସେ ଚିନ୍ତା ତ୍ୟାଗକରି ସେ ଅନ୍ୟ ଚିନ୍ତା କରିବାକୁ ଲାଗିଲେ ।

...ଏହି ସମୟରେ ତାଙ୍କର ସ୍ତ୍ରୀ ତାଙ୍କର ସାନ ପୁଅକୁ ଆଣି ତାଙ୍କ କୋଳରେ ଥୋଇଦେଇ କହିଲେ, ଚୁପ୍‌କରି ଖାଲି ଶୋଇଛ; ଅଥଚ ପୁଅଟା ଏଣୁତେଣୁ ଖାଇଯାଉଛି, ମୋତେ ରାନ୍ଧିବାକୁ ଛାଡ଼ି ଦେଉନାହିଁ; ଟିକିଏ ରଖି ପାରୁନା, ମୋତେ ଖାଇଯାଅ ସବୁ । ଦୁର୍ଗାଚରଣ ରାଗିଯାଇ କହିଲେ, ତୁମର ରାନ୍ଧିବାଟା ମୋର ଚିନ୍ତା କରିବାଠୁ ବେଶି ମୂଲ୍ୟବାନ ହେଲା ? ମୁଁ ବର୍ତ୍ତମାନ କେତେ ଉଚ୍ଚ ଚିନ୍ତା କରୁଚି, ଆଉ ତୁମେ ସବୁ ଗୋଳମାଳ କରିଦେଲ । ଏପରି ସ୍ତ୍ରୀ ପାଇ କେବେ କେହି...ହ୍ୟାପ୍... । ସ୍ତ୍ରୀ ପୁଅକୁ ଧରି ଚାଲିଗଲେ ଡମଡମ ହୋଇ ଓ କହିଲେ, ଯେତେବେଳେ ଦେଖ ଚିନ୍ତା ।

...ଦୁର୍ଗାଚରଣ ପୁଣି ଭାବିବାକୁ ଲାଗିଲେ, ମୁଁ ଚାକିରୀରେ ଦକ୍ଷତା ଦେଖାଇ ବହୁତ ଉନ୍ନତି କରିଛି ଏବଂ ଅନେକ ଦରମା ପାଉଛି । ପ୍ରକାଣ୍ଡ କୋଠା କରିଛି । ଏଇଠି ସେ ଭାବିବାକୁ ଲାଗିଲେ କେଉଁଠି ଜମି କିଣି କୋଠା କରିବେ । କଟକରେ ତ ବର୍ତ୍ତମାନ ସହର ଭିତରେ ଆଉ ଜାଗା ନାହିଁ । ତାଙ୍କର ପୁରୁଣା ପୈତୃକ ବାସ ଭୂମିଟି ଅତି ସାନ । ସେଠି ତାଙ୍କ ଇଚ୍ଛାନୁସାରେ ବଡ଼ କୋଠା କରିହେବ ନାହିଁ । ଏ ସ୍ଥାନ ଛାଡ଼ି ଆଉ ଦୂରକୁ ମଧ୍ୟ ଯିବାକୁ ଇଚ୍ଛା ହେଲାନାହିଁ । କାରଣ ଯେଉଁମାନଙ୍କ ପ୍ରତି ତାଙ୍କର ଈର୍ଷା ଅଛି, ସେମାନଙ୍କୁ ପ୍ରତିଦିନ ଐଶ୍ୱର୍ଯ୍ୟ ଦେଖାଇ ତାଙ୍କର ଈର୍ଷା ଉଦ୍ରେକ କରାଇ ପାରିବେନାହିଁ । ତା ହେଲେ... । ଏହା ପରେ କୋଠା ତିଆରିର ନକ୍ସା ଓ ହିସାବ କରୁକରୁ ସେ ଆଉ ଅନୁକୂଳ ନ ପାଇ ତାହା ତ୍ୟାଗକରି ପୁଣି ମନେ ମନେ କହିଲେ, ନା, ମୂଳରୁ ପୁଣି ଭାବିବାକୁ ହେବ ।

...ସେ ଭାବି ଚାଲିଲେ, ତା ପରେ ମୁଁ ଜଣେ ବଡ଼ ବୈଜ୍ଞାନିକ ହୋଇଛି । ମୋର ଗବେଷଣାରେ ମୁଁ ଆଇନ୍‌ଷ୍ଟାଇନଙ୍କଠାରୁ ବଡ଼ ହୋଇଛି । ଅଙ୍କଦ୍ୱାରା ବୁଝାଇ ଦେଇଛି, ଭଗବାନ୍‌ଙ୍କ ଅସ୍ତିତ୍ୱ ଅଛି (ଭଗବାନ୍ ସ୍ମିତହାସ୍ୟ କଲେ) । ଏଠାରେ କହିରଖେ ଯେ ଅଙ୍କଶାସ୍ତ୍ରଠାରୁ ବହୁତ ଦୂରରେ ଦୁର୍ଗାଚରଣ । ଅଙ୍କ ଦେଖିଲେ ତାଙ୍କୁ ଜ୍ୱର ଆସେ ।

...ମୁଁ ମଧ୍ୟ ସନ୍ତରଣଦ୍ୱାରା ପ୍ରଶାନ୍ତ ମହାସାଗର ଅତିକ୍ରମ କରିବି ।

...ନାଃ, ନାଃ ଏସବୁ ଅସମ୍ଭବ କଥା ଭାବି ଲାଭ ନାହିଁ । କେବଳ ମୁଁ ଜଣେ ପୃଥିବୀପ୍ରସିଦ୍ଧ ଲେଖକ ଓ ଜଣେ ବଡ଼ ଆଧ୍ୟାତ୍ମିକ ଓ ରାଜନୈତିକ ନେତା ହୋଇଛି । ଏକାଧାରରେ ସବୁ ହୋଇଛି; କିନ୍ତୁ ଏସବୁ ହେବାକୁ ହେଲେ ଭଗବାନ୍‌ଙ୍କ ସାହାଯ୍ୟ ଦରକାର । ଭଗବାନ୍‌ଙ୍କର ଅସ୍ତିତ୍ୱ ହୃଦୟ ମଧ୍ୟରେ ଅନୁଭବ ନ କଲେ ତାଙ୍କୁ ପାଇପାରିବି ନାହିଁ । ଅତଏବ ପ୍ରଥମେ ମୋତେ ଭଗବାନ୍‌ଙ୍କ ପ୍ରତି ପ୍ରେମ ଉପୁଜାଇବାକୁ ହେବ...ଆଚ୍ଛା... ଭଗବାନଙ୍କ ଅସ୍ତିତ୍ୱରେ ମୋର ବିଶ୍ୱାସ ଥାଉ ବା ନ ଥାଉ, ସେ ଯଦି ଅଛନ୍ତି, ତେବେ କାହିଁକି ମୋ ମନରେ ତାଙ୍କ ପ୍ରତି ପ୍ରେମ ଦେଉନାହାନ୍ତି ? ହେ ଭଗବାନ୍, ମୋତେ ଜଣେ ବଡ଼ ଲେଖକ ଓ ନେତା କରିଦିଅ, ମୁଁ ରାମା, ଶାମା, ଦାମା ପରି ଜୀବନ ଚାହେଁ ନା...

ଭଗବାନ୍ ପଚାରିଲେ, ଐଚ୍ଛିକ, ବିଚାରାଟିର ବୟସ କେତେ ?

-ପଇଁଚାଳିଶ ?

ଭଗବାନ୍ ସ୍ମିତହାସ୍ୟ କରି କହିଲେ, ଆହା, ବିଚାରାର ବୃଦ୍ଧି ଏ ପର୍ଯ୍ୟନ୍ତ ପରିପକ୍ୱ ହୋଇନାହିଁ । ମୋତେ ସେ ପାଇବାକୁ ଚାହୁଁଛି କେବଳ ନିଜକୁ ବଡ଼ କରି ଅନ୍ୟ ଆଗରେ ଥୋଇବ ବୋଲି । ସେ ଇଚ୍ଛା-ପୂରଣ କରିବାର ଉପାୟ ତା'ର ସ୍ୱତନ୍ତ୍ର କ୍ଷମତାଭୁକ୍ତ । ହଉ ହେଲା, ସେଇ ବାଟେ ସେ ଯାଉ ବର୍ତ୍ତମାନ । ତୁମ ରିପୋର୍ଟରେ ତା ପ୍ରତି ତୁମର ଘୃଣା ଘୋଡ଼ାଇବାକୁ ଚେଷ୍ଟାକଲେ ହେଁ ସ୍ପଷ୍ଟ ବୁଝାପଡୁଛି । ନା, ନା, ଏମିତି ରିପୋର୍ଟ ମୋତେ ଦେବନାହିଁ କଦାପି । ମାନୁଚି ଏ କଥା ଯେ ପ୍ରତ୍ୟେକ ବଡ଼ ହେବାର ସଂଘର୍ଷରେ ସମଗ୍ର ମାନବଜାତିର ଧ୍ୱଂସ ନିଶ୍ଚୟ ହେବ, ଯଦୁବଂଶ ଧ୍ୱଂସ ଭଳି; କିନ୍ତୁ ସେଥିରେ ଯାଏ କେତେ, ଆଚ୍ଛା ତୁମେ କେଉଁ ଇଚ୍ଛାକୁ ପ୍ରାଧାନ୍ୟ ଦେଇଛ ?

-ମୁଁ ଦୁର୍ଗାଚରଣର ଲେଖକ ହେବା ଓ ଚାକିରୀରେ ପଦୋନ୍ନତି କରିବାର ଇଚ୍ଛାକୁ ପ୍ରାଧାନ୍ୟ ଦେଇଛି ।

-କାହିଁକି ?

-ସବୁ ଇଚ୍ଛାଗୁଡ଼ିକ ମଧ୍ୟରେ ଏ ଦୁଇଟି ଇଚ୍ଛାକୁ ସେ ବାରମ୍ବାର ଧ୍ୟାନ ଦେଇଛି ଏବଂ ବ୍ୟାକୁଳଭାବରେ ଇଚ୍ଛା କରିଚି । ତେଣୁ ଏ ଇଚ୍ଛା ଦୁଇଟି ଅତି ଆନ୍ତରିକ ।

ଭଗବାନ୍ ସ୍ମିତହାସ କରି କହିଲେ, ତୁମ୍ଭେ ଭୁଲ୍ କରିଛ । ଯାହାହେଉ, ଅତିଶୀଘ୍ର ତୁମ୍ଭେ ତା'ର ବନ୍ଧୁ ଦୀନାକୁ କଟକ ପଠାଅ ଏବଂ ଦୁର୍ଗାଚରଣ ସହିତ ସାକ୍ଷାତ କରାଅ । ଆଉ ଶୁଣ, ସମଗ୍ର ମାନବ ଜାତିର ସାମୂହିକ ଇଚ୍ଛା ଓ ପ୍ରତ୍ୟେକ ମଣିଷର ନିଜସ୍ୱ ବ୍ୟକ୍ତିଗତ ଇଚ୍ଛା ବର୍ତ୍ତମାନ କେଉଁ ସ୍ତରକୁ ଆସିଛି ଓ ପରସ୍ପର ଭିତରେ କି ସମ୍ପର୍କ ଅଛି, ସେ ବିଷୟରେ ଗୋଟିଏ ପୂର୍ଣ୍ଣାଙ୍ଗ ରିପୋର୍ଟ ଦିଅ ।

ଐଚ୍ଛିକ ଆଦେଶ ପାଇ ଚାଲିଗଲେ ।

• • •

ଦୁର୍ଗାଚରଣ ଭାବି ଭାବି କ୍ଲାନ୍ତ ହୋଇପଡ଼ିଲେ । ମନରେ ତାଙ୍କର ଅବସାଦ ଆସିଲା । ଏତେ ଅସମ୍ଭବ ଭାବନା ଭାବୁଛନ୍ତି ନିଜ ପ୍ରତି ଘୃଣା ମଧ୍ୟ ହେଲା । ସେ ଉଠି ଟିକିଏ ବୁଲି ଆସିବାକୁ ବାହାରିଲେ । ଘରୁ ବାହାରିଛନ୍ତି କି ନା ଦେଖିଲେ ତାଙ୍କର ବନ୍ଧୁ ଦୀନା ଯାଉଛି । ଦୁହେଁ ଦୁହିଁଙ୍କୁ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ ।

ଦୁର୍ଗାଚରଣ ପଚାରିଲେ, କିରେ ତୁ କୁଆଡ଼େ ?

-ମୁଁ ବର୍ତ୍ତମାନ ଭୁବନେଶ୍ୱରରୁ ଆସିଛି, ବାପା ଜରୁରୀ ଖବରଦେଲେ ଆସିବାକୁ ।

ଇସ୍, ପାଞ୍ଚବର୍ଷପରେ ଦେଖା, ନୁହେଁ ? ଆଜି ସକାଳେ ବରା ଖାଉ ଖାଉ ତୋ କଥା ମନେ ପଡ଼ିଥିଲା । ଏହି କେତେବର୍ଷ ମୁଁ ତ କଟାଇଲି ଦୂର ମୂଲକରେ । ତୋର ଖବର ରଖିନାହିଁ । ଆଜି ସକାଳେ ଭାବୁଥିଲି, ତୋ ସହିତ ଦେଖା ହୁଅନ୍ତା କି ?

ଦୁହେଁ ଦୁହିଁଙ୍କୁ ଆନନ୍ଦରେ କୁଣ୍ଢାଇ ପରସ୍ପରଠାରୁ ବିଦାୟ ନେଲେ ।

ଦୁର୍ଗାଚରଣ ବୁଲି ଯାଉ ଯାଉ କବିଙ୍କର କଥାଟି ମନେ ପଡ଼ିଲା...

Lord I know not
what to ask of thee
Thou only knowest
what I need.
Thou lovest me
better than I know how to love myself.
Smite me or heal me
depress me or raise me up,
I adore all thy purposes
without knowing them;
I do not know to pray,
pray thyself in me.

(ମୁଁ କଅଣ ଚାହେଁ ଜାଣେନା । ତୁମେ ଜାଣ ମୋର କଅଣ ଦରକାର । ମୁଁ ମୋତେ ଯେତେ ଭଲପାଏ, ତାଠୁ ତୁମେ ମୋତେ ବେଶି ଭଲପାଅ । ଦୁଃଖ ଦିଅ ବା ସୁଖଦିଅ, ନିନ୍ଦା ଦିଅ ବା ଯଶ ଦିଅ, ତୁମର କି ଉଦ୍ଦେଶ୍ୟ ସେଥିରେ ନିହିତ ଅଛି ନ ଜାଣିଲେ ବି ଜାଣେ ସେ ଉଦ୍ଦେଶ୍ୟ ମହତ୍ । ମୁଁ ପ୍ରାର୍ଥନା କରି ଜାଣେନା । ତୁମେ ମୋ ଭିତରେ ଥାଇ ପ୍ରଭୁ ପ୍ରାର୍ଥନା କର) ।

# ଧ୍ୱନି

ମଣିଷର ବୋଧହୁଏ ଦୁଇଟି ମନ ଅଛି । ଗୋଟିଏ ଦେହଜମନ ଓ ଅନ୍ୟଟି ଦେହାତୀତ ମନ । ଦେହଜ ମନ ଦେହକୁ ନେଇ ପଡ଼ିଥାଏ । ଧନ, ଜନ, ମାନ, ପ୍ରତିପତ୍ତି, ସୁଖ, ସଂଭୋଗ ପଛରେ ଦୌଡ଼ୁଥାଏ । ସେଥିପାଇଁ କେତେ ଲୋଭ, ହିଂସା, ଛଳନା, ଜାଲ୍ ଜୁଆଚୋରୀର ଆଶ୍ରୟ ନିଏ । ସେତେବେଳେ ତା'ର ଦେହାତୀତ ମନ ସେ ସବୁ ଭିତରେ କେଉଁଠି ଲୁଚିଯାଏ ସତ, ତଥାପି ମଝିରେ ମଝିରେ ଏ ଦେହକୁ ସେଇ ସର୍ବତ୍ର ପରିବ୍ୟାପ୍ତ, ସର୍ବତ୍ର ଯାହାର ଆଖି ବିଦ୍ୟମାନ୍ ସେହି ମହାନ୍ ଶକ୍ତି ଆଡ଼କୁ ଟାଣିନିଏ । ସେତେବେଳେ ମଣିଷ ନିଜର ଇନ୍ଦ୍ରିୟ ପରିବେଷ୍ଟିତ କ୍ଷୁଦ୍ର ସଂକୀର୍ଣ୍ଣ ଗଣ୍ଡି ଛାଡ଼ି ବାହାରକୁ ଦୃଷ୍ଟି ପକାଏ । ସବୁ ତାକୁ ସୁନ୍ଦର ଦିଶେ । ଘାସଗଛଟି ବି ଅପୂର୍ବ ସୃଷ୍ଟି ବୋଲି ମନେ ହୁଏ । ସେତେବେଳେ 'ମୁରଲି ତାର ନାମ ଧରି, ଡାକଇ ଆସ ବେଗକରି ।' ସେ ମୁରଲି ସ୍ୱର ଶୁଣି 'ମନ ହୁଅଇ ଛନ୍ନ ଛନ୍ନ, ବ୍ୟାପାରେ ନ ଲାଗଇ ମନ ।' ସର୍ବଦା ସଂଯୁକ୍ତ ତୁଲ୍ୟନାମ- ବିଶିଷ୍ଟ ଦୁଇଟି ପକ୍ଷୀ ଗୋଟିଏ ବୃକ୍ଷକୁ ଆଶ୍ରୟ କରି ଅଛନ୍ତି, ସେମାନଙ୍କ ମଧ୍ୟରୁ ଗୋଟିଏ ବିଚିତ୍ର ଆସ୍ୱାଦଯୁକ୍ତ ଫଳ ଭକ୍ଷଣକରେ, ଅପରଟି ଭକ୍ଷଣ ନ କରି କେବଳ ଦର୍ଶନ କରେ । ଦେହାତୀତ ମନ ଯାହାର ଅଧିକ ପ୍ରବଳ, ସେ ହୋଇଛି ପ୍ରକୃତ ନେତା, ପ୍ରକୃତ ବିପ୍ଳବୀ, ବୁଦ୍ଧ, ଖ୍ରୀଷ୍ଟ, ଚୈତନ୍ୟମାନଙ୍କ ଭଳି ।

ଏ କଅଣ କୌଣସି ଗଳ୍ପର ବିଷୟବସ୍ତୁ ହୋଇପାରେ ? ନ ହେବ ବା କାହିଁକି ? ସାହିତ୍ୟ କଅଣ କେବଳ ଦେହଜ-ମନର ତୃପ୍ତି ଆଣିବାପାଇଁ ? ଅଥବା କେବଳ ଦେହଜ-ମନର ତୃପ୍ତି ଯେଉଁ ସାହିତ୍ୟ ଦିଏ, ସେ କଅଣ 'ସାହିତ୍ୟ' ? ଆଜି ସକାଳୁ ଭଗବାନ୍ ବାବୁଙ୍କ ମନରେ ଯେଉଁ ସବୁ ଭାବ ଉପୁଜିଲା, ସେ କଅଣ ସାହିତ୍ୟ-ଦୃଷ୍ଟିରୁ ଗୋଟିଏ କ୍ଷୁଦ୍ରଗଳ୍ପ ନୁହେଁ ?

ଶୀତଦିନର ଗୋଟିଏ ରମଣୀୟ ପ୍ରଭାତ ? ଭଗବାନ୍ ବାବୁ ଚାଦର ଖଣ୍ଡେ ଘୋଡ଼ିହୋଇ ପଦାକୁ ବାହାରିଲେ । ମନଟା ତାଙ୍କର ହଠାତ୍ ଉଦାସ ହୋଇଗଲା । ପାତଳା ସୂର୍ଯ୍ୟକିରଣ ବିଛାଡ଼ି ପଡ଼ିଚି । ସବୁଜ ଘାସ ଉପରେ ଶିଶିରବିନ୍ଦୁ ଗୁଡ଼ିକରେ ସୂର୍ଯ୍ୟକିରଣ ପ୍ରତିଫଳିତ ହୋଇ ସେଗୁଡ଼ିକୁ ଏକ ଅପୂର୍ବ ବସ୍ତୁରେ ପରିଣତ କରିଛି । କାଉଗୁଡ଼ିକ କା କା ରାବ ଦେଇ ଉଡ଼ିଯାଉଛନ୍ତି । ଦୂରରେ ଗୋଟିଏ ଚଢ଼େଇ ଅନବରତ କହି ଚାଲିଛି କୃଷ୍ଣ କାହିଁ ଗୋ... କୃଷ୍ଣ କାହିଁ ଗୋ.. ଅତି ବ୍ୟାକୁଳ ଭାବରେ । ପରିବାବାଲାମାନେ ତରତର ହୋଇ ଧାଇଁଛନ୍ତି ଡାକି ଡାକି, ଆଳୁ...ଆଳୁ । ମ୍ୟୁନିସିପାଲିଟି ମଇଳାବୁହା ଗାଡ଼ିଟା ଚାଲିଛି କେତେ ପ୍ରକାର ଶବ୍ଦ କରି ଘଟର ଘଡ଼ ଘଡ଼ କେଁ ଏଁ ଏଁ ଧଡ଼୍- ଘଟର ଘଡ଼ ଘଡ଼ କେଁ ଏଁ ଏଁ ଧଡ଼ । ଗୋଟିଏ ଗେଣ୍ଡା ଧୀରେ ଧୀରେ ଚାଲିଛି, ନିଃଶବ୍ଦ ଶବ୍ଦକରି ।

ଭଗବାନ ବାବୁଙ୍କ ମନ ଆଉ ଘରଭିତରେ ରହିଲାନାହିଁ । ନିଜର ଅଜାଣତରେ ଗୋଡ଼

ତାଙ୍କର ଆଗେଇଲା । ମନ ତାଙ୍କର ଟାଣୁଥାଏ ସବୁ ଦେଖିବାକୁ, ସବୁ ଶୁଣିବାକୁ । କେତେଥର ଏସବୁ ଦେଖିଛନ୍ତି, ଶୁଣିଛନ୍ତି । ଆଜି କିନ୍ତୁ ଆଉ ଥରେ ନୂଆକରି ଦେଖିବାକୁ, ଶୁଣିବାକୁ ଇଚ୍ଛା ହେଲା ।

ବୁଲି ବୁଲି ସେ ଆସି ପହଞ୍ଚିଗଲେ କିଙ୍କର ବାବୁଙ୍କ ଘର ସାମନାରେ କୌଣସି ଉଦ୍ଦେଶ୍ୟରେ ନୁହେଁ, ଯଦୃଚ୍ଛାକ୍ରମେ । କିଙ୍କର ବାବୁ ତାଙ୍କର ବାଲ୍ୟବନ୍ଧୁ । ଅନେକ ଦିନ ହେବ ତାଙ୍କ ସହିତ ଦେଖା ହୋଇନାହିଁ । ନାନା ସଂସାରିକ ଜଞ୍ଜାଳ ଭିତରେ ପଡ଼ି କିଙ୍କର ବାବୁ ଘାଣ୍ଟି ହେଉଛନ୍ତି । ଘରରୁ କଚେରି । କଚେରିରୁ ବଜାର ଦେଇ ଘର । ସେଇ ଗୁଳାରେ ତାଙ୍କର ମନ ଓ ଦେହ ଚାଲିଛି ତ ଚାଲିଛି । କିଛିଦିନ ତଳେ ତାଙ୍କର ଗୋଟିଏ ପୁଅ ମରିଯାଇଛି । ସେ ଶୋକରୁ ଏ ପର୍ଯ୍ୟନ୍ତ ମୁକ୍ତ ହୋଇପାରି ନାହାନ୍ତି । ଭଗବାନ୍ ବାବୁ ତାଙ୍କର ଖବର ନେବାପାଇଁ ତାଙ୍କ ଦୁଆରମୁହଁରେ ଛିଡ଼ାହେଲେ । କିଙ୍କରବାବୁଙ୍କ ଘର ଭିତରେ ଓ ବାହାରେ ସେତେବେଳେ ନାନା ପ୍ରକାର କୋଳାହଳ । ଭଗବାନ୍ ବାବୁ ପ୍ରତ୍ୟେକ ଶବ୍ଦଟିକୁ ଅଲଗା ଭାବରେ ଶୁଣିବାକୁ ଲାଗିଲେ ।

ଘର ଭିତରେ କିଙ୍କର ବାବୁଙ୍କ ସ୍ତ୍ରୀ ମୃତ ପୁତ୍ରର ଗୁଣ ବାହୁନି କାନ୍ଦୁଛନ୍ତି । 'ମୋତେ ଛାଡ଼ି ତୁ କୁଆଡ଼େ ଗଲୁରେ ମୋ ଗୁଣମଣି; ତୋତେ ଛାଡ଼ି ମୁଁ କେମିତି ଥିବିରେ... ।' ହଠାତ୍ କାନ୍ଦଣା ବନ୍ଦକରି ସେ ପାଟିକରି ଚାକରାଣୀକୁ ଗାଳି ଦେବାକୁ ଲାଗିଲେ, ''ହୋଇଲୋ ହେମ, ତୋତେ କେତେବାର କହିଛି ଯେ ବାସନ ମାଜିବା ପରେ ଭଲ ପାଣିରେ ଧୋଇ ରଖିବୁ ? ଆଉ କଅଣ ତୋ ଗୋଡ଼ତଳେ ପଡ଼ି କହିବି ?''

ହେମ ମଧ ପାଟିକରି କହିଲା, ''ରଖୁଛି ମା' ରଖୁଛି, ପାଟିଟା କରୁଛ କାହିଁକି ?''

ତା'ପରେ ଦୁଇଜଣ ଏକାସାଙ୍ଗରେ କଳହଦ୍ୱାରା ପରସ୍ପରକୁ ବୁଝାଇବାକୁ ଚେଷ୍ଟାକଲେ ।

କିଙ୍କର ବାବୁଙ୍କ ବଡ଼ ଝିଅଟି ସପ୍ତମ ଶ୍ରେଣୀର ଛାତ୍ରୀ । ସେ ଚିତ୍କାର କରି ପଢ଼ା ମୁଖସ୍ଥ କରୁଛି, ଗ୍ରୀନ୍‌ଲେଣ୍ଡର ଅଧୀବାସୀମାନଙ୍କୁ ଏସ୍କିମୋ ଏସ୍କିମୋ ଏକ୍‌ସିମୋ ଏକ୍‌ସିମୋ କହନ୍ତି, ଉଁ...ଉଁ...ଉଁ ସେମାନଙ୍କୁ ବର୍ଷଯାକ ଶୀତ ସହିବାକୁ ପଡ଼େ । ବୋଉ ଦେଖିଲୁ କୁନାକୁ । ଚୁପ୍ କର ବଦ୍‌ମାସ ଏକଶିଙ୍ଘା ।

କିଙ୍କର ବାବୁଙ୍କ ତିନିବର୍ଷ ପୁଅଟି ମୁଣ୍ଡ ତଳକୁ କରି କାନ୍ଥ ଉପରକୁ ଗୋଡ଼ ଟେକିଦେଇ ସମସ୍ତଙ୍କ ଦୃଷ୍ଟି ତାହା ଆଡ଼କୁ ଆକୃଷ୍ଟ କରିବାପାଇଁ ଚିତ୍କାର କରୁଛି । ଚର୍କବ୍ ଦେଖ, ଚର୍କବ୍ ଦେଖ... ।

ଦାଣ୍ଡ ଦୁଆର ମୁହଁରେ ଗୋଟିଏ ଗଞ୍ଜା କୁକୁଡ଼ା ଓ ଦୁଇଟି ମାଈ କୁକୁଡ଼ା ମଇଳାଗଦାରୁ ଖୁମ୍ପି ଖୁମ୍ପି ଆହାର ଖୋଜୁଛନ୍ତି । ମଝିରେ ମଝିରେ ଗଞ୍ଜାଟା ବେକ ଥରାଇ ଡାକ ଦେଉଛି, ଚକ୍ରଧର...ଅ...ଅ ରକ୍ଷାକର । ତା'ର ଡାକରେ ଆକାଶ ଯେପରି ଚିରି ହୋଇଯାଉଛି, ତାର ସ୍ରଷ୍ଟା ବି ଥରି ଯାଉଛନ୍ତି ।

ଗୋଟିଏ ମାଈ କୁକୁର ପଛରେ ପାଞ୍ଚଟା ଅଣ୍ଡିରା କୁକୁର ଗୋଡ଼ାଇଛନ୍ତି । ମଝିରେ ମଝିରେ କୁତୀଟି ଲାଙ୍ଗୁଡ଼ ଯାକି ଦେଇ ପଛକୁ ଲେଉଟି ପଡ଼ି ସମସ୍ତଙ୍କୁ ଖେଁକି ହୋଇ ଭୁକୁଚି ଓ ସାଙ୍ଗେ ସାଙ୍ଗେ ଅଣ୍ଡିରା କୁକୁରମାନଙ୍କ ଭିତରେ ଲାଗି ଯାଉଛି ତୁମୁଳ ଯୁଦ୍ଧ । ପରସ୍ପର ଭିତରେ କାମୁଡ଼ା କାମୁଡ଼ି କରି ତୁମୁଳ ଶବ୍ଦ ସୃଷ୍ଟି କରୁଛନ୍ତି ସେମାନେ । ଇତିମଧ୍ୟରେ କୁତୀଟା ପଳାଇଛି ଅଣ୍ଡିରାଗୁଡ଼ାକ ନିଜ ଭିତରେ ଝଗଡ଼ା ବନ୍ଦକରି ପୁଣି ଗୋଡ଼ାଇଛନ୍ତି ତା ପଛରେ ।

ଭଗବାନ ବାବୁଙ୍କ କୋଳ ଛୁଆଟି କାନ୍ଦି କାନ୍ଦି ଧଇଁ ସଇଁ ହୋଇପଡ଼ିଲାଣି ।

ଗୋଟିଏ ଭିକାରୀ ଏତେ ସକାଳୁ ଆସି ଜୁଟିଗଲାଣି । ସେ ପାଟିକରି ଡାକୁଛି, ମା...ଆ...ଧର୍ମ କର, ଗଣ୍ଡେ ଭିକ ଦିଅ, ଦଶ ଦୁଆର ଯିବି, ଏତେ ଡେରି କଲେ ଚଳିବ... ।

ଗୋଟିଏ ଫେରିବାଲା ଡାକି ଡାକି ଚାଲିଗଲା, ଗରମ ସିଙ୍ଗଡ଼ା, ଆଳୁଚପ୍, ପକୁଡ଼ି, ରସଗୋଲା, ଛେନାଗଜା...

ଦୁଇଜଣ ମାମଲତକାର ଛୁଟିଛନ୍ତି ଓକିଲଘରକୁ । ଜଣେ ହାତ ହଲାଇ ଅନ୍ୟ ଜଣକୁ କହୁଛି, ସର୍ବନାଶ କରିଦେବି ତାହାର, ଭାଇ ନୁହେଁ ଭଗାରୀ ।

ଦୂରରେ ଗୋଟିଏ ରେଳଗାଡ଼ି ପୋଲ ପାରିହେବା ପୂର୍ବରୁ ଗଁ ଗଁ ଗର୍ଜନ କରି ଉଠିଲା ।

ପାଖ ଘରର ବୈଠକଖାନାରୁ ତର୍କ ଶୁଭୁଚି...ଦୁର୍ନୀତି ପାଣି ସୁଅପରି । ତାହା ତଳୁ ଉପରକୁ ଯାଏନାହିଁ, ଉପରୁ ତଳକୁ ବହେ । ଚପରାସୀ ଚାରିଅଣା ଘୁଷ୍ ନେଲା ବୋଲି ହାକିମ ଘୁଷ୍ ନିଏ ନାହିଁ ଯେ, ହାକିମ ଶହେଟଙ୍କା ଘୁଷ୍ ନେବାରୁ ଚପରାସୀ ଚାରିଅଣା ନିଏ । ଚପରାସୀ ଘୁଷ୍ ନେବାର ଅର୍ଥନୈତିକ କାରଣ ଥାଇପାରେ; କିନ୍ତୁ ହଜାର ହଜାର ଟଙ୍କା ପାଇ ସୁଦ୍ଧା ଯେଉଁମାନେ ଦୁର୍ନୀତି ପରାୟଣ, ସେମାନେ କେବଳ ଅପରାଧୀ ମନୋବୃତ୍ତି ପାଇଁ ।

କିଙ୍କର ବାବୁଙ୍କ ପାଟି ଶୁଭୁଛି । ସେ ଗୀତା ପଢୁଛନ୍ତି-

...ପଶ୍ୟାମି ଦେବାଂସ୍ତବ ଦେବ ଦେହେ,

ସର୍ବାଂସ୍ତଥା ଭୂତ ବିଶେଷସଂଘାନ୍;

ବ୍ରହ୍ମାଣମୀଶଂ କମଳାସନସ୍ଥମ୍

ଋଷୀଂଶ୍ଚ ସର୍ବାନୁରଗାଁଶ୍ଚ ଦିବ୍ୟାନ୍ ।

ଅନେକବାହୁ ଦରବକ୍ତ୍ରନେତ୍ରଂ

ପଶ୍ୟାମି ତ୍ୱାଂ ସର୍ବତୋଽନନ୍ତରୂପମ୍;

ନାନ୍ତଂ ନ ମଧ୍ୟଂ ନ ପୁନସ୍ତବାଦିଂ

ପଶ୍ୟାମି ବିଶ୍ୱେଶ୍ୱର ବିଶ୍ୱରୂପମ୍... ।

ଦୂରରୁ ଶୁଭୁଛି, ଅଲ୍ଲାହ୍ ଇଲାହା ଇଲ୍ଅଲ୍ଲାହ୍ ।

ଭଗବାନ ବାବୁ ପ୍ରତ୍ୟେକ ଧ୍ୱନିକୁ ଅଲଗା ଅଲଗା ଶୁଣିବାକୁ ଲାଗିଲେ । ତାଙ୍କର ମନରେ ପ୍ରଶ୍ନ ଜାଗିଲା, ଏ ପ୍ରତ୍ୟେକ ଧ୍ୱନିର ଉତ୍ସ କଅଣ ଭିନ୍ନ ଭିନ୍ନ ? ଉତ୍ସର ସନ୍ଧାନ କରୁ କରୁ ସେ ଏପରି ଏକ ସ୍ତରରେ ପହଞ୍ଚିଲେ, ଯେଉଁଠି ମନେ ହେଲା ପ୍ରତ୍ୟେକ ଧ୍ୱନିର ଉତ୍ସ ସେଇଠି । ପ୍ରତ୍ୟେକ ଧ୍ୱନିର ଆଉ ପ୍ରତ୍ୟେକତ୍ୱ ରହିଲା ନାହିଁ । ସବୁ ଗୋଳେଇ ମିଶେଇ ଯାଇ ଏକ ଅପୂର୍ବ ଶବ୍ଦ ଝଙ୍କୃତ ହେବାକୁ ଲାଗିଲା ଧୀର ଉଦାତ୍ତ ସ୍ୱରରେ ।

ଭଗବାନ ବାବୁ ମୁରୁକି ହସି ଶୂନ୍ୟକୁ ଚାହିଁ ନମସ୍କାର କରି ପୁଣି ଚାଲିବାକୁ ଆରମ୍ଭ କଲେ ।

ଏ କଅଣ ଗୋଟିଏ ଗଳ୍ପ ହେଲା ?

# କଷ୍ଟେ ପୁତ୍ରଃ

ବଜାରରୁ ଦୁଇପଇସାର ଶାଗ କିଣିବାଠାରୁ ଆରମ୍ଭ କରି ରାଜ୍ୟଗୋଷ୍ଠୀ ପର୍ଯ୍ୟନ୍ତ ସବୁଠି ସଂଗ୍ରାମ । ପ୍ରତ୍ୟେକେ ଜୀବନ ପାଇଁ ସଂଗ୍ରାମ କରୁଛନ୍ତି; କିନ୍ତୁ ଗୋଟାଏ ଗୋଟାଏ ଲୋକ ଥାଆନ୍ତି, ଜୀବନ ଯେଉଁମାନଙ୍କ ପକ୍ଷରେ ଗୋଟାଏ ପରିହାସ, ସଂଗ୍ରାମକୁ ଯେଉଁମାନେ ଏଡ଼ାଇ ଯାଆନ୍ତି । ମାରିବାକୁ ଆସିଲେ କୁହନ୍ତି, ମାରନା ମୁଁ ମଲିଣି । ଆମ କାହ୍ନୁବାବୁ ଏଇ ଧରଣର ଲୋକ । ଆମ କଚେରୀରେ କାହ୍ନୁ ବାବୁ ଆବାଳବୃଦ୍ଧ ସମସ୍ତଙ୍କର ଅଜା । ଯିଏ ଆଜି ବି ଚାକିରୀରେ ଯୋଗ ଦେଇଚି, ଅଳ୍ପ ସମୟ ଭିତରେ ସେ କାହ୍ନୁ ବାବୁଙ୍କର ନାତି ହୋଇଯାଏ, ଥଟ୍ଟା ପରିହାସ କରେ । କାହ୍ନୁ ବାବୁ ଚୌକି ଛାଡ଼ି ଉଠିଗଲେ ତାଙ୍କର କଚ୍ଛା ଧରି ଟାଣି ଦିଏ କିମ୍ବା ତାଙ୍କ ପିଠିରେ 'ଗଧ' ଲେଖି ଦିଏ । କାହ୍ନୁ ବାବୁ ସେଥିରେ କ୍ଷୁର୍ଣ୍ଣ ନ ହୋଇ ଆମୋଦ ପାଆନ୍ତି । ତାଙ୍କପ୍ରତି କାହାରି ଆକ୍ରୋଶ ନଥାଏ । କାରଣ ସେ ନିଜର ଦକ୍ଷତା ଦେଖାଇ କାହାରି ପଦୋନ୍ନତି ପଥରେ କଣ୍ଟକ ନୁହନ୍ତି । ଚାକିରୀ ତାଙ୍କର ପ୍ରାୟ ଚାଳିଶ ବର୍ଷ ହେଲାଣି; କିନ୍ତୁ ସେ ଯେଉଁଠି ପ୍ରଥମେ ଆରମ୍ଭ କରିଥିଲେ ଆଜି ବି ସେଇଠି । ତାଙ୍କର କର୍ତ୍ତବ୍ୟ ପ୍ରତି ଅବହେଳା ଓ ଅପାରଗତା ଯୋଗୁଁ କେତେଥର ବାର୍ଷିକ ଦରମା ବୃଦ୍ଧି ବନ୍ଦ ରଖା ହୋଇଚି, କେତେଥର ସେ ସସ୍‌ପେଣ୍ଡ ହୋଇଛନ୍ତି, ରୋଜ କେତେ ଗାଳି ଖାଆନ୍ତି, ତଥାପି ସେଇ ଦରପୋଡ଼ା କାଠ । ନିଜର ଆର୍ଥିକ ଅବସ୍ଥା ଉନ୍ନତି କରିବାରେ କୌଣସି ଚେଷ୍ଟା ନାହିଁ । କୌଣସି ମତେ ସେ ଅଶିଟି ଟଙ୍କାରେ ଘର ଚଳାଇନିଅନ୍ତି । ସଂସାର ଭିତରେ ସ୍ତ୍ରୀ ଓ ଗୋଟିଏ ପୁତ୍ର । ସ୍ତ୍ରୀଙ୍କୁ ପାଖରେ ରଖିବାର କ୍ଷମତା ତାଙ୍କର କଦାପି ହୋଇନାହିଁ । ପୁଅଟି ପାଖରେ ରହି ପାଠ ପଢ଼େ, ଏ ବର୍ଷ ମାଟ୍ରିକ ପାସ୍ କରିଚି । ତାକୁ ନିଜ କାମରେ ମୁତଏନ କରି ସାରିଲେ ସେ ଚାକିରୀରୁ ଅବସର ନେବେ, ଏହି ତାଙ୍କର ଆଶା ।

ଚାକିରୀ କଲାଦିନୁ ସେ ଗଳାବନ୍ଦ କୋଟ ଓ ତାହା ଉପରେ ଖଣ୍ଡେ ଅଧମଇଳା ଚାଦର ପିନ୍ଧି ଝୁଲି ଝୁଲି ଆସନ୍ତି । ଘରୁ ବାହାରି ଜୁହାର ହେଉ ହେଉ ତାଙ୍କର ଚାଲିଯାଏ ଅଧଘଣ୍ଟାଏ । ତା'ପରେ ରାସ୍ତାରେ ଯେତେ ମନ୍ଦିରସ୍ଥ ବା ତରୁତଳସ୍ଥ ଦେବାଦେବୀ ଅଛନ୍ତି, ପ୍ରତ୍ୟେକଙ୍କୁ ଜୁହାର କରିବାରେ ଅନ୍ତତଃ ଦଶମିନିଟ ଲେଖାଏ ଚାଲିଯାଏ । କଚେରିରେ ପହଞ୍ଚିବା ବେଳକୁ ହୋଇଯାଏ ଦିନ ବାରଟା । ଇତି ମଧ୍ୟରେ ହାକିମଙ୍କର ଦୁଇ ତିନିଥର ଡକରା ସରିଯାଇଥାଏ । କଚେରିରେ ପହଞ୍ଚି ଗୋଟାଏ ଦୀର୍ଘଶ୍ୱାସ ପକେଇ ଚୌକିରେ ବସିବାବେଳକୁ ସାମନାରେ ଟେବୁଲ ଉପରେ ନାଲି ପେନ୍‌ସିଲରେ ଲେଖା ଗୋଟିଏ କାଗଜ ଦୃଷ୍ଟି ଆକର୍ଷଣ କରେ । ସେ ଖଣ୍ଡିକ ହେଡ୍‌କିରାଣିଙ୍କ ଆଦେଶପତ୍ର, କାହ୍ନୁ ବାବୁ ପହଞ୍ଚିବା ମାତ୍ରେ ସାହେବଙ୍କୁ ଦେଖା କରିବେ । ଏହା ନିତ୍ୟନୈମିତ୍ତିକ ବ୍ୟାପାର । କାହ୍ନୁ ବାବୁ ସେ ଖଣ୍ଡିକ

ଦେଖି ନ ଦେଖିଲା ପରି ଚାଦରରେ ମୁଣ୍ଡ ଝାଳ ପୋଛି, ଚାଦର ସଞ୍ଚାଳନ କରି ଟିକିଏ ବିଞ୍ଚି ହଉ ହଉ ଢୋଳାଇ ପଡ଼ନ୍ତି । ହାକିମଙ୍କ ଚପରାସି ବା ହେଡ଼କ୍ଲର୍କ ନିଜେ ଆସି ତାଙ୍କୁ ଉଠାଇ ଦେଇ କହନ୍ତି, ଯାଆନ୍ତୁ, ସାହେବ ସଲାମ ଦେଇଛନ୍ତି ।

କାହ୍ନୁ ବାବୁ ଆଉ ଗୋଟିଏ ଦୀର୍ଘଶ୍ୱାସ ପକାଇ ପାଟିରୁ ପାନ ବାହାର କରି ପକାଇ ଦେଇ କୋଟଟା ଟିକିଏ ସଜାଡ଼ି ନେଇ ଧୀରେ ଧୀରେ ଉଠିଯାଆନ୍ତି ସାହେବଙ୍କ ଦପ୍ତରକୁ । ସେଠି ପ୍ରାୟ ଅଧଘଣ୍ଟାଏ ଧରି ଗାଳିମିଶ୍ରିତ ଉପଦେଶ ବାଣୀ ନିର୍ବିକାର ଚିତ୍ତରେ ମୁଣ୍ଡପୋତି ଛିଡ଼ା ହୋଇ ଶୁଣି ଅନେକଗୁଡ଼ିଏ କାମ କରିବାର ତାଲିକା ଧରି ଫେରି ସିଧା ଚାଲିଯାଆନ୍ତି ରେକର୍ଡ ଘରକୁ । ରେକର୍ଡ ଘରଟି ଅନ୍ଧାରୁଆ । ସେ ଘରକୁ ପ୍ରାୟ କେହି ଯାଆନ୍ତି ନାହିଁ । ଖୁବ୍ ଉଚ୍ଚ ଘର, ବଡ଼ ବଡ଼ ଥାକରେ ଭର୍ତ୍ତି । ସବୁ ପୁରୁଣା ନଥିପତ୍ର ରେକର୍ଡ଼ ଏହି ଘରେ ଥାଏ । ସବା ପଛ ଥାକଟିରେ କେତେଗୁଡ଼ିଏ ରେକର୍ଡ଼ ଘୁଞ୍ଚାଇ ଗୋଟିଏ ମଣିଷ ଶୋଇବା ଭଳି ସ୍ଥାନ କରାହୋଇଚି । ତା ଉପରେ ପଡ଼ିଚି ଖଣ୍ଡିଏ ଛିଣ୍ଡା ମଶିଣା । କେତେଗୁଡ଼ିଏ ମୋଟା ଖାତା ସ୍ତୂପାକାର କରି ତକିଆ ଭଳି ରଖା ହୋଇଛି । କାହ୍ନୁ ବାବୁ ସାହେବଙ୍କ ପାଖରୁ ଗାଳି ଖାଇ ଆସିବା ପରେ ସେଗୁଡ଼ିକ ହଜମ୍ କରିବା ପାଇଁ ସେଇଠି ଶୋଇପଡ଼ନ୍ତି । ତାଙ୍କର ଏ ଗୁପ୍ତ ଶୟନ ଶିବିର ତାଙ୍କର କେତେଜଣ ବିଶ୍ୱାସୀ ନାତି ଛଡ଼ା ଆଉ କେହି ଜାଣନ୍ତି ନାହିଁ । ଇତିମଧ୍ୟରେ ଚାରିଆଡ଼େ ତାଙ୍କୁ ଖୋଜା ଚାଲିଥାଏ । ତାଙ୍କର କେଉଁ ନାତି କୁହେ, ସେ ଯାଇଛନ୍ତି ଅମୁକ ଅଫିସ୍‌କୁ କଅଣ କାମରେ; କିଏ କୁହେ ଯାଇଛନ୍ତି ସମୁକ୍ ଅଫିସ୍‌କୁ କଅଣ ନଥି ଆଣିବା ପାଇଁ, ହେଡ୍‌କିରାଣି ବାବୁ ଚଷମା ଉପର ବାଟେ କିଛିକ୍ଷଣ କାହ୍ନୁ ବାବୁଙ୍କ ଖାଲି ଚୌକିକୁ ବଡ଼ ବଡ଼ ଆଖିରେ ଅନାଇ ଟେବୁଲ ଗୋଡ଼ରେ ସୂତାରେ ବନ୍ଧା ହୋଇଥିବା ପୁଳାଏ କାଗଜରୁ ଖଣ୍ଡେ ଟାଣିଆଣି ରାଗରେ ଗୁଡ଼ାଏ କଅଣ ଲେଖି ପକାଇ ଡ଼ାକନ୍ତି ଚପରାସିକୁ-

-ଆଇଜ୍ଞା !

-ଯାଓ, ସାହେବଙ୍କୁ ଏଖଣ୍ଡ ଦେଇ ଆସ, ଯାଆଓ ।

ବୁଢ଼ା ଚପରାସୀ ଧନୁର ଢୋଳାଇବାରେ ବ୍ୟାଘାତ ପଡ଼େ । ସେ କାହ୍ନୁ ବାବୁଙ୍କର ଭାରି ବନ୍ଧୁ । ଦୁହେଁ ଗୋଟିଏ ଚାଳଘରେ ପାଞ୍ଚଟଙ୍କା ଭଡ଼ାରେ ରହନ୍ତି । ଚାକିରୀ କଲାଦିନଠାରୁ ଦୁହେଁ କେବେହେଁ ସ୍ତ୍ରୀ ପୁତ୍ର ସହ କଟକରେ ରହିନାହାନ୍ତି କିମ୍ବା ଛୁଟି ନେଇ କେବେହେଁ ଘରକୁ ଯାଇନାହାନ୍ତି । ବର୍ଷକୁ ଥରେ ମାତ୍ର ପୂଜା ଛୁଟିରେ ଯଦି ଯିବାକୁ ଅନୁମତି ମିଳେ, ତେବେ ଯାଆନ୍ତି । ଗାଁ ତାଙ୍କର କଟକଠାରୁ ବହୁ ଦୂରରେ, ଯିବା ଆସିବା ପାଇଁ ଅନ୍ତତଃ ପନ୍ଦରଟି ଟଙ୍କା ଆବଶ୍ୟକ ହୋଇପଡ଼େ । ଏତେ ଟଙ୍କା କେବେହେଁ ଏକା ସାଙ୍ଗରେ ଜୁଟେ ନାହିଁ, ଜୁଟିଲେ ମଧ୍ୟ ଛୁଟି ମିଳିବା ତାଠାରୁ ଅଧିକ ଦୁଃସାଧ ହୋଇପଡ଼େ । ଅଗତ୍ୟା ମୁହଁମାଡ଼ି ସେମାନେ କଟକରେ ପଡ଼ିଥାଆନ୍ତି ସେଇ ଗୋଟିଏ ଅଣଓସାରିଆ ସନ୍ତସନ୍ତିଆ କୁଡ଼ିଆଟିରେ ।

ଏଇ ହେଲା କାହ୍ନୁ ବାବୁଙ୍କର ନିତ୍ୟନୈମିତ୍ତିକ ଜୀବନ । ଏହାର ବ୍ୟତିକ୍ରମ କଦାପି ହୋଇନାହିଁ । ଥରେ ଅତ୍ୟନ୍ତ ବିରକ୍ତ ହୋଇ ହାକିମ ତାଙ୍କୁ ବୁଝାଇ ବାଟକୁ ଆଣିବାକୁ ଚେଷ୍ଟାକରି କହିଥିଲେ, ଦେଖନ୍ତୁ କାହ୍ନୁ ବାବୁ, ସମୟ ଥିଲା ଯେତେବେଳେ ଇଂରେଜ ଶାସନ ଚାଲିଥିଲା, ସେତେବେଳେ ହୁଏତ ଆପଣଙ୍କ କର୍ତ୍ତବ୍ୟ ପ୍ରତି ଅବହେଳା କ୍ଷମଣୀୟ ଥିଲା; କିନ୍ତୁ ଦେଶ ବର୍ତ୍ତମାନ

ସ୍ୱାଧୀନ ହୋଇଚି । ଆମେ ଯଦି ଏତେବେଳେ କାମରେ ଫାଙ୍କି ଦେଉଁ, ତେବେ ଆମେଇ ମରିବା, ଏଟା କଅଣ ବୁଝିପାରୁ ନାହାନ୍ତି ! କାହ୍ନୁ ବାବୁ ନୀରବରେ ଛିଡ଼ାହୋଇ ରହିଲେ । ତାଙ୍କର ଏହାହିଁ ସ୍ୱଭାବ, ଯେତେ ଗାଳି ଦିଅ ବା ଯେତେ ଉପଦେଶ ଦିଅ ବା ଯେତେ ପ୍ରଶ୍ନ ପଚାର ସବୁଥିରେ ସେ ନୀରବ । ହାକିମ ତାଙ୍କର ନୀରବତାରେ ଆହୁରି ରାଗିଯାଇ ଟେବୁଲ ଉପରେ କଲମ କଚାଡ଼ି କହିଲେ, ଏ କଅଣ ଢଙ୍ଗ ଆପଣଙ୍କର ? ପଚାରିଲେ ଉତ୍ତର ଦିଅନ୍ତି ନାହିଁ କାହିଁକି ? ହାକିମଙ୍କ ଆଡ଼କୁ ଟିକିଏ କଣେଇ ଚାହିଁ କାହ୍ନୁ ବାବୁ କହିଲେ, ଆଜ୍ଞା, ବୁଝୁନାହିଁ କି, ସବୁ ବୁଝୁଛି । କିନ୍ତୁ କାମକୁତ ମୋଟେ ଇଚ୍ଛା ହେଉନାହିଁ, କଣ କରିବି ।

-କାହିଁକି ?

-ମୁଁ କାମକଲେ ଦେଶର ଉନ୍ନତି ହେବ, ଦେଶର ଉନ୍ନତି ହେଲେ ଆମର ଉନ୍ନତି ହେବ ଏ କଥା ମୁଁ ବୁଝୁଛି; କିନ୍ତୁ ସାର୍, ମୋର ଜୀବନଟା ଗଲା, ଟିକିଏ ସାମାନ୍ୟ ସୁଖ କରିପାରିଲି ନାହିଁ । ଦିନକପାଇଁ ପିଲାପିଲି ପାଖରେ ରହି ଆନନ୍ଦ ପାଇପାରିଲି ନାହିଁ...

ହାକିମ ନୀରବ ରହିଲେ । କିଛିକ୍ଷଣ ପରେ କହିଲେ, ହଉ ଯାଆନ୍ତୁ । ପେନ୍‌ସନ୍ କେବେ ନେବେ ?

-ଆଉ ଅଳ୍ପଦିନ ଅଛି ସାର୍ । ପୁଅ ଏଇ କଚେରିରେ ରହିବା ପାଇଁ ଖଣ୍ଡେ ଦରଖାସ୍ତ କରିଛି । ଦୟାକରି ଯଦି ଆପଣ ତାକୁ କାମରେ ଲଗାଇ ଦିଅନ୍ତେ, ତେବେ ପେନ୍‌ସନ୍ ନେଇ ମୁଁ ଚାଲିଯାଆନ୍ତି ।

-ହଉ ଯାଆନ୍ତୁ ।

ହାକିମଙ୍କ ପିତା କିରାଣୀ ଥିଲେ । ସେ କି କଷ୍ଟରେ ତାଙ୍କୁ ଓ ତାଙ୍କର ଭାଇମାନଙ୍କୁ ପାଠ ପଢ଼ାଇ ମଣିଷ କରିଛନ୍ତି, ସେ ଜାଣନ୍ତି ।

କାହ୍ନୁ ବାବୁଙ୍କ ପୁଅ ଅଜୟ ଚାକିରି ପାଇ ରହିଲେ; କିନ୍ତୁ କାହ୍ନୁ ବାବୁ ଆଉ କିଛିଦିନ ଚାକିରିରେ ରହିବା ପାଇଁ ପୁଣି ଦରଖାସ୍ତ କଲେ । ହେଡ୍ କିରାଣୀ ସେ ଦରଖାସ୍ତ ଉପରେ କାହ୍ନୁ ବାବୁଙ୍କ ବିପକ୍ଷରେ ଗୁଡ଼ାଏ ଲେଖି ମତଦେଲେ ଯେ କାହ୍ନୁ ବାବୁଙ୍କ ଭଳି ଅକର୍ମଣ୍ୟକୁ ଚାକିରିରେ ଆଉ ରଖିବା ଅନ୍ୟାୟ ହେବ ।

ହାକିମ ଦରଖାସ୍ତ ପଢ଼ି ଆଶ୍ଚର୍ଯ୍ୟ ହୋଇ କାହ୍ନୁ ବାବୁଙ୍କୁ ଡକାଇଲେ । ବୁଢ଼ା ଚପରାସି ଧନୁ ଡକାଇବାର କାରଣ ବୁଝିପାରି କାହ୍ନୁ ବାବୁଙ୍କୁ ତାଙ୍କର ଶିବିରରୁ ଉଠାଇ ସାହେବଙ୍କ ପାଖକୁ ପଠାଇଲେ । କାହ୍ନୁ ବାବୁ ତରବର ହୋଇ ମୁହଁ ଧୋଇ ସାହେବଙ୍କ ପାଖରେ ହାଜର ହୋଇ ଛିଡ଼ାହେଲେ ।

-କି କାହ୍ନୁ ବାବୁ, ଇୟେ କଣ ? ଏ ଦରଖାସ୍ତ କଅଣ !

କାହ୍ନୁ ବାବୁ ନୀରବ ।

-ଆପଣ ପରା କହୁଥିଲେ ଯେ ପୁଅ ଚାକିରି କଲେ ଅବସର ନେବେ । ଫେର ଏ କଅଣ !

-ଆଜ୍ଞା, ତା ତ ଭାବିଥିଲି; କିନ୍ତୁ ମନ ବଳିଲା ନାହିଁ ।

-ନା, ନା, ଆପଣଙ୍କ ବୟସ ଅନେକ ହେଲାଣି । ଚାକିରି ବି ଚାଳିଶି ବର୍ଷରୁ ବେଶି ହେଲାଣି । ଏଥର ଘରେ ବସି ଧର୍ମ କର୍ମରେ ମନ ଦିଅନ୍ତୁ । ପୁଅ ତ ଚାକିରୀ ପାଇଲା । ଏଥର ପୁଅକୁ

ବାହାଦେଇ ଆନନ୍ଦରେ ବୋହୂ ନେଇ ଘରେ ରହନ୍ତୁ । ଆଉ ଲୋଭ କାହିଁକି ?

-ଆଜ୍ଞା, ଏ ଲୋଭ ନୁହେଁ, ଅବସର ନେଲେ ଅଳ୍ପ କେତୁଟା ଦିନରେ ମରିଯିବି, ଘରେ ତ ଜମିବାଡ଼ି ନାହିଁ ଯେ ଚାଷବାସ କରି କାଳ କଟିଯିବ, କଅଣ କରିବି ?

-କାହିଁକି, ଏତେ ଦିନ ଏକା ଏକା କାଳ କଟାଇଲେ, ଏଥର...

-ଆଜ୍ଞା, ଯେଉଁ ବୟସରେ ତା ହବାର କଥା ତ ହେଲାନାହିଁ । ଆଉ ଏ ବୟସରେ... ସାର୍, ସତ କହୁଚି, ବିବାହ କରିଚି ସତ... କିନ୍ତୁ କିନ୍ତୁ...

-କଅଣ କିନ୍ତୁ ।

-ସାର୍ ଏତେଦିନ ଅଲଗା ଏକା ଏକା ରହି ରହି ଏ ଜୀବନଟା ଅଭ୍ୟାସରେ ପଡ଼ିଗଲାଣି । ସ୍ତ୍ରୀ ତ ଅପରିଚିତା ଜଣେ ନାରୀ... ତା ସହିତ ବା ମୋର ସମ୍ପର୍କ କଅଣ ଅଛି, ଆଜି ପର୍ଯ୍ୟନ୍ତ କେବଳ ମାସକୁ ଥରେ ମନିଅର୍ଡ଼ର ରସିଦରେ ତାର ଟିପଚିହ୍ନ ଦେଖିବା ଛଡ଼ା, ତା ବି ଦୁଇଥର ଜାଲ ହୋଇଚି । ଥରେ କେବଳ ଏଇ ପୁଅର ଅନ୍ନପ୍ରାସନକୁ ଦିନେ ଯାଇଥିଲି, ଆଉ ଚାରିପାଞ୍ଚଥର ପୂଜା ଛୁଟିରେ ତିନିଚାରିଦିନ ପାଇଁ ଗାଁକୁ ଯାଇଥିଲି । ଏତିକି ତ ସମ୍ପର୍କ । ସରକାର ଆଉ ବେଶି ସମ୍ପର୍କ ରଖିବାକୁ ଦେଇନାହାନ୍ତି ;

ହାକିମ ବୁଝିପାରିଲେ ପ୍ରସଙ୍ଗଟା କ୍ରମେ କାହ୍ନୁ ବାବୁଙ୍କ ମନ ଗହନକୁ ପ୍ରବେଶ କରୁଚି । ସେଇଠି ସେ ପ୍ରସଙ୍ଗ ବନ୍ଦ କରି, ଆଉ ବର୍ଷେ ଚାକିରି ସମୟ ବଢ଼ାଇ ଚିଠି ଲେଖିଦେଲେ ଉପର ମହଲକୁ ।

ଏହାର ଅଳ୍ପଦିନ ପରେ କାହ୍ନୁ ବାବୁ ପୁଣି ଦୁଇ ଖଣ୍ଡ ଦରଖାସ୍ତ ନେଇ ଛିଡ଼ାହେଲେ ହାକିମଙ୍କ ପାଖରେ । ଭୟରେ ନୀରବରେ ଦରଖାସ୍ତ ଦିଓଟି ସାହେବଙ୍କୁ ବଢ଼ାଇ ଦେଇ ସେ ଛିଡ଼ା ହୋଇ ରହିଲେ । ହାକିମ ଦରଖାସ୍ତ ଦିଓଟି ପଢ଼ି କହିଲେ, ବେଶ୍, ବେଶ୍, ଅଜୟର ବାହାଘର କରୁଚ ନା, କେଉଁଠି ହେଉଚି ?

-ଆଜ୍ଞା, ଆମ ଚପରାସି ଧନୁର ଝିଅ ସହିତ ।

-ଭଲ, ଭଲ; କିନ୍ତୁ ତିନି ଦିନରୁ ବେଶି ଛୁଟି ଦେଇପାରିବି ନାହିଁ । ବଢ଼ି ସମୟ । ଚାରିଆଡ଼େ ହାହାକାର, ଭୀଷଣ କାମ ପଡ଼ିଚି । କେବଳ ତୁମପାଇଁ ମୁଁ ତିନିଦିନ ଦେଇପାରେ ।

-ହଉ ସାର, ଯାହା ଆପଣଙ୍କର ଦୟା ।

ଅଜୟର ବିବାହ ହୋଇଗଲା । ବୋହୂକୁ ଶାଶୁ ପାଖରେ ରଖି ଅଜୟ, ଧନୁ ଓ କାହ୍ନୁ ବାବୁ ତିନିଦିନ ପରେ ଚତୁର୍ଥଦିନ ଚାକିରୀରେ ଯୋଗ ଦେଲେ ।

ଏହାର ପ୍ରାୟ ବର୍ଷକ ପରେ ଦିନେ କାହ୍ନୁ ବାବୁ ଚିଠି ପାଇଲେ ତାଙ୍କର ଗୋଟିଏ ନାତି ହୋଇଚି । ସେଦିନ କାହ୍ନୁ ବାବୁଙ୍କର ଆନନ୍ଦ ଦେଖେ କିଏ । ଆନନ୍ଦରେ ସେ ସେଦିନ ସମ୍ବାଦଟି ଚାରିକଡ଼େ କହି ବୁଲିଲେ । ହାକିମଙ୍କୁ ମଧ୍ୟ କହି ଆସିଲେ । ହାକିମ ସମ୍ବାଦଟି ଶୁଣି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ । କାହ୍ନୁ ବାବୁ ଦୀର୍ଘନିଃଶ୍ୱାସ ପକାଇ କହିଲେ, ସାର୍ ଅଜୟକୁ ଓ ମୋତେ ଆଉ ଗୋଟିଏ ଦିନ ଛୁଟି ଦେବାକୁ ହେବ ସାର୍, ଥରେ ବଂଶଧରକୁ ଦେଖି ଆସିବା ପାଇଁ ।

-ହଉ ଯାଆନ୍ତୁ ।

ଅଜୟ ଏ ପର୍ଯ୍ୟନ୍ତ ଏ ସମ୍ବାଦ ପାଇନାହିଁ । କାହ୍ନୁ ବାବୁ ହାକିମଙ୍କ ପାଖରୁ ଛୁଟିର ଅନୁମତି ଆଣି ଅଜୟ ପାଖକୁ ଗଲେ । ଅଜୟ ସେତେବେଳେ ତାର ଚୌକିରେ ନ ଥିଲା । ଧନୁକୁ ପଚାରିବାରୁ ଧନୁ କହିଲା, ହେଁ, ହେଁ, ଜୋଇଁ ଠିକ୍ ତୁମରି ପରି, ସେ ପରା ତୁମ ଜାଗାରେ ଶୋଇଚି । ତୁମେ ସେ ଜାଗାକୁ ଯିବା ପୂର୍ବରୁ ସେ ସେଠି କର ଲେଉଟାଇ ଦିଏ ।

ଦୁହେଁଯାକ ହୋ ହୋ ହସି ଗଲେ ଶୟନ ଶିବିରକୁ । ଅଜୟକୁ ଠେଲି ଉଠାଇ କାହ୍ନୁ ବାବୁ କହିଲେ, ଚାଲ ବସାକୁ ଯିବା ।

ଅଜୟ ଆଶ୍ଚର୍ଯ୍ୟ ହୋଇ ପଚାରିଲା, କାହିଁକି ? ଏତେବେଳେ ?

-ଚାଲ, ବସାରେ କହିବି । ଏ ଆନନ୍ଦପୂର୍ଣ୍ଣ ସମ୍ବାଦଟି ଧୀରେ ସୁସ୍ଥେ କହିବା ତାଙ୍କର ଉଦ୍ଦେଶ୍ୟ ।

ବସାକୁ ଯିବା ବାଟରେ କାହ୍ନୁ ବାବୁ ବଜାର ସୌଦା କଲେ । ଚାରିଟା ବେଳକୁ ବସାରେ ପହଞ୍ଚି କାହ୍ନୁ ବାବୁ ପୁଅକୁ କହିଲେ, ନେ, ଚୁଡ଼ା ଚିନି କିଣି ଆଣିଚି, ଶୀଘ୍ର ଖାଇଦେଇ ଜିନିଷପତ୍ର ସବୁ ବନ୍ଧାବନ୍ଧି କରି ରଖିଥା । ମୁଁ ବଜାରକୁ ଯାଉଚି, ତୋ ବୋଉପାଇଁ ଗୁଡ଼ାଖୁ କିଣି ଆଣିବାକୁ ଭୁଲିଯାଇଛି ।

-କିନ୍ତୁ ଏ ଛୁଟି ! ଏତେ ଜିନିଷ ପତର ! କଥା କଅଣ !

-ନେ, ଏ ଚିଠି ପଢ଼ । ସବୁ ସଜାଡ଼ି ରଖିଥା । ମୁଁ ଏଇନେ ଆସୁଚି । ବଜାରକୁ ଯାଇ କାହ୍ନୁ ବାବୁ ଗୁଡ଼ାଖୁ, ନାତି ପାଇଁ ରଙ୍ଗୀନ ଜାମା, କଣ୍ଢେଇ କିଣି ଫେରି ଦେଖିଲେ ଅଜୟ ଚିଠିଟି ଧରି ସେମିତି ବସିଚି ଖଟ ଉପରେ । ଆଖିରୁ ତାର ଦୁଇଧାର ଲୁହ ଗଡ଼ିଯାଉଛି, ତାର ହୋସ ନାହିଁ ।

କାହ୍ନୁ ବାବୁ ତାକୁ ଠେଲିଦେଇ କହିଲେ, କିରେ ଇଏ କଅଣ, ଗାଡ଼ି ଆସିବାକୁ ଆଉ ମୋଟେ ଅଧଘଣ୍ଟାଏ ଅଛି, ତୁ ବସିଛୁ । ଜିନିଷପତର ସେମିତି ପଡ଼ିଚି । କିରେ କାନ୍ଦୁଚୁ କିଆଁ ?

-ବାପା, ଏ ନାତି ହେବାରେ ତୁମେ ମନରେ ଆନନ୍ଦ ପାଉଚ କେମିତି ?

-କାହିଁକି, କଅଣ ହେଲା ?

-ବାପା, ମୁଁ ତେବେ ଖୋଲି କହୁଚି । ବାହାହେବା ପରେ ଥରେ ମାତ୍ର ମୁଁ ଗୋଟିଏ ରବିବାରରେ ସେ ଗାଁକୁ ଯାଇଥିଲି; କିନ୍ତୁ ସେତେବେଳେ ସେ ମାରୁ ହୋଇଥିଲା । ଏ ପୁଅ ତେବେ ହେଲା କେମିତି ?

-ଓହୋ, ଏଇ କଥା । ରାମ, ରାମ । ଆମର ଏତେ ଧଇଲେ ଚଳେ କିରେ, ତୁ କେମିତି ହୋଇଥିଲୁ ? ମୁଁ ମୋ ଜୀବନରେ ପରା ମୋଟେ ତିନି ଚାରିଥର ଗାଁକୁ ଯାଇଚି, ପ୍ରତିଥର ବି ସେମିତି କିଛି ଗୋଟାଏ ଅସୁବିଧା ଥାଏ । ଆମେ ଚାକିରିଆ ଲୋକ, ଆମର ଏତେ ଧଇଲେ ଚଳେ । ପୂର୍ବକାଳେ କଥାରେ ହେଉଥିଲା ? ନିଜ ସ୍ତ୍ରୀର କେଉଁଆଡୁ ସନ୍ତାନ ହେଲା, ସେଥିରେ କୌଣସି ମୁନି ମୁଣ୍ଡ ଖେଳାଉ ନଥିଲେ । ଆନନ୍ଦରେ ତାକୁ ପାଳୁଥିଲେ ।

-ବାପା, ତେବେ ମୁଁ ବି ଏମିତି ଜନ୍ମ ହୋଇଥିଲି ?

-ଆରେ, ହଁ, ହଁ । ଚାଲ୍ ଉଠ୍, ବେଳ ହୋଇଗଲାଣି । କିଏ କାହାର ପୁଅରେ ! କେହି କା ପୁଅ ନୁହେଁ । ପିତା ଭାବଟାହିଁ ଅସଲ । ସେଦିନ ଦେଖିଲି କଦମ୍ ବାବୁ ଗୋଟାଏ ରୋଗୀଣା ପୁଅକୁ କାନ୍ଧରେ ପକାଇ ଧାଇଁଛି ଡାକ୍ତରଖାନା । ଆଶ୍ଚର୍ଯ୍ୟ ହୋଇ ପଚାରିଲି, କିହୋ, ବାହାହୋଇ ପୁଅ ହୋଇ

ପାରିଲାଣି, ଆମକୁ କହିନା । କହିଲା, ନା ମ, ମୋ ପୁଅ ନୁହେଁ- ମାନେ ମୋ ପୁଅ ଯେ, ଯାକୁ ବାହା ହୋଇଚି ତା'ର ପୁଅ । ଆଶ୍ଚର୍ଯ୍ୟ ହୋଇ ପଚାରିଲି, ମାନେ ! ସେ ସେମିତି ହସି କହିଲା, ମାନେ ତା'ର ଅବିବାହିତା ଅବସ୍ଥାରେ ପୁଅ ଏ । ମୋହ ମୁଦ୍‌ଗର ପଢ଼ିନୁ, କା ତବ କାନ୍ତା କଷ୍ଟେ ପୁତ୍ରଃ, ସଂସାରୋୟମ୍ । ଅତୀବ ବିଚିତ୍ର.... । ଉଠ୍ ଉଠ୍ ।

-ହଁ ବାପା, ସଂସାର ଆଉ ମଣିଷ ଅତି ବିଚିତ୍ର । ଚାଲ ଯିବା । ପୁଅ ପାଇଁ କଅଣ କିଣିଲ ଦେଖେ ।

# ଉଦ୍‌ଭ୍ରାନ୍ତ

କପିଳବାସ୍ତୁ । ରାଜା ଶୁଦ୍ଧୋଦନଙ୍କର ସୁରମ୍ୟ ପ୍ରମୋଦୋଦ୍ୟାନ । ସମୟ ସୂର୍ଯ୍ୟାସ୍ତ । ପ୍ରଥମ ବସନ୍ତର ସମାଗମରେ ଉଦ୍ୟାନର ଶୋଭା ଅପୂର୍ବ । କିଂଶୁକ, କୁରୁବକ, କୂଟଜ ପୁନ୍ନାଗ, ଅଶୋକ ପ୍ରଭୃତି ପୁଷ୍ପାବଳିରେ ତରୁରାଜି ନମିତ । ପିକକୁଳର ଅବିରାମ କୁହୁ କୁହୁ ସହିତ ଭ୍ରମରର ଗୁଞ୍ଜନ ମିଳିତ ହୋଇ ତୋଳିଛି ଏକ ଅପୂର୍ବ ଝଙ୍କାର । ପ୍ରାସାଦର ଲାସ୍ୟମୟୀ ତରୁଣୀମାନେ ପ୍ରମୋଦୋଦ୍ୟାନର ପୁଷ୍କରିଣୀରେ ଜଳକ୍ରୀଡ଼ାରେ ମାତିଛନ୍ତି । ସେମାନଙ୍କର ତରଙ୍ଗାୟିତ ତନୁ ଓ ଛନ୍ଦାୟିତ ହାସ୍ୟ ମନରେ ମତାଣିଆ ମଦିରା ପରିବେଷଣ କରୁଚି । ଗନ୍ଧବହ ମନ୍ଦେ ମନ୍ଦେ ନାନା ସୁବାସ ବିତରଣ କରୁଚି ।

ଅଦୂରରେ ଗୋଟିଏ ପ୍ରସ୍ତର ବେଦିକା ଉପରେ ଗୌତମ ମୌନୀ ଭାବରେ ବସିଛନ୍ତି । ଯୁବତୀମାନଙ୍କ ମୁହୁର୍ମୁହୁଃ କଟାକ୍ଷପାତ ପ୍ରତି ତାଙ୍କର ଭ୍ରୂକ୍ଷେପ ନାହିଁ । ଉଦାସ ଆଖିଯୋଡ଼ିକ ତାଙ୍କର ଅସୀମରେ ନ୍ୟସ୍ତ । ଚିନ୍ତାରେ ତାଙ୍କର କପାଳର ରେଖା ମଝିରେ ମଝିରେ ପରିସ୍ଫୁଟ ହୋଇ ଉଠିଚି । ତପ୍ତ ଦୀର୍ଘନିଶ୍ୱାସ ବାହାରି ଅସୀମରେ ମିଳାଇଯାଉଚି ।

ସେ ଭାବୁଛନ୍ତି... ଏ ବସନ୍ତ ଚିରସ୍ଥାୟୀ ନୁହେଁ, ଏ ଜୀବନ ମଧ ଚିରସ୍ଥାୟୀ ନୁହେଁ । ଏ ଦୁଇଟି ଅସ୍ଥାୟୀ ପରିବେଶରୁ ଏ ଉନ୍ମାଦନା ଅସ୍ଥାୟୀ ହେବ, ଏଥିରେ ସନ୍ଦେହ ନାହିଁ । ଅସ୍ଥାୟୀ ବସ୍ତୁ ବା ଭାବ ଦୁଃଖଦାୟକ । ଏ ଜୀବନର ଆଦ୍ୟରେ ଦୁଃଖ, ମଧରେ ଦୁଃଖ ଏବଂ ଅନ୍ତିମରେ ମଧ ଦୁଃଖ । ଏ ଜୀବନର ପ୍ରତ୍ୟେକ ମୁହୂର୍ତ୍ତ ଦୁଃଖଦାୟକ...

ଦୀର୍ଘନିଶ୍ୱାସ ପକାଇ ଗୌତମ ଅଶ୍ରୁପୂର୍ଣ୍ଣ ନୟନରେ ଚାରିଆଡ଼େ ଶୂନ୍ୟ ଦୃଷ୍ଟିରେ ଚାହିଁଲେ । ବିଗତ କେତେ ଦିନର ପ୍ରତ୍ୟେକଟି ଘଟଣା ବିଷୟରେ ସେ ପୁଣି ଭାବିବାକୁ ଲାଗିଲେ ।

...ସେହି ଜର୍ମିତ କଳେବର, ଗଳିତ ଚର୍ମ, ଦନ୍ତହୀନ ଜରାଗ୍ରସ୍ତ ବୃଦ୍ଧା, ସେଇ ପୂତିଗନ୍ଧମୟ, ମାର୍ଗପାର୍ଶ୍ୱରେ ପରିତ୍ୟକ୍ତ ଏବଂ ତଥାପି ନିର୍ଲ୍ଲଜ ଭାବରେ ଜୀବିତ ଜୀବନ । ସେଇ ଶବ ଏବଂ ଶବବାହକମାନଙ୍କ ପଛରେ ରୋରୁଦ୍ୟମାନା ନାରୀ-ଗୋଟି ଗୋଟି କରି ସବୁ ଦୃଶ୍ୟ ତାଙ୍କ ଆଖି ଆଗରେ ଭାସିଗଲା । ଦୁଇବିନ୍ଦୁ ଅଶ୍ରୁ ତାଙ୍କର ବକ୍ଷସ୍ଥିତ ରତ୍ନଖଚିତ ମୁକ୍ତାହାର ଉପରେ ପଡ଼ି ଗଡ଼ିଗଲା ।

...ତଥାପି, ତଥାପି ମନୁଷ୍ୟ ନିର୍ଲଜ୍ଜ ଓ ନିର୍ମମ ଭାବରେ ବଞ୍ଚି ରହିବାକୁ ଚାହେଁ । କାହିଁକି ?

ଗୌତମ ଗାତ୍ରୋତ୍‌ଥାନ କରି ଧୀରେ ଧୀରେ ପ୍ରାସାଦ ଆଡ଼କୁ ଅଗ୍ରସର ହେଲେ ଏବଂ ଦ୍ୱାରପାଳକୁ ଆଦେଶ ଦେଲେ ଛନ୍ଦକକୁ ରଥଯୋଜନା କରିବାକୁ ଆଜ୍ଞା ଦେବାପାଇଁ ।

ନିଜ କକ୍ଷ ମଧରେ ପ୍ରବେଶ କରିବାକୁ ଯାଇ ଦେଖିଲେ ଯୁବରାଣୀ ଗୋପା ଦ୍ୱାରଦେଶରେ ଦଣ୍ଡାୟମାନା । ଶିଶିର-ସ୍ନାତ କମଳକୋରକ ପରି ଆଖିଯୋଡ଼ିକ ତାଙ୍କର ଛଳଛଳ ।

ଗୌତମ ତାଙ୍କୁ ଉପେକ୍ଷା କରି କକ୍ଷମଧରେ ପ୍ରବେଶ କରିବାକୁ ଯାଆନ୍ତେ ଗୋପା ତାଙ୍କ

ହାତ ଧରି ଅଟକାଇଲେ । ଗୌତମ ବାଧା ନ ଦେଇ ନିର୍ବାକ ଭାବରେ ସେଇଠି ଛିଡ଼ାହୋଇ ରହିଲେ । ଦୃଷ୍ଟି ତାଙ୍କର ପୂର୍ବପରି ବେଦନାମୟ ।

ଗୋପା ଅଭିମାନଭରା କଣ୍ଠରେ କହିଲେ, ପ୍ରମୋଦୋଦ୍ୟାନକୁ ଏକାକୀ... । ରୁଦ୍ଧ ଅଭିମାନ ତାଙ୍କର ବାକ୍‌ରୁଦ୍ଧ କଲା ।

ଗୌତମଙ୍କ କପାଳର ରେଖା ପରିସ୍ଫୁଟ ହୋଇଉଠିଲା । ଗୋପାଙ୍କ ଆଡ଼କୁ ଚାହିଁ ସେ ଭାବିବାକୁ ଲାଗିଲେ, ଏ ତରଙ୍ଗାୟିତ ନିର୍ମୋକ ତଳେ ବୀଭତ୍ସ ଦୃଶ୍ୟ ଲୁକ୍‌କାୟିତ ଅଛି । ଏ ତୃଷ୍ଣା ସେଇ ବୀଭତ୍ସତାରୁ ଜାତ ।

ଥରେ ମାତ୍ର ଗୋପାଙ୍କ ଆଡ଼କୁ ଚାହିଁ ଗୌତମ କ୍ଷିପ୍ର ଗତିରେ ପ୍ରାସାଦରୁ ବାହାରିଗଲେ । ଉଦ୍‌ଗତ ଅଶ୍ରୁରୋଧ କରିବାର ଚେଷ୍ଟାରେ ଗୋପାଙ୍କର ବିମ୍ବୋଷ୍ଠାଗ୍ର କମ୍ପିତହେଲା । ଅଭିମାନର ଆତିଶଯ୍ୟରେ ସେ ଗୌତମଙ୍କର ପ୍ରତ୍ୟାବର୍ତ୍ତିତ ପଦଚିହ୍ନ ଉପରେ ଲୋଟି ପଡ଼ିଲେ ।

ଗୌତମଙ୍କର ରଥ ଯେତେବେଳେ ପ୍ରାସାଦ ଛାଡ଼ି ରାଜମାର୍ଗରେ ଧୀରେ ଧୀରେ ଅଗ୍ରସର ହେଉଚି ।

ଗୌତମ ଦେଖିଲେ ଅଦୂରରେ ଏକ ଅପୂର୍ବ ପୁରୁଷ । ହସ୍ତରେ ତାଙ୍କର କମଣ୍ଡଳୁ । କୌଣସି ବସ୍ତ୍ର ଅଙ୍ଗରେ ନାହିଁ ।

ଗୌତମ ରଥ ଅଟକାଇ ସନ୍ନ୍ୟାସୀଙ୍କ ନିକଟକୁ ଗଲେ । ସନ୍ନ୍ୟାସୀ ଉଦ୍‌ଭ୍ରାନ୍ତ ଦୃଷ୍ଟିରେ ଗୌତମଙ୍କ ଆଡ଼େ ଚାହିଁ ରହିଲେ । ଗୌତମ କିଛିକ୍ଷଣ ଅଭିଭୂତ ଭାବରେ ସନ୍ନ୍ୟାସୀଙ୍କ ଆଡ଼େ ଚାହିଁ ପଚାରିଲେ, ଆପଣଙ୍କର ପରିଚୟ ?

-ସେହି ପ୍ରଶ୍ନର ଉପଯୁକ୍ତ ଉତ୍ତର ପାଇବା ପାଇଁ ତ ମୁଁ ଗୃହତ୍ୟାଗ କରିଚି, ସନ୍ନ୍ୟାସୀ ସହସା ଉତ୍ତର ଦେଲେ ।

-ଆପଣ କଅଣ ଚିନ୍ତା କରୁଛନ୍ତି ?

-ବନ୍ଧୁ, କେଉଁ ବିଷୟରେ ଚିନ୍ତା କରିବି ଏ ପର୍ଯ୍ୟନ୍ତ ମୁଁ ନିରୂପଣ କରିପାରିନାହିଁ ।

-ଆପଣଙ୍କର ଗନ୍ତବ୍ୟ ?

-କିଏ ଜାଣେ ?

ସନ୍ନ୍ୟାସୀ ସହାସ ଅଭିବାଦନ କରି ବିଦାୟ ନେଲେ ।

ଏ କି ଅପୂର୍ବ ଜୀବ ! ଏହାଙ୍କର ବାସସ୍ଥାନ ନାହିଁ, ପରିଚୟ ନାହିଁ, ଧନ ନାହିଁ, ତଥାପି କି ଐଶ୍ୱର୍ଯ୍ୟବାନ ମନେହେଉଚନ୍ତି ଏ ! ଗୌତମ ଆଶ୍ଚର୍ଯ୍ୟ ଭାବରେ କିଛିକ୍ଷଣ ସନ୍ନ୍ୟାସୀ ଆଡ଼େ ଚାହିଁ ଛନ୍ଦକକୁ ପଚାରିଲେ, ଛନ୍ଦକ, ତୁମେ ଏହାଙ୍କୁ ଜାଣ ?

ଛନ୍ଦକ ସ୍ମିତ ହାସ୍ୟକରି ଉତ୍ତର ଦେଲେ, ଯୁବରାଜ, ଏମାନଙ୍କର ପରିଚୟ ଦେଶ, କାଳ, ପାତ୍ର ମଧ୍ୟରେ ନିବଦ୍ଧ ନଥାଏ । ଏମାନଙ୍କର ପରିଚୟ, ଏମାନଙ୍କର ଚିନ୍ତାଧାରା ଯାହା ଚିରନ୍ତନ ।

ରଥ ଫେରାଅ ଛନ୍ଦକ ! ଗୌତମ ଦୀର୍ଘ ନିଶ୍ୱାସ ପକାଇ ଆଦେଶ ଦେଲେ ।

ସେଇ ଦିନ ମଧ୍ୟରାତ୍ରରେ ସୁପ୍ତା ଗୋପାଙ୍କର ଶିଥିଳ ଆଲିଙ୍ଗନ ମୁକ୍ତ କରି ପୁତ୍ର ରାହୁଲଙ୍କ ଆଡ଼େ ଥରେ ମାତ୍ର ଚାହିଁ ଗୌତମ ରାଜପ୍ରାସାଦ ପରିତ୍ୟାଗ କଲେ । ପରଦିନ ପ୍ରଭାତ ନ ହେଉଣୁ ଛନ୍ଦକ ଗୌତମଙ୍କର ରତ୍ନହାର, ବହୁମୂଲ୍ୟ ପରିଚ୍ଛଦ ଏବଂ କର୍ତ୍ତିତ କୁଞ୍ଚିତ କେଶଦାମ ମହାରାଜ

ଶୁଦ୍ଧୋଦନଙ୍କ ପାଦତଳେ ରଖି ନୀରବରେ ଅଶ୍ରୁବିସର୍ଜନ କରିବାକୁ ଲାଗିଲେ । ଶୁଦ୍ଧୋଦନ ମସ୍ତକରେ ହସ୍ତ ରଖି ସେହିଠାରେ ବସିପଡ଼ିଲେ । ଅନ୍ତଃପୁରରେ ଗୋପା ଏ ସମ୍ବାଦ ପାଇ ମୂର୍ଚ୍ଛିତା ହେଲେ ।

• • •

ରାଜଗୃହର ଉପାନ୍ତରେ ଗୋଟିଏ ଆଶ୍ରମ ।

ଯୁବକ ଗୌତମ ନାନା ଦେଶ ପର୍ଯ୍ୟଟନ କରି ଦିନେ ତପ୍ତ ମଧ୍ୟାହ୍ନରେ ଆଶ୍ରମର ଦ୍ୱାରଦେଶରେ ଉପସ୍ଥିତ ହେଲେ । ଆଶ୍ରମ ମଧ୍ୟରୁ ଅଲାର କାଲାମ ଏବଂ ଉଦ୍ଦକ ରାମପୁତ୍ର ଆଶ୍ରମ ଭିତରକୁ ଯିବାପାଇଁ ଗୌତମଙ୍କୁ ସଙ୍କେତ ଦେଲେ ।

-କଣ ଚାହଁ ଯୁବକ ? କାଲାମ ପଚାରିଲେ ।

-ମୁଁ ଚାହେଁ ପରମ ସୁଖ । ଗୌତମଙ୍କର ଉତ୍ତର ବେଦନାମୟ ।

ରାମପୁତ୍ର କହିଲେ, ପରମ ସୁଖ ଜୀବନର ଲକ୍ଷ୍ୟ ହେବା ଉଚିତ ବତ୍ସ ! କେବଳ କଠୋର ସାଧନାଦ୍ୱାରା ତାହା ପ୍ରାପ୍ତ ହୁଏ । ଯେତେବେଳେ ମନ ନିସ୍ତରଙ୍ଗ ପୁଷ୍କରିଣୀ ପରି ସ୍ତବ୍ଧ, ସ୍ଥିର, କୌଣସି ଇଚ୍ଛାର ଉଦ୍ରେକ ନାହିଁ, ବତ୍ସ ! ସେତେବେଳେ ଜାଣିବ ତୁମ୍ଭର ସାଧନା ସାର୍ଥକ ହୋଇଛି । ସେ ଅବସ୍ଥାରେ ମନୁଷ୍ୟ ଅପାର ଆନନ୍ଦ ପାଏ । କଠୋର ସାଧନାରେ ତୁମ୍ଭେ ଅରୂପ ବ୍ରହ୍ମଲୋକ ପାଇବ ।

କାଲାମ କହିଲେ, କଠୋର ସାଧନାବଳରେ ତୁମ୍ଭେ ଅକିଞ୍ଚନାୟତନ ସ୍ତରରେ ଜନ୍ମଲାଭ କରିବ, ଯେଉଁଠାରେ ତୁମ୍ଭର ମନ ନିରୁଦ୍‌ବେଗ, ନିଥର ରହିବ ।

ଗୌତମ ମନୋଯୋଗ ଦେଇ ଉପଦେଶଗୁଡ଼ିକ ଶୁଣୁ ଶୁଣୁ ଅନ୍ୟମନସ୍କ ହୋଇଗଲେ । ମନରେ ତାଙ୍କର ପ୍ରଶ୍ନ ଜାତ ହେଲା, ମନର ଏପରି ଅବସ୍ଥା କଅଣ ଚରମଲକ୍ଷ୍ୟ ହେବା ଉଚିତ ? ମନର ଏପରି ଅବସ୍ଥାରେ ମୁଁ ମୋର ପ୍ରଶ୍ନର ଉତ୍ତର ପାଇପାରିବି କି ? ମାନବ ଜାତିର ଦୁଃଖର ଅବସାନର ଉପାୟ ପାଇବି କି ?

ଗୌତମଙ୍କ ମନ ନାନା ସନ୍ଦେହ-ଦୋଳାରେ ଦୋଳାୟିତ ହେବାକୁ ଲାଗିଲା । ରାତ୍ରିର ମଧ୍ୟମ ଯାମରେ କାଲାମ ଏବଂ ରାମପୁତ୍ର ଯେତେବେଳେ ଗଭୀର ଧ୍ୟାନରେ ନିମଜ୍ଜିତ, ଗୌତମ ଆଶ୍ରମ ତ୍ୟାଗ କରି ଚାଲିଲେ ତାଙ୍କର ସମସ୍ୟାର ସମାଧାନର ଅନ୍ୱେଷଣରେ ।

ଏ ଅନନ୍ତ ସୃଷ୍ଟିରେ ମନୁଷ୍ୟର ସ୍ଥାନ କେଉଁଠି ? ତାର ବିକାଶ କେଉଁ ଦିଗରେ ହେବା ଉଚିତ ? ଇନ୍ଦ୍ରିୟଜନିତ ସୁଖର ଅଭିବୃଦ୍ଧି, ନୂତନ ନୂତନ ଉପାୟ ଆବିଷ୍କାର କରିବାରେ ତାର ବୁଦ୍ଧିର ବିକାଶ କଅଣ ଶ୍ରେଷ୍ଠ ବିକାଶ ? ମନୁଷ୍ୟ କାହିଁକି ଇନ୍ଦ୍ରିୟଜନିତ ସୁଖ ପ୍ରତି ଅଧିକ ଆକୃଷ୍ଟ ହେଉଚି ?

କିଏ ଦେବ ଏହାର ଉତ୍ତର ! ପାଗଳ ପରି ଗୌତମ ମଗଧର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ବାରମ୍ବାର ଯାତାୟାତ କଲେ ଏହାର ସମାଧାନ ପାଇଁ । କୌଣସିଠାରେ ତାଙ୍କର ମନ ଏକାଧିକ ଦିନ ସ୍ଥିର ରହିଲା ନାହିଁ । ଦୁର୍ବାର ପ୍ରଶ୍ନର ଜ୍ୱାଳାରେ ସେ ଧାବମାନ । ସେ ଉଦ୍‌ଭ୍ରାନ୍ତ । ପୁଞ୍ଜୀଭୂତ ପ୍ରଶ୍ନର ଚାପରେ ମସ୍ତିଷ୍କର ସ୍ନାୟୁ ସର୍ବଦା ଉତ୍ତେଜିତ ।

କେତେଦିନ ହେଲା ତାଙ୍କର ଆହାର ନାହିଁ, ନିଦ୍ରା ନାହିଁ । କ୍ଳାନ୍ତ ଶ୍ରାନ୍ତ ହୋଇ ସେ ଗୋଟିଏ ଉନ୍ମୁକ୍ତ ପ୍ରାନ୍ତରେ ଶୋଇପଡ଼ିଲେ । ଆକାଶରେ ସେତେବେଳେ ସପ୍ତତାରକା ସମନ୍ୱିତ ପ୍ରଶ୍ନବାଚକ ଚିହ୍ନଟି ଅଧିକ ଜାଜ୍ୱଲ୍ୟମାନ ହୋଇ ଉଠିଚି ।

ପରଦିନ ପ୍ରଭାତ ସମୟରେ ଗୌତମ ଦେଖିଲେ, ସେ ଉରୁବେଲ ଅରଣ୍ୟର ଗୋଟିଏ

ଅତି ରମଣୀୟ ସ୍ଥାନରେ । ଚାରିଦିଗର ନିବିଡ଼ ଅରଣ୍ୟ ମଧ୍ୟରେ କୁଳୁସ୍ୱନା ନେରଞ୍ଜର ପ୍ରବାହିତ । ସ୍ଥାନେ ସ୍ଥାନେ ସ୍ନାନମଣ୍ଡପ । ବନାନୀର ଉପାନ୍ତରେ ବିସ୍ତୀର୍ଣ୍ଣ ଶସ୍ୟକ୍ଷେତ୍ର ଏବଂ ଦୂରେ ଶାନ୍ତ ସ୍ନିଗଧ୍ ଜନପଦ । ସମସ୍ତ ଦୃଶ୍ୟଟି ଯେପରି ଗୋଟିଏ ଚିତ୍ରପଟ ।

ଗୌତମ ନେରଞ୍ଜରରେ ଅବଗାହନ କରି ତା'ର ତଟରେ ଚିନ୍ତାମଗ୍ନ ହୋଇ ଉପବେଶନ କଲେ ।

...ଜଳସିକ୍ତ କାଷ୍ଠରୁ କଦାପି ଅଗ୍ନିର ଉଦ୍ଭବ ହୋଇ ନପାରେ-କେବଳ ଶୁଷ୍କ କାଷ୍ଠରୁ ହିଁ ଅଗ୍ନିର ସମ୍ଭବ । କାମନାସିକ୍ତ ଏ ଶରୀରରେ ଜ୍ଞାନାଗ୍ନି ଜାତ ହେବା ଅସମ୍ଭବ । କଠୋର କୃଚ୍ଛସାଧନା ଦ୍ୱାରା ଏ ଶରୀରରୁ ସମସ୍ତ କାମନା ନିଷ୍କାସିତ କରିବାକୁ ହେବ । ଏଇ ରମଣୀୟ ସ୍ଥାନ ମୋର ସାଧନାର କ୍ଷେତ୍ର ହେଉ ।

କୁହୁ, କୁହୁ, କୁଉ...ଉ...ଉହୁ ।

ଗୌତମ ଇନ୍ଦ୍ରିୟର ସମସ୍ତ ଦ୍ୱାର ରୋଧ କରି ଚିନ୍ତା କରିବାକୁ ଲାଗିଲେ । ତାଙ୍କର ମୁଖଗହ୍ୱରରେ ବାୟୁ ପ୍ରବେଶ କରି ମୃଦୁ ସ୍ୱନ ନିର୍ଗତ ହେବାରୁ ସେ ଦାନ୍ତରେ ଦାନ୍ତ ଚାପି ମୁଖ ବନ୍ଦକଲେ ଓ ଜିହ୍ୱାକୁ ତାଳୁରେ ଦୃଢ଼ ଭାବରେ ଚାପିଧରିଲେ । ଧୀରେ ଧୀରେ ସେ ନିଶ୍ୱାସ ନିୟନ୍ତ୍ରଣ କରି କିଛିଦିନ ପରେ ନିଶ୍ୱାସ ନେବା ସ୍ଥଗିତ କଲେ । ଧମନୀରେ ତୀବ୍ର ବେଗରେ ମସ୍ତିଷ୍କ ଆଡ଼କୁ ରକ୍ତପ୍ରବାହର ଶବ୍ଦ ସେ ଶୁଣିବାକୁ ପାଇଲେ । ଥରେ ମନେହେଲା ତାଙ୍କ ତାଳୁ ଦୁଇଭାଗ ହୋଇଯାଉଛି । ଗୌତମ ତଥାପି ନିଶ୍ଚଳ ।

ପ୍ରତିଦିନ ନିଜର ଆହାର ପରିମାଣ ହ୍ରାସ କରି ଶେଷରେ ସେ ଗୋଟିଏ ମାତ୍ର ଶସ୍ୟକଣା ଆହାର କରିବାକୁ ଲାଗିଲେ । ଦିନେ ସେ ଶସ୍ୟକଣା ମଧ୍ୟ ତ୍ୟାଗକରି ଆହାର କଲେ ବନ୍ୟ ତୃଣ ।

କିନ୍ତୁ ଏ ତୃଣ ମଧ୍ୟ ରସମୟ...

ତୃଣ ତ୍ୟାଗ କରି ଗୌତମ ଶୁଷ୍କ ଗୋମୟ ଆହାର କଲେ ।

ସମସ୍ତ ଶରୀର ବୃହତ ଅଗ୍ନିମୟ ପାତ୍ରରେ ସିଦ୍ଧବତ୍ ତାଙ୍କର ମନେହେଲା । କେତେବେଳେ ମନେହେଲା ସହସ୍ର ଦନ୍ତୁରିତ କ୍ଷୁରିକା ଦ୍ୱାରା ତାଙ୍କର ଉଦର କିଏ ଧୀରେ ଧୀରେ କର୍ତ୍ତନ କରୁଛି ।

ଗୌତମ ତଥାପି ନିଶ୍ଚଳ, ସ୍ତବ୍ଧ, ମୌନ ।

କିନ୍ତୁ କାହିଁ ସେ ଜ୍ଞାନ ଆଲୋକ ? କାହିଁ ଏ ଜୀବନ ପ୍ରହେଳିକାର ସମାଧାନ ? କାହିଁକି ଏ ଜୀବର ସୃଷ୍ଟି ? କାହିଁକି ପୁଣି ମୃତ୍ୟୁ ? କେଉଁଥିରୁ ଏହାର ଉଦ୍ଭବ ? କେଉଁଥିରେ ଏହାର ବିଲୋପ ? ସମାଧାନର ଉତ୍କଣ୍ଠାରେ ଗୌତମଙ୍କ ଶ୍ୱାସରୋଧ ହୋଇଆସିଲା ।

...ଏ ଜୀବନର ବିଲୋପ ହିଁ ଶ୍ରେୟ ଯଦି ସମାଧାନ ଅସମ୍ଭବ...

...ବିଲୋପ ଦ୍ୱାରା ସମାଧାନ ହେବ କିପରି ? ନା, ଶରୀରକୁ ଯାତନା ଦେଇ ସମାଧାନ ଅସମ୍ଭବ । ଶରୀରକୁ ଯେତେ ଯାତନା ଦେଉଚି, ସେ ସେତେ ପ୍ରାଧାନ୍ୟ ଲାଭ କରୁଚି ।

ଗୌତମ ଧୀରେ ଧୀରେ ଗାତ୍ରୋତ୍‌ଥାନ କରି ଆହାର ସଂଗ୍ରହ କରି ଆହାରକଲେ । ଯେଉଁ ପାଞ୍ଚଜଣ ତପସ୍ୱୀ ଅଦୂରେ ଗୌତମଙ୍କ ସହିତ ତପସ୍ୟା କରୁଥିଲେ, ସେମାନେ ଗୌତମଙ୍କୁ ଆହାର କରିବାର ଦେଖି କାଳେ ସେମାନଙ୍କ ମନ ଆହାର ପ୍ରତି ଆକୃଷ୍ଟ ହେବ, ସେହି ଭୟରେ ସେ ସ୍ଥାନ ଛାଡ଼ି ପଳାୟନ କଲେ ।

ଆହାର ପରେ ଗୌତମ ସୁସ୍ଥ ହୋଇ ଧ୍ୟାନମଗ୍ନ ହେଲେ । ପୃଥିବୀର ଜନ୍ମରୁ ଜୀବନ ପ୍ରବାହର ପ୍ରତ୍ୟେକ ଅବସ୍ଥା ତାଙ୍କ ମାନସପଟରେ ଉଦ୍ଭାସିତ ହେବାକୁ ଲାଗିଲା । ଯୁଗେ ଯୁଗେ ବଞ୍ଚିରହିବାର କାମନା ଏବଂ ସେ କାମନାରୁ ଜାତ କର୍ମ ଏବଂ କର୍ମରୁ ଜାତ ଦୁଃଖ, ପ୍ରତ୍ୟେକ ଜୀବର ଦୁଃଖ ସେ ପରିଷ୍କାର ଅନୁଭବ କରିପାରିଲେ । ଜ୍ଞାନର ଆଲୋକରେ ତାଙ୍କ ମୁଖମଣ୍ଡଳ ଦିବ୍ୟ ଜ୍ୟୋତି ଧାରଣ କଲା ।

...ପାଇଚି, ଜ୍ଞାନର ଆଲୋକ ମୁଁ ପାଇଚି...

ଗୌତମ ଧୀରେ ଧୀରେ ଆସନ ତ୍ୟାଗ କରି ଆଖି ମେଲି ଚାରିଆଡ଼କୁ ଚାହିଁଲେ । ମନ ତାଙ୍କର ପ୍ରଶାନ୍ତ, ସ୍ଥିର ନିଶ୍ଚିତ ।

...ମୁଁ ବୁଦ୍ଧ, ଜୀବର ଦୁଃଖ ମୁଁ ମୋର ଜ୍ଞାନଦ୍ୱାରା ଦୂର କରିବି...

...କିଏ ମୋର ପ୍ରଥମ ଶିଷ୍ୟ ହେବ ?

ବୁଦ୍ଧ ଧୀରେ ଧୀରେ ଅଗ୍ରସର ହେଲେ । ପ୍ରତ୍ୟେକ ପଦକ୍ଷେପରେ ଆନନ୍ଦର ଗୀତି ଝଙ୍କୃତ ହେବାକୁ ଲାଗିଲା ।

ଅନତିଦୂରରେ ସନ୍ନ୍ୟାସୀଙ୍କୁ ଦେଖି ବୁଦ୍ଧ ତାଙ୍କୁ ସଙ୍କେତଦ୍ୱାରା ଡାକିଲେ । ସନ୍ନ୍ୟାସୀ ସ୍ମିତହାସ୍ୟ କରି ବୁଦ୍ଧଙ୍କ ସମ୍ମୁଖରେ ଛିଡ଼ାହେଲେ । ବୁଦ୍ଧ ଚିହ୍ନିପାରିଲେ, ଏ ପୂର୍ବର ସେହି ସନ୍ନ୍ୟାସୀ ।

-ସନ୍ନ୍ୟାସୀ, ମୁଁ ବୁଦ୍ଧତ୍ୱ ପ୍ରାପ୍ତ ହୋଇଚି ।

ସନ୍ନ୍ୟାସୀ ଅଭିବାଦନ କଲେ । ଦୃଷ୍ଟି ତାଙ୍କର କିନ୍ତୁ ପୂର୍ବପରି ଉଦ୍‌ଭ୍ରାନ୍ତ ।

-ମୁଁ ଚରମ ସତ୍ୟ ଲାଭ କରିଚି ।

ସନ୍ନ୍ୟାସୀ ଉଦ୍‌କର୍ଣ୍ଣ ହୋଇ ଚାହିଁଲେ ।

-ଏ ଜୀବନ ଦୁଃଖପୂର୍ଣ୍ଣ ।

-ଦୁଃଖ ? ସନ୍ନ୍ୟାସୀ ଧୀରେ ଧୀରେ ମସ୍ତକ ଚାଳନାକଲେ ।

-ଦୁଃଖର କାରଣ କାମନା, ବୁଦ୍ଧ ନିଶ୍ଚୟତା ଜ୍ଞାପକ ସ୍ୱରରେ କହିଲେ ।

-କାମନା ? ସନ୍ନ୍ୟାସୀ ସନ୍ଦିଗ୍ଧ ଭାବରେ ପଚାରିଲେ ।

-କାମନାର ବିନାଶରେ ଦୁଃଖର ବିନାଶ । ବୁଦ୍ଧ ଦୃଢ଼କଣ୍ଠରେ କହିଲେ ।

-ବିନାଶ ? ସନ୍ନ୍ୟାସୀ ସ୍ମିତହାସ୍ୟ ସହ ପଚାରିଲେ ।

-ସନ୍ନ୍ୟାସୀ, ତୁମେ ଉଦ୍‌ଭ୍ରାନ୍ତ । ମୁଁ ବୁଦ୍ଧ ।

-ବନ୍ଧୁ, ହୋଇପାରେ । ତୁମ୍ଭେ ଅଗ୍ରସର ହୁଅ ବନ୍ଧୁ !

ସନ୍ନ୍ୟାସୀ ଅନ୍ୟ ମାର୍ଗରେ ଅଗ୍ରସର ହେଲେ ।

ବୁଦ୍ଧ ରାଜଗିରି ଆଡ଼େ ଅଗ୍ରସର ହେଉ ହେଉ ଭାବିଲେ, ମୋର ପ୍ରଥମ ଶିଷ୍ୟ ମୋର ସତ୍ୟର ପ୍ରଥମ ସନ୍ଦେହୀ । ଚରମ ସତ୍ୟ ପାଇବା ପାଇଁ ମନୁଷ୍ୟ ବୁଦ୍ଧିର ବିକାଶ ସୁନିଶ୍ଚିତ ।

...କିନ୍ତୁ...କିନ୍ତୁ... ସନ୍ନ୍ୟାସୀ କଅଣ ଭାବୁଚନ୍ତି- ଦୁଃଖ ବା ସୁଖର ଅନୁଭୂତି...ମନର ବିକାର ମାତ୍ର ଏବଂ ଚରମ ସତ୍ୟ ଦୃଷ୍ଟିରୁ ଦୁହେଁ ଏକହିଁ ନିୟମଦ୍ୱାରା ସୃଷ୍ଟ ଦୃଷ୍ଟେ ଦୁହିଁଙ୍କ ଭିତରେ ମୌଳିକ ପାର୍ଥକ୍ୟ ନାହିଁ ? ଶୁଷ୍କକାଷ୍ଠ ଓ ପ୍ରସ୍ଫୁଟିତ କୁସୁମ ଦୁହେଁ ହିଁ ବିରାଟର ବିଭିନ୍ନ ପ୍ରକାଶ ମାତ୍ର ଦୃଷ୍ଟେ ଦୁହେଁ ହିଁ ମହାନ୍ ? କିନ୍ତୁ ସେ କଥା ପରେ । ପ୍ରଥମେ ସାମାଜିକ ମନୁଷ୍ୟର ସଂସ୍କାର ଆବଶ୍ୟକ ।

# ଗୋଟିଏ ମଧ୍ୟବିତ୍ତ ପରିବାରରେ ମୂଷା

ଶୀତ ପଡ଼ିଆସିଲାଣି । ଦିନ ତମାମ ଖଟିଖଟି ଚାଷୀମୂଲିଆ କଚେରିଆମାନେ କ୍ଲାନ୍ତ ପଦରେ ଘରକୁ ଫେରୁଥିବା ଭଳି 'ଖଣ୍ଡ ଖଣ୍ଡ ଧଳାମେଘ ସୁନୀଳ ଅମ୍ବରେ' ଧୀର ମନ୍ଥର ଗତିରେ ଘରକୁ ଫେରିବାକୁ ଲାଗିଲେଣି । ଉଦାସ ବାହୁଡ଼ା । ବଞ୍ଚିଥିଲେ ପୁଣି ଆସନ୍ତା ବର୍ଷକୁ ଦେଖାସାକ୍ଷାତ । ଫୁଲକୋବିର ନମୁନାମାନ କିଛି କିଛି ବଜାରକୁ ଆସିବାକୁ ଲାଗିଲେଣି । ଗୋଲେଇ ଏକ ଇଞ୍ଚ । ଗୋଟି ପଚାଶପଇସା । ପଚାଶପଇସା ! ଏଠି ଦରଦସ୍ତୁର ନାହିଁ, ହାତୀକା ଦାନ୍ତ ମରଦ୍‌କା ବାତ୍, ଲବତ ଲିଅ, ଲା ଲବତ ଲାଇ, ଲବ ବାଲାଙ୍କୁ ବାଟ ଛାଡ଼ିଦିଅ ବାଆଉ ହଟିଯାଅ । ଦୋକାନୀମାନଙ୍କଠାରୁ ଏ କଥାମାନ ଶୁଣି ମଧ୍ୟବିତ୍ତ (ଏଣେ ପୁଅ ବାହାକୁ ମନ, ତେଣେ ତେଲ ଘଡ଼ିରେ ହାତ, ଶ୍ୟାମ ରାଖି କି କୁଲ୍ ରାଖି, ଟୁ ବି ଅର୍ ନଟ୍ ଟୁ ବି ଦ୍ୟାଟ୍ ଇଜ୍ ଦି କ୍ୱେଶ୍ଚେନ୍ । ଅର୍ଥନୀତିକ, ସାମାଜିକ, ଆଧ୍ୟାତ୍ମିକ ଆଦି ସବୁ କ୍ଷେତ୍ରରେ ଦୁଇ ନୌକାରେ ଗୋଡ଼ ରଖି ଅସହ୍ୟ ମାନସିକ ଯନ୍ତ୍ରଣା ଭୋଗୁଥିବା ଜୀବ) ମାନେ କୋବି କିଣି ନ ପାରି ବା ହଠାତ୍ ବେପରୁଆ ହୋଇ କୋବି କିଣି ପକାଇ ମୁହଁ ଫଣଫଣ କରି ଘରକୁ ଫେରିବାକୁ ଲାଗିଲେଣି ।

ରାତି ତିନି ବାଜିବାର ଅଳ୍ପ ସମୟ ପୂର୍ବରୁ ସମସ୍ତଙ୍କୁ ନିଦ ମାଡ଼ିଆସିଲା । ପରିବାରଟିଯାକ ଯିଏ ଯାହାର ଜଗି ରହିଥିବା ସ୍ଥାନରେ ନାନା ଅଦ୍ଭୁତ ଭଙ୍ଗୀରେ ଶୋଇଗଲେ । ତିନିରାତି ହେବ, ପରିବାରଟିଯାକ ଛକିଛନ୍ତି କିଏ ସାନପୁଅର ସକାଳ ଜଳଖିଆ ଛେନା ଖାଇଯାଉଛି ତାକୁ ଧରି ନିସ୍ତୁକ ଟାଙ୍କେ ଛେଚିବେ ବୋଲି । ସେଥିରେ ସେ ମରିଯାଉ ପଛେ, ସେଥିପାଇଁ ଯାହା ପାପ ହେବାର ହେଉ ବା ଫାଶି ହେଉ ପଛେ, କୁଛ୍ ପରଆ ନେହିଁ କରୁଙ୍ଗା, ନେହିଁ କରେଙ୍ଗା ।

ସାନପୁଅର ଦେହ ଖରାପ । ଡାକ୍ତର ତ ମାଳେ ଔଷଧ ଲେଖିଦେଇ ତା' ସାଙ୍ଗକୁ ମାଂସ, ଅଣ୍ଡା, ଦୁଧ, ଛେନା ଆଦି ପୁଷ୍ଟିସାର ଖାଦ୍ୟ ଖାଇବା ନିହାତି ଦରକାର କହି ଖଲାସ । ଆଜିକାଲି ତ ସାମାନ୍ୟ ସାମାନ୍ୟ କଥାପାଇଁ ଏତେ ସୂକ୍ଷ୍ମ (ଯଥା-'ମଧ୍ୟବିତ୍ତ ପରିବାରରେ ଶାଶୁର ସ୍ଥାନ' ବିଷୟରେ ଗଭୀର ଗବେଷଣା କରି ଜଣେ ସମାଜ ବିଜ୍ଞାନରେ ଡକ୍ଟରେଟ ପାଇଲାଭଳି) ଗବେଷଣା ହୋଇ ଏଡ଼େ ବିରାଟ ବିରାଟ ଶାସ୍ତ୍ର ଲେଖା ହେଉଚି ଯେ ପ୍ରତ୍ୟେକ ବିଷୟ ଅନ୍ୟଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇଯାଉଛି । ତେଣୁ ଚିକିତ୍ସା ବିଜ୍ଞାନ ବା କାହିଁକି ଅର୍ଥବିଜ୍ଞାନ-ପାଇଁ ମୁଣ୍ଡ ଖେଳାଇବ । ଯାହା କଥା ସିଏ ସମ୍ଭାଳୁ । କିନ୍ତୁ ପରମାଣୁ ବିଜ୍ଞାନଠାରୁ ଆରମ୍ଭ କରି ସବୁ ବିଜ୍ଞାନକୁ ଏକା ସାଙ୍ଗରେ ସମ୍ଭାଳିବ ତ ବିଚାରା ଏକକ ବ୍ୟକ୍ତିଟି । ସେଥିଯୋଗୁ ତାହାର ଯେ କି ହଲାପଟା, ଧାଁଧପଡ଼, ଦୁର୍ଭାବନା, ବ୍ୟର୍ଥତା, ହୀନମନ୍ୟତା ଓ ତା'ପାଇଁ ପୁଣି ଈର୍ଷା କ୍ରୋଧ, ତାକୁ ଦେଖୁଚି କିଏ ନା ଦେଖିଲେ ପଚାରୁଛି କିଏ !

ଗୃହକର୍ତ୍ତା ବିଜୟବାବୁ ଓ ତାଙ୍କ ସ୍ତ୍ରୀ ଅନୁପମା ଅନେକ ଚିନ୍ତା କରି ଅନେକ ବୁଦ୍ଧି ଖଟାଇ ନାନାଆଡୁ ଟିକିଏ ଟିକିଏ ଖର୍ଚ୍ଚକାଟ କରି ଛେନା ବନ୍ଦୋବସ୍ତ କରିପାରିଛନ୍ତି । କିନ୍ତୁ ଭାଗ୍ୟର କ୍ରୁର ପରିହାସ ଦେଖ ଯେ ନିଇତି ରାତିରେ ତାକୁ କିଏ ଖାଇ ଯାଉଛି । ଅଧକିଲୋ (ଗଉଡ଼ ଶୂନ୍ୟକୁ ଛୁଇଁ ହଲପ କରିବାମତେ) ଖାଣ୍ଟି ଦୁଧରୁ ମାତ୍ର ଏତିକି ଛେନା । ସେତକ ବି ବାଏଁ ବାଏଁ ଉଡ଼ିଯାଉଛି । ଅବଶ୍ୟ ତାଟିଆରେ କିଛିଟା ରହିଯାଉଛି । କିନ୍ତୁ ତାକୁ ଖାଇବାକୁ ଦେବାକୁ ସାହସ ହେଉନାହିଁ । ସାପ କି ବେଙ୍ଗ କି ହାତୀ କି ମୂଷା କି ବିରେଇ କି ମଣିଷ କିଏ ଖାଉଛି ନ ଜାଣି କେମିତି ବା ଦିଆଯିବ ଖାଇବାକୁ !

ସେଇ ଅଜଣା ଶତ୍ରୁକୁ ଜାଣିବାକୁ ତିନିରାତି ହେବ ସମସ୍ତ ପରିବାରଟି (ପିଲାଏ ନିଛକ କୌତୂହଳତା ବଶତଃ) ରାତି ଦଶଟା ଭିତରେ ସବୁ କାମ ସାରି ନାନା ହାତହତିଆର ଧରି ଭିନ୍ନ ଭିନ୍ନ ସ୍ଥାନରେ ଜଗି ବସୁଛନ୍ତି । ବିଜୟ ଘରେ ଥିବା ସବୁଠାରୁ ମାରାତ୍ମକ ଅସ୍ତ୍ର, ଗୋଟାଏ ନାତିଦୀର୍ଘ ମୋଟା ଠେଙ୍ଗା ଧରି ସଦର ଦୁଆରମୁହଁ ଜଗନ୍ତି । ଛେନାଚୋର (ସିଏ ଜନ୍ତୁ ବା ମଣିଷ ଯିଏ ହେଉ) ଯେ ନିଶ୍ଚୟ ସଦର ଦରଜାବାଟେ ଆସିବ ସେପରି ଭାବିବାର କୌଣସି ଯୁକ୍ତିଯୁକ୍ତ କାରଣ ଥାଇ ନ ପାରେ । ଖାଲି ଗୃହର କର୍ତ୍ତା ହିସାବରେ ଘରର ପ୍ରଧାନ ପ୍ରବେଶ ପଥର ଦାୟିତ୍ୱ ତାଙ୍କର ନେବା ଉଚିତ ଏବଂ ସବୁଠାରୁ ମାରାତ୍ମକ ଅସ୍ତ୍ରଟି ମଧ ତାଙ୍କରି ଦାୟିତ୍ୱରେ ରହିବା ଉଚିତ; ଏହିପରି ଏକ ଆତ୍ମାଭିମାନମୂଳକ ଯୁକ୍ତି ଅନୁସାରେ ବିଜୟ ସେ ସବୁ ଆବୋରିଛନ୍ତି । ଯଦିଓ ସଦର ଦରଜା ଟିକିଏ ଦୂରରେ ହୋଇଥିବାରୁ ତାଙ୍କୁ ସେଠି ଏକା ରହିବାକୁ ଡରମାଡ଼େ (ଯାହାକୁ ଏଡ଼ିବାପାଇଁ ସେ ମଝିରେ ମଝିରେ 'ହଇହୋ ଶୁଣୁଛ' ବୋଲି ମିଛୁଟାରେ ଡାକ ଛାଡ଼ି ଅନୁପମାର ବିରକ୍ତି ଉତ୍ପାଦନ କରୁଥାନ୍ତି) ଏବଂ ତାଙ୍କ ଠେଙ୍ଗା ଧରିବାର ଧରଣ ଶତ୍ରୁଠାରୁ ତାଙ୍କ ନିଜ ଭିତରେ ହିଁ ବେଶି ଆତଙ୍କ ସୃଷ୍ଟି କରୁଥାଏ । ଅନୁପମା ଜଗନ୍ତି ରୋଷେଇଘର ଦୁଆର ମୁହଁରେ, ବଡ଼ପୁଅ ଗାଧୋଇବା ଘର ନଳାପାଖେ । ମଝିଆପୁଅ ଜଗେ ଶୋଇବାଘରର ଝରକା ପାଖେ । ସାନପୁଅକୁ କୌଣସି ଡିଉଟି ଦିଆହୁଏ ନାହିଁ କି ଝିଅକୁ ବି ନୁହେଁ ।

ତଥାପି ତୃତୀୟ ରାତିରେ ବି ସେଇୟା ଘଟିଲା । ରାତି ସାଢ଼େ ତିନ ବେଳକୁ ବିଜୟ ଚମକି ଚେଇଁ ଦେଖନ୍ତି ତ ସେ ସଦର ଦରଜା ପାଖରେ ଚାରିକାତ ମେଲାଇ ଶୋଇଯାଇଛନ୍ତି । ଠେଙ୍ଗାଟା ତାଙ୍କ ଛାତି ଉପରେ ଲମ୍ବେ ଲମ୍ବେ ରହି ନିଃଶ୍ୱାସ ପ୍ରଶ୍ୱାସ ସହିତ ଉଠୁଚି ପଡୁଚି- ଯେମିତି ମୃଣ୍ଡ ଟୁଙ୍ଗାରି ସେ କହୁଚି, ଶୋଇଯାଆ ମ । ସେ ସେମିତି ପଡ଼ିରହି ଅନୁପମା ଆଡ଼େ ଚାହିଁ ଦେଖନ୍ତି ତ ସେ ରୋଷେଇ ଘରର ଅଣଓସାରିଆ ଦୁଆର ମୁହଁ ଉପରେ ଶୋଇଯାଇଛନ୍ତି । ଗୋଡ଼ ଦି'ଟା ତାଙ୍କର କାନ୍ଥ ଉପରକୁ ଟେକାହୋଇ ରହିଚି । ଗୋଟାଏ ହାତ ତାଙ୍କର ଟେକାହୋଇ ଫାଳେ କବାଟକୁ ଜାବୋଡ଼ି ଧରିଛି । ଯେ କୌଣସି ସ୍ଥାନରେ, ଯେ କୌଣସି କାଳରେ, ଯେ କୌଣସି ଅବସ୍ଥାରେ ନିଘୋଡ଼ ନିଦରେ ଶୋଇଯିବାର ବର ସେ ପାଇଛନ୍ତି ବିଷ୍ଣୁଙ୍କଠାରୁ, ଯିଏ କି ପ୍ରଳୟକାଳରେ ଉତ୍ତାଳ ତରଙ୍ଗମୟ ସମୁଦ୍ରବକ୍ଷରେ ଗୋଟାଏ ଭୟଙ୍କର ସାପ ଉପରେ ଶୋଇଯାଇପାରନ୍ତି । ଅନୁପମାଙ୍କ ଟେକା ହାତଟିକୁ ମାଧ୍ୟାକର୍ଷଣ ଶକ୍ତି ମଝିରେ ମଝିରେ ଖସାଇ ପକାଉଥାଏ । ସେ ସାଙ୍ଗେ ସାଙ୍ଗେ ପୁଣି ହାତଟିକୁ ଟେକି କବାଟକୁ ଜାବୋଡ଼ି ଧରୁଥାନ୍ତି । ମାଧ୍ୟାକର୍ଷଣ ଥରକୁ ଥର ହାତଟିକୁ ସ୍ୱାଭାବିକ ସୁଖକର ଅବସ୍ଥାକୁ ଆଣୁଥାଏ । ପ୍ରତିଥର କିନ୍ତୁ ହାତଟି ଚାଲିଯାଉଥାଏ ସେଇ ଅସ୍ୱାଭାବିକ ଅବସ୍ଥାକୁ, ଯାହା ନିଦ ଲାଗିଲାବେଳେ ସାମୟିକ ଭାବରେ ସୁଖକର ଲାଗିଥିଲା । ଏ କ୍ରିୟା ପ୍ରତିକ୍ରିୟାରେ କିନ୍ତୁ

ଅନୁପମାଙ୍କ ସୁଖନିଦ୍ରାରେ ସାମାନ୍ୟ ବ୍ୟାଘାତ ବି ଘଟୁ ନ ଥାଏ । ନିଘୋଡ଼ ନିଦ ଭିତରେ ବି ମାଧ୍ୟାକର୍ଷଣର କ୍ରିୟା ଓ ଅଚେତନ ଦେହର ଯାନ୍ତ୍ରିକ ପ୍ରତିକ୍ରିୟା ଭିତରେ ଏ କୌତୁକ ଲୀଳା ଦେଖି ବିଜୟ ଟିକିଏ ହସିଲେ । କିନ୍ତୁ ପରମୁହୂର୍ତ୍ତରେ ତାଙ୍କର ଭାରି ରାଗ ହେଲା । ଚିତ୍କାର କରି ସେ କହିଲେ ! କଅଣ ମୋର ଟିକେ ଛାଇନିଦ ହେବା ମାତ୍ରେ ସମସ୍ତେ ଶୋଇଗଲ । କାହାରି ଟିକିଏ ଦାୟିତ୍ୱବୋଧ ନାହିଁ, ଆଏଁ । ଦେଖନା ଆଏଁ ।

ସମସ୍ତେ ଯେ ଯାହା ଶୋଇବା ଜାଗାରୁ ଧଡ଼ପଡ଼ କରି ଉଠି ରୋଷେଇଘର ଭିତରକୁ ପଶିଯାଇ ଦେଖନ୍ତି ତ କାମ ଶେଷ । ପରସ୍ପର ମୁହଁକୁ ସମସ୍ତେ ଆବାକାବା ହୋଇ ଚାହିଁ ରହିଲେ । କିଛିକ୍ଷଣ ପରେ ବିଜୟ କହିଲେ- କି ଆଚମ୍ବିତ କଥା ଯେ । ଠିକ୍ ସିଏ ଆସିବା ବେଳକୁ ଆମ ସମସ୍ତଙ୍କ ନିଦ କାହୁଁ ମାଡ଼ି ବସୁଛି । ଏ କଅଣ ଦୈବୀ ମାୟା ।

ଏହାର ଯୁକ୍ତିଯୁକ୍ତ ସ୍ୱାଭାବିକ ପ୍ରାକୃତିକ କାରଣଟି ଟିକିଏ ଚିନ୍ତା କଲେ ଅବଶ୍ୟ ମିଳନ୍ତା । ଯଥା-ଯିଏ ଲୁଚି ଲୁଚି ଛେନା ଖାଇବାକୁ ଆସୁଚି ସିଏ ଯେ କୌଣସି ପ୍ରାଣୀ ହୋଇଥାଉନା କାହିଁକି ନିଶ୍ଚୟ ତାକୁ ଜଣା(ପ୍ରକୃତିଦତ୍ତ ଆତ୍ମରକ୍ଷା ପ୍ରବୃତ୍ତି ସେ ଜ୍ଞାନ ଦେଇଛି ତାକୁ) ଯେ ଶୀତଦିନ ରାତି ଶେଷଆଡ଼କୁ ମଣିଷମାନଙ୍କୁ ନିଦ ମାଡ଼ିବସେ, ତେଣୁ ଘରୁ ଚୋରି କରିବାର ସେଇଟା ହେଉଛି ପ୍ରକୃଷ୍ଟ ସମୟ । ଶୀତର ପ୍ରଥମ ଆକ୍ରମଣ ଆରମ୍ଭ ହୁଏ ରାତିର ଶେଷ ଯାମରୁ । ମନ୍ଦିରମାନଙ୍କରେ ଯେତେବେଳେ ଘଣ୍ଟା ଘଣ୍ଟା ରାବ, ମୃଦଙ୍ଗର ଗମ୍ଭୀର ନିନାଦ ସହ ଭାଙ୍କାର ରାଗରେ (ପ୍ରାତଃକାଳୀନ ରାଗ ଗୋଷ୍ଠୀର ଏକ ରାଗ, ଯାହାର ବିସ୍ତାର ଶୁଣିଲେ ମନେହୁଏ ଜଣେ ନିଦରୁ ଉଠି ଭିଡ଼ିମୋଡ଼ି ହୋଇ ଅଳସ ଭାଙ୍ଗି ଦେହର ଜଡ଼ତା ନାଶ କରୁଛି) ଆବାହନୀ ବୋଲା ହେଉଥାଏ-ଆରେ କିବା ମଙ୍ଗଳ ଆରତି ଗଗନିକ ପଟମେ, ଜାଗୋ ନଗର ବାସୀ ଭଇଲ ଅନ୍ତରମେ; ଅବା ଗୀର୍ଜା ଚୂଡ଼ାରୁ ଘଣ୍ଟା ଧ୍ୱନି ଆହ୍ୱାନ କରୁଥାଏ-ୱେ୍ୟକ୍ ଅପ୍ ବ୍ରିଦେରେନ୍, ଦି ଲାଇଟ୍ କମେଥ୍, ହେଏଲ୍ ଓ ହେଭେନ୍‌ଲି ଲାଇଟ୍ ହେଏଲ୍; ଅବା ମସ୍‌ଜିଦ୍ ମିନାରରୁ ମୁୟାଜ୍ଜ ଜିନ୍ ଶୁଭୁଥାଏ-ଆଲ୍‌ହୁଲ ଆକ୍‌ବର, ଆଲ୍‌ଲା ଇଲ୍ଲାହା ଇଲ୍ ଅଲ୍ଲାହ ମହମ୍ମଦର୍‌ସୁଲ୍ଲଲ୍ଲାଲ୍‌ଲାହୁ, ସେତେବେଳେ କିନ୍ତୁ ବିଛଣାରେ ଗୃହସ୍ଥ ଧୃତ ଚିଙ୍ଗୁଡ଼ି ରୂପ ଜୟଜଗଦୀଶ ହରେ ଓ ଚୋରମାନେ ସେମାନଙ୍କ ବିପଜ୍ଜନକ ଜୀବିକା ଅଭିଯାନରେ ବାହାରନ୍ତି । ଏହା ଏକ ଅତି ସାଧାରଣ ପ୍ରାକୃତିକ ନିୟମ କହିଲେ ଚଳେ ।

କିନ୍ତୁ ବିଜୟ ଅଭାବି ଲୋକ । ସବୁବେଳେ ଅଭାବର (ଅଲଂଘ୍ୟ କହିଲେ ଚଳେ) ଅନ୍ଧକାରମୟ ଲୌହ ପ୍ରାଚୀର ତାଙ୍କୁ ଘେରି ରହିଚି । ସବୁବେଳେ ସେ ଆର୍ତ୍ତ, ଭୟାର୍ତ୍ତ । ଏପରି ମାନସିକ ଅବସ୍ଥା ତାଙ୍କୁ ବେଳେ ବେଳେ ଆକୁପାକୁ କରି ପକାଏ । ସେ ବିଦ୍ରୋହ କରି ଉଠନ୍ତି । ଦୁନିଆଟାକୁ ଜାଳିପୋଡ଼ି ଛାରଖାର କରି ଗୋଟି ଗୋଟି କରି ଧନୀମାନଙ୍କ ତଣ୍ଟି ଚିପି ପୋପାଡ଼ି ସେମାନଙ୍କ ରକ୍ତ ମାଖି ତାଣ୍ଡବ ନୃତ୍ୟ କରିବାର କଳ୍ପନା କରି କିଛିଟା ଆରାମ୍ ପାଆନ୍ତି । ଏକକ ଭାବେ ନିଜ ସୁଖର କାମନା ଏବଂ ତା ଚରିତାର୍ଥ କରିବାର ବିଫଳତା ପାଇଁ ନିଜର ବ୍ୟକ୍ତିଗତ ବିଦ୍ରୋହ କଥା ଭାବୁ ଭାବୁ ମନ ତାଙ୍କର କଳ୍ପନା କରେ ପୃଥିବୀରେ ଦୁର୍ନୀତି ଓ ଶୋଷଣଜନିତ ଦାରିଦ୍ର୍ୟ ବିରୁଦ୍ଧରେ ଏକ ବିରାଟ ଗଣ ବିପ୍ଳବ କଥା । ପୁଞ୍ଜିପତିମାନଙ୍କ ନିଷ୍ଠୁର ଶୋଷଣରେ ଜର୍ଜରିତ ଅସହାୟ କୋଟି କୋଟି ମଣିଷଙ୍କ ପାଇଁ ତାଙ୍କ ହୃଦୟ ବ୍ୟଥାରେ ଭରିଯାଏ, ଆଖିକୁ ପାଣି ଆସେ । ନିଜକୁ ଜଣେ ଖାଣ୍ଟି ବାସ୍ତବବାଦୀ

ବିପ୍ଳବୀ ଭାବି ନିଜକୁ ଅନ୍ୟମାନଙ୍କ ଠାରୁ ବହୁ ଉଚ୍ଚସ୍ତରରେ ଥୋଇ ନିଜର ଦାରିଦ୍ର୍ୟକୁ ସେ ଖାଲି ସହିଯାଆନ୍ତି ନାହିଁ, ନିଜର ଦାରିଦ୍ର୍ୟ ପାଇଁ ଗର୍ବ ମଧ୍ୟ ଅନୁଭବ କରନ୍ତି । ମନ ତାଙ୍କର ଉତ୍ତେଜିତ ଭାବରେ କଳ୍ପିତ ଗଣବିପ୍ଳବର ଟିକିନିଖି ଯୋଜନାରେ ମାତିଯାଏ । କିନ୍ତୁ ଧିରେ ଧିରେ କେତେବେଳେ ମନ ତାଙ୍କର ଖସି ଆସେ ନିଜର ବ୍ୟକ୍ତିଗତ କାମନାକୁ ଏବଂ ସେଥିରେ ବିଫଳତା ପାଇଁ ବ୍ୟକ୍ତିଗତ ପ୍ରତିହିଂସା ଓ ପ୍ରାଧାନ୍ୟକୁ । ନିଜର ନିରାପତ୍ତା ଓ ପ୍ରତିପତ୍ତିକୁ କେନ୍ଦ୍ରକରି ତାଙ୍କ ଗଣବିପ୍ଳବର ଟିକିନିଖି ଯୋଜନା ଗଢ଼ିଉଠେ । ତାଙ୍କ ମନ ପୁଣି ଧୀରେ ଧୀରେ ଅଲକ୍ଷ୍ୟରେ ତାଙ୍କୁ ଏକ ସମ୍ମାନିତ ନେତାର ସୁଖ ଓ ଗର୍ବ ଦେଉଥାଏ ଏବଂ ସେଥିରେ ବି ଟିକିନିଖି ଯୋଜନାମାନ ଗୋଟିକ ପରେ ଗୋଟିଏ ଗଢୁଥାଏ । ତାଙ୍କ ଅହଂ ନାନା ଟିକିନିଖି ବର୍ଣ୍ଣନାରେ ତାଙ୍କୁ ମତାଏ । କିନ୍ତୁ କ୍ରମେ କ୍ରମେ ସେଥିରେ ସେ କ୍ଳାନ୍ତ ହୋଇପଡ଼ନ୍ତି ।

ହଠାତ୍ ସେ ଚମକିତ ହୋଇ ଦେଖନ୍ତି ଯେ ତାଙ୍କର ଗଣବିପ୍ଳବ ହେଉଛି ତାଙ୍କ ବ୍ୟକ୍ତିଗତ ଲାଳସା ଓ ସେଥିରେ ସେ ବିଫଳତାରୁ ଜାତ ପ୍ରତିହିଂସାର ଏକ ମାୟାରୂପ । ଦରିଦ୍ର ପ୍ରତି ତାଙ୍କର ବେଦନା ମଧ୍ୟ ସେମିତି ଏକ ମାୟାରୂପ । ଆତଙ୍କିତ ହୋଇ ଦେଖନ୍ତି ଯେ ଦାରିଦ୍ର୍ୟ ବିଷୟରେ ଯେଉଁ ନୂତନ ନୂତନ ତାତ୍ତ୍ୱିକ ମନ୍ତ୍ର ବା ସତ୍ୟ ପାଇଛନ୍ତି ବୋଲି ଭାବି ସେ ପୃଥିବୀକୁ ନୂତନ ଆଲୋକ ଓ ବାଟ ଦେବେ ବୋଲି କଳ୍ପନା କରି ସନ୍ତୋଷ ପାଇଛନ୍ତି ତାହା ମଧ୍ୟ ତାଙ୍କ ବ୍ୟକ୍ତିଗତ କାମନାର ମାୟାରୂପ । ବିଷର୍ଣ୍ଣ ହସ ହସି ସେ ମନେ ମନେ କୁହନ୍ତି-'ବଡ଼ ମାୟାବୀ ଜୀବ ନୁହେଁ କାହାରି'... ମଣିଷ ତେବେ କଅଣ ସାମାଜିକ ଜୀବ ନୁହେଁ । ସମାଜ ଚେତନା ତେବେ କଅଣ ମଣିଷର ଏକ ଅତି ଦୁର୍ବଳ ପତଳା ଆସ୍ତରଣ । ଏ ପ୍ରଶ୍ନମାନ ତାଙ୍କୁ ନୁଆଇଁ ପକାଏ । ନିଜକୁ ସେ ବିଚ୍ଛିନ୍ନ ଓ ନିଃସଙ୍ଗ ଭାବି ଆତଙ୍କିତ ହୁଅନ୍ତି ।

ମନଟା ତାଙ୍କର ପୁଣି କାତୁରା ହୋଇଯାଏ । ଗୋଟାଏ କୋହ ତାଙ୍କ ଛାତି ଭିତରୁ ଉଠିଆସି କହେ-'ହେ ଗୋବିନ୍ଦ, ମୋତେ ଉଦ୍ଧାର କର-ମୋତେ ଅତି ସାଧାରଣ ହେବାର ସାହସ ଦିଅ... ପ୍ରଭୁ, ମୁଁ ତୁମର ମହାନ୍ ବ୍ୟାପ୍ତି ପାଖରେ ନିଜର କ୍ଷୁଦ୍ରତା ଉପଲବ୍ଧି କରି ଆନନ୍ଦ ପାଏ, ସାହସ ପାଏ... ଏ ଦାରିଦ୍ର୍ୟହିଁ ଭଲ ପ୍ରଭୁ...ଏଇ କରିଛ ଭଲ ପ୍ରଭୁ ଏଇ କରିଛ ଭଲ, ଏମିତି ଭାବେ ମୋ ବୁକୁରେ ତୀବ୍ର ଦହନ ଜାଳ... । ...ଜଗନ୍ନାଥେ କିଛି ମାଗୁନାହିଁ ତୋତେ... ମାଗୁଛି ଶରଧା ବାଲିରୁ ହାତେ...'

ପୁଣି ମାର୍କସବାଦୀ ମନ ତାଙ୍କର ନିଜକୁ ହିଁ ଆଙ୍ଗୁଳି ଦେଖାଇ ବିଦ୍ରୂପ କରି କୁହେ, ଶରଧା ବାଲିରୁ ହାତେ ନେଇ କଅଣ କରିବୁ ବେ... ଶରଧାରୁ ହାତେ ନା ବାଲିରୁ ହାତେ ବା... ଭଗବାନଙ୍କୁ କାହିଁକି ଡାକୁଛୁ ଶୁଣେ... ହ୍ୟାପ୍ ବୁର୍ଜୋୟା କାହାଁକା... କ୍ୟାପିଟେଲିଷ୍ଟଙ୍କ ଠାରୁ ବଳି ବି ବିପଜ୍ଜନକ ତୁ... ଏକୁ ସାବଧାନ ସମସ୍ତେ... ଯେ ବିଜୟଟି, ଇଯେ ହ୍ୟାପ୍ ସ୍ୱାର୍ଥାନ୍ଧ ଭାବରେ କେବଳ ନିଜର ସୁଖ ସମ୍ଭୋଗ କାମନା କରେ.. ଆଉ ସେଥିରେ ବିଫଳ ହୋଇ ପ୍ରୋଲେଟେରିୟେଟ ସାଜେ... ନିଜର ବ୍ୟକ୍ତିଗତ କାମନାକୁ ଗୋଟାଏ ସାଧାରଣ ତତ୍ତ୍ୱରେ ପକାଇ ସମସ୍ତଙ୍କୁ ମତାଏ... ସୁବିଧା ପାଇବା ମାତ୍ରେ ଇଯେ ପ୍ରୋଲେଟେରିୟେଟଙ୍କୁ ଚିତା କାଟି କ୍ୟାପିଟେଲିଷ୍ଟ ହେବ... ଯେଉଁମାନେ ଅସୁରଭଳି ଅନ୍ୟକୁ ଦଳି ମକ୍ଷି ଏକକ ଭାବେ ପ୍ରତିଷ୍ଠା ପ୍ରାଧାନ୍ୟ ପାଇବା ପାଇଁ ବ୍ୟାକୁଳ । ଏ ବୁର୍ଜୋୟାମାନଙ୍କୁ

ଆଗେ ନିର୍ମୂଳ କର ।

କହୁ କହୁ ପୁଣି ସେଇ କୋହ ଛାତି ଭିତରୁ ଉଠି ଆସେ... 'ମତେ ନିର୍ମୂଳ କରି ଦିଅ ଭଗବାନ... ମୁଁ ଯେ ମୋରି ସୁଖ, ମୋରି ଗୌରବ, ମୋରି ପ୍ରାଧାନ୍ୟ ଛଡ଼ା ଆଉ କାହାରିକୁ ବା କିଛି ଦେଖିପାରୁ ନାହିଁ, କିଛି ଜାଣିପାରୁ ନାହିଁ ତୁମ ବିଚିତ୍ର ଦୁନିଆ କଥା... କାହାକୁ ହେଲେ ଭଲ ପାଇପାରୁନାହିଁ... ଇଯେ ଯେ ମୋତେ ଅଜ୍ଞ ଅନ୍ଧ କରିଦେବ ପ୍ରଭୁ... ନିଜକୁ କରେ, ମୁଁ ଯେତେ ମହୀୟାନ, ନିଜ ପ୍ରତି ସେ ଯେ ଅଟେ ଅପମାନ, ନିଜ ଚାରିପଟେ ଘୂରି ଘୂରି ମୁହିଁ ମରେ ଯାହା ତିଳେ ତିଳେ... ମୁଁ ଯେ ଅସହାୟ ପ୍ରଭୁ... ତୁମେଇତ କହିଛ ସବୁ ମଣିଷ ସାତ୍ତ୍ୱିକ, ରାଜସିକ, ତାମସିକ ଭାବର ମିଶାମିଶି, ତେଣୁ ନିଜ ଭିତରେ ଥିବା ତାମସିକତା ଓ ରାଜସିକତା ପ୍ରତି ଭୟ ନକରି ଘୃଣା ନକରି ମୋତେଇ ଡାକ... ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ... ଧନ ମାଗୁନାହିଁ...କାଞ୍ଚନେ ବାଞ୍ଛା ନାହିଁ ମୋର, ମାଗଇ ପ୍ରଭୁ କୃପା ତୋର... ମୋରି ହିଂସା ଈର୍ଷା ଯେ ମୋତେଇ ଜାଳିପୋଡ଼ି ଖାଉଚି ପ୍ରଭୁ...'

ଏମିତି ତ ସମସ୍ତେ ବାହାରେ ନିଜକୁ ଯେତେ ବାସ୍ତବବାଦୀ ବା ବୈଜ୍ଞାନିକ ଭାବାପନ୍ନ ବୋଲି କୁହନ୍ତୁ ନା କାହିଁକି ଭିତରେ ଭିତରେ ଅଲୌକିକ ଦେଖିବାକୁ ବ୍ୟାକୁଳ । ବିଶ୍ୱରେ ଅସଂଖ୍ୟ ଅସଂଖ୍ୟ ଏମିତି ତାରା ଅଛନ୍ତି ଯାହା ଭିତରେ କୋଟି କୋଟି ସୌରଜଗତ ରହିଯିବ, କୋଟି କୋଟି ବର୍ଷଧରି ଗ୍ରହ, ଉପଗ୍ରହ, ତାରାମାନେ ବୁଲୁଛନ୍ତି ତ ବୁଲୁଛନ୍ତି, ଗୋଟିଏ ଗୋଟିଏ ପରମାଣୁ ଗୋଟିଏ ଗୋଟିଏ ସୌରଜଗତ, ନିଜର ଦେହ ଏକ ଅଦ୍‌ଭୁତ ସ୍ୱୟଂଚାଳିତ ଯନ୍ତ୍ର, ଗଛର ପତ୍ର ସୂର୍ଯ୍ୟ କିରଣକୁ କି ଅଦ୍‌ଭୁତ ଉପାୟରେ ଖାଦ୍ୟ ବସ୍ତୁରେ ପରିଣତ କରେ, ଏମିତି ଏମିତି ଜଗତର ପ୍ରତ୍ୟେକ କଥା ଅଲୌକିକ । ଏ ଅଲୌକିକକୁ ବୁଝିବାକୁ ଦରକାର ଜ୍ଞାନ, ବୁଦ୍ଧି, ଭକ୍ତି, ପ୍ରେମ, ଯାହା ଆତ୍ମାକୁ ବିକଶିତ କରେ ଓ ଯାହାପାଇଁ ପୁଣି ଦରକାର ସାଧନା । କିନ୍ତୁ ସାଧାରଣ ମଣିଷ, ସେ ଯେତେ ପାଠ ପଢ଼ିଥାଉନା କାହିଁକି ବା ତାହାର ଯେତେ ଚତୁରତା ଥାଉନା କାହିଁକି, ବଞ୍ଚେ ଇନ୍ଦ୍ରିୟଗ୍ରାହ୍ୟ (ଯାହା ସହଜଲଭ୍ୟ) ଜ୍ଞାନ ଉପରେ ନିର୍ଭର କରି । ଦେହର ସୁଖ ସମ୍ଭୋଗ ପାଇଁ ନାନା କାମନା ତାକୁ ଚାଳିତ କରେ, ଖଟାଏ । ସେ ଚାହେଁ କିଛି ଇନ୍ଦ୍ରିୟ-ଉତ୍ତେଜକ ଇନ୍ଦ୍ରିୟ-ଗ୍ରାହ୍ୟ ଅଲୌକିକ କଥା ଦେଖିବାକୁ ଓ ସେଥିରୁ ଫାଇଦା ଉଠାଇବାକୁ । ତାହାର ସେଇ ଉତ୍ତେଜନା ପାଇବା ହିଁ ସାର ହୁଏ । ସେ ପ୍ରକୃତ ଆନନ୍ଦ ପ୍ରେମ ପାଏ ନାହିଁ, କାହିଁକି ନା ତାହାଦ୍ୱାରା ବିରାଟ ସହିତ ତାହାର ସଂଯୋଗ ହୁଏ ନାହିଁ । ସେ ଇନ୍ଦ୍ରିୟ ଉତ୍ତେଜନା ବି ଦିନେ ଘସରା ହୋଇଯାଏ । ସେ ପୁଣି ଚାହେଁ ନୂଆକିଛି ।

ଏଭଳି ସାଧାରଣ ଲୋକଟି ଯଦି ଅଭାବି ହୋଇଥାଏ, ତେବେ ତ ସେ ଅତି ସାଧାରଣ କଥାଟି ଭିତରେ ବି ଅଲୌକିକ ଉପାୟରେ ଧନ ବା ସୁବିଧା ପାଇବାର ଭଗବଦ୍ କୃପା ଦେଖେ । ବିଜୟ ଭାବିଲେ, କଅଣ ଆଉ ଲବଣି ଚୋର କହ୍ନାଇ ମୋ ଘରୁ ଛେନା ଚୋରିକରି ଖାଇବାକୁ ଆସୁଛନ୍ତି କି ! ଅନୁପମା ତୁମର ବାଳଗୋପାଳ ପୂଜା ସାର୍ଥକ । ସତୀ ତୁମେ, ଧନ୍ୟ ତୁମେ । ମୁଁ ତୁମର ଅଯୋଗ୍ୟ ।

କଥାଟା ମନକୁ ଛୁଇଁବା ମାତ୍ରେ ଆଖି ତାଙ୍କର ଆଶାରେ ଉଜ୍ଜ୍ୱଳ ହୋଇଗଲା । ସାଙ୍ଗେ ସାଙ୍ଗେ ତାଙ୍କ ବିଦ୍ରୋହୀ ମନ ତାଙ୍କୁ ଭର୍ତ୍ସନା ଦେଇ କହିଲା- ଛି ବିଜୟ, ତୁ ଏ କଅଣ ଭାବୁଛୁ, ଆଏଁ ।

ତୁ କଅଣ କ୍ୟାପିଟେଲିଷ୍ଟ କିରେ ? ଅନ୍ୟ ସମସ୍ତଙ୍କୁ ଫାଙ୍କିଦେଇ ଗୁପ୍ତ୍ୟନ୍ତେ ଧନ ହାସଲ କରି ମଉଜ କରିବାକୁ ଚାହୁଁ । କିରେ ତୋ ଗୀତାରେ ପରା ଭଗବାନ କହିଛନ୍ତି-ଯେଉଁମାନେ ଭୋଗ ଲାଳସା ପାଇଁ ସଦାବ୍ୟାକୁଳ, କର୍ମେନ୍ଦ୍ରିୟମାନଙ୍କୁ ଜବରଦସ୍ତି ରୋକି ମନରେ ମନରେ ଭୋଗ ପାଇଁ ବ୍ୟାକୁଳ ଥା'ନ୍ତି ସେମାନେ ଭଣ୍ଡ । ତେଣୁ ଭୋଗ କରିବା ପାଇଁ ଯଦି ଇଚ୍ଛା ହେଲା, ତେବେ ତାକୁ ଚରିତାର୍ଥ କରିବା ପାଇଁ କର୍ମ କର, ଯଦି ମନରୁ ଲାଳସା ତଡ଼ି ନ ପାରୁଛ । ଦେଖିବୁ ଭୋଗପାଇଁ କର୍ମ କରିବାକୁ ଯାଇ ଯେଉଁ କଷ୍ଟ ବା ବିପଦ ବରଣ କରିବୁ, ସେଥିରେ ଭୋଗ ଲାଳସା ଅନେକଟା କମିଯିବ । କାହିଁକି ନା ଅନେକ ଦାୟିତ୍ୱ ଆସିଯିବ । ଅନ୍ୟମାନଙ୍କ ସହିତ ନାନା ପ୍ରକାର ସମ୍ପର୍କ ସ୍ଥାପିତ ହେବ ଏବଂ ନାନା ପ୍ରକାର ସଂଘର୍ଷ ମଧ ଲାଗିବ । କର୍ମ ନକରି ତୁ ଏମିତି ଗୁପ୍ତ୍ୟନ୍ତେ ଧନ ହାସଲ କରି ଭାବିବୁ, ସମାଜ ମୋତେ କିଛି ଦେଇ ନାହିଁ, ଭଗବାନଙ୍କ ସଦାବେଳେ ମୋ ପ୍ରତି ବିଶେଷ କୃପାଦୃଷ୍ଟି ଅଛି । ଏଇଟା ଆଧାତ୍ମିକ ନୁହେଁ କି ମାର୍କସ୍‌ବାଦୀ କଥା ନୁହେଁ ।

ତଥାପି ତାଙ୍କ ଆଖି ଜକେଇ ଆସିଲା । ତାଙ୍କ କାମନା ଭଗବାନଙ୍କ ଅଲୌକିକ କୃପା କଥାଟାକୁ ତେଜେଇ ଦେଉଥାଏ । ଏ ଦୁଇଟା ମନର ଯଦି ଗୋଟାଏ ସଂଯୋଗୀ ସମତ୍ୱଦର୍ଶୀ ମନ ଥାଆନ୍ତା ତେବେ ସେ ହୁଏତ କହନ୍ତା- ଏପରି ଅଲୌକିକ ଘଟନା ଘଟିବା ସମ୍ଭବ କି ନା ସେ କଥା ଜାଣିବା ପୂର୍ବରୁ ଆଗେ ଦେଖତ, ତୁମ କାମନା ତୁମ ସହିତ ଛଳନା କରୁଛି କି ନା । ଅନ୍ତତଃ କୌଣସି ଆଡ଼କୁ ନ ଢଳି ଦେଖିଯାଅ ଘଟନା କଅଣ ଘଟୁଛି ।

ଏପରି କର୍ମକୁଶଳୀ ସମତ୍ୱଦର୍ଶୀ ଯୋଗୀ ମନ ତ କୋଟିକେ ଗୋଟିଏର ଅଛି କି ନା ସନ୍ଦେହ । ବିଜୟଙ୍କ ନାହିଁ ବୋଲି ତାଙ୍କୁ କି ଦୋଷ ବା ଦବା ଯେ । ଯୋଗୀ ମନ ତ ପ୍ରେମୀ ମନ । ସେ ସବୁ ଗ୍ରହଣ କରେ, ପୁଣି ସବୁ ଛାଡ଼ି ବି ଦିଏ । ଶ୍ରୀରାମକୃଷ୍ଣ ଯାହା କହିଛନ୍ତି, ମଣିଷର ମହାଭାବ ବା ପ୍ରେମ ହେବା ବଡ଼ କଷ୍ଟ । କୋଟିକେ ଗୋଟିଏର ହୁଏ କି ନା । ସାଧାରଣ ଲୋକର କେବଳ ଭାବ ହୁଏ (ନାନା ଭାବ, ଯେଉଁମାନଙ୍କୁ ସମ୍ଭାଳିବା ବଡ଼ ମୁସ୍କିଲ୍ । ଗୋଟିଏ ଭାବ ପୁଣି ଅନ୍ୟଟିର ବିପରୀତ । ନାନା ଭାବର ଏକୀକରଣ ହୁଏ ପ୍ରେମ ଦ୍ୱାରା) ।

ବିଜୟଙ୍କ ମନକୁ ଯେଉଁ ଅଲୌକିକ କଥାଟା ଛୁଇଁଲା ତାହା ସେ ଅନୁପମାକୁ କହିବେ କି ନା ଚିନ୍ତାଯୁକ୍ତି କରୁ କରୁ ଫିସ୍‌କିନା କହି ପକାଇଲେ । ଅନୁପମା ବଡ଼ ବଡ଼ ଆଖିରେ ଚାହିଁଲେ । ଆଖିରୁ ତାଙ୍କର ଲୁହ ଝରି ପଡ଼ିଲା । ବିଜୟଙ୍କ ବିଦ୍ରୋହୀ ମନ ନିଜକୁ 'ହାଁ ହାଁ ଏ କଅଣ' କହୁ କହୁ ସେ ନିଜେ ଅଧୀର ଭାବରେ କାନ୍ଦି ପକାଇଲେ ।

ସେଇଠୁ ଠିକ୍ ହେଲା ପରଦିନ ରାତିରେ ସେମାନେ ଯେ କୌଣସି ପ୍ରକାରେ ହେଉ ସାରା ରାତି ଜଗିବେ । ସକାଳୁ ସେଥିପାଇଁ ଯଥେଷ୍ଟ ପରିମାଣରେ କଫି କିଣା ହୋଇ ଆସିଲା । ଅନୁପମା ଖୁବ ମନଧାନ ଦେଇ ପୂଜା କଲେ । ରାତି ଦଶବେଳକୁ ସମସ୍ତେ ଅଳ୍ପ ଅଳ୍ପ ଖାଇ ବଡ଼ ଗିଲାସରେ ଗିଲାସେ ଲେଖାଏ କଫି ପିଇ ଯିଏ ଯାହାର ହତିଆର ଧରି (କାଳେ ଭଗବାନ ନ ହୋଇଥିବେ ଏଇଥିପାଇଁ) ନିଜ ନିଜ ଜଗିବା ଜାଗାରେ ମୁତୟନ ହୋଇଗଲେ । ପ୍ରାୟ ପ୍ରତ୍ୟେକ ଘଣ୍ଟାରେ କଫିପିଆ ଚାଲିଲା । ଆଜି ପାନପୁଅ ବି ଯୋଗ ଦେଇଛି । ରାତି ତିନି ବେଳକୁ ବିଜୟ ଓ ଅନୁପମାଙ୍କ ନିଃଶ୍ୱାସ ଉତ୍କଣ୍ଠାରେ ରୁଦ୍ଧ ହୋଇ ଆସିଲା । ଆଖି ସେମାନଙ୍କ ସଜଳ । ମନଭିତରେ କୋହମିଶା ଆକୁଳ

ପ୍ରାର୍ଥନା । ହଠାତ୍ ସାନପୁଅ ପାଟି କଲା, ହେଇ ବାପା- ଗଲା ।

ସାନପୁଅର ଅଙ୍ଗୁଳି ନିର୍ଦ୍ଦେଶମତେ ସମସ୍ତେ ରୋଷେଇ ଘର ଭିତରକୁ ପଶିଯାଇଁ ଦେଖନ୍ତି ତ ଥାକ ଉପରେ ଗୋଟାଏ ବଡ଼ ମୂଷା ଛେନା ତାଟିଆର ଢ଼ାଙ୍କୁଣି ଠେଲିଦେଇ ତାଟିଆକୁ ଅଣେଇ ଦେଇଛି । ଛେନା ସବୁ ଥାକ ଉପରୁ ତଳେ ପଡ଼ିଯାଇଛି । ମୂଷା ମୁହଁରେ ବିନ୍ଦୁ ବିନ୍ଦୁ ହୋଇ ଛେନା ଲାଗିଛି । କିନ୍ତୁ ସେ ଖାଉଛି ପୋଡ଼ପିଠାର ବକଲା । ଛେନା ତାଟିଆ ପାଖରେ ଥିଲା ପୋଡ଼ପିଠା ଚାଙ୍ଗୁଡ଼ି । ବିଜୟଙ୍କ ଅତି ପ୍ରିୟ ଖାଦ୍ୟ ହେଉଛି ପୋଡ଼ପିଠା, ବିଶେଷକରି ତାହାର ବକଲା । ଅନୁପମା ଖୁବ୍ ଭଲ ପୋଡ଼ପିଠା କରେ । ପିଠାର ଲଙ୍କା ପିଆଜଦିଆ ବକଳ, ବେଶ୍ ମୋଟା, ଦରପୋଡ଼ା, ଓ ତେଲିଆ । ସୁନ୍ଦର ସୁଗନ୍ଧ ବାହାରେ ସେଥିରୁ । ମୂଷା ସେଇ ବକଲାରୁ ଫଳାଏ ତା ସାମନା ଦୁଇଗୋଡ଼ରେ ଧରି କୁଟୁରୁ କୁଟୁରୁ କରି ଖାଉଚି । ପାଞ୍ଚଜଣ ସଶସ୍ତ୍ର ମଣିଷକୁ ଅତି ନିକଟରେ ଦେଖି ବି ତା'ର ଭୟ ନାହିଁ । ତା'ର ହାବଭାବରୁ ଜଣାପଡୁଚି ଭାରି ତୃପ୍ତିର ସହିତ ସେ ଖାଉଚି । ତା'ର ଗୋଲାପି ରଙ୍ଗର ନାସାଗ୍ରଟି ଭୋଜନର ଆନନ୍ଦରେ ଫୁଲିଫୁଲି ଉଠୁଚି । ଗୋଲ ଗୋଲ ଆଖିରେ ମଣିଷ ଦଳଟି ଆଡ଼େ ସେ ନିର୍ବିକାର ଆଖିରେ ଚାହିଁ ସତେ ଯେମିତି କହୁଚି - ବସିଯାଅ ପିଲେ, ବସିଯାଅ ।

ମୂଷାଟାକୁ ଦେଖି ବିଜୟ ଓ ଅନୁପମା ପରସ୍ପରକୁ ହତାଶା ମିଶ୍ରିତ କରୁଣ ଆଖିରେ ଚାହିଁଲେ । ବିଜୟଙ୍କ ବ୍ରହ୍ମତାଳୁରେ ଦପ୍‌କିନା ନିଆଁ ଜଳି ଉଠିଲା । ମନେ ମନେ ସେ ହୁଙ୍କାରିଲେ : କଅଣ ଏଡ଼େ ସାହସ ତୋର, ତୁ ମୋ ପିଠା ଖାଉଚୁ । ମୋତେ ଦେଖି ଡରୁ ବି ନାହୁଁ । ତୋ ମୃତ୍ୟୁବେଳ ଆସିଗଲା ।

ଠେଙ୍ଗା ପ୍ରହାରକୁ ନିଶ୍ଚିତଭାବେ ମାରାତ୍ମକ କରିବାପାଇଁ ଠେଙ୍ଗାକୁ ଉଠାଇ ସେ ପିଠିଉପରକୁ ନେଇଆସିଲେ । ଖୁଆହାଡ଼ ଉପରେ ଠେଙ୍ଗାଟା ଆଘାତ କରିବାରୁ ସେ କ୍ରୋଧରେ ଉତ୍‌କ୍ଷିପ୍ତ ହୋଇଗଲେ । ବଡ଼ପୁଅ ସୁନା (ଏ ବର୍ଷ ମେଡ଼ିକାଲ କଲେଜରେ ନା ଲେଖାଇଚି) ଏଇ ଅବସରରେ କହିଲା : ବାପା, ଏଡ଼େ ଜୋରରେ ମାରିବା ଦରକାର ନାହିଁ । ତା'ର ସେକେଣ୍ଡ ସର୍ଭାଇକଲ୍ ଭର୍ଟିବ୍ରାରେ ଖାଲି ଠୁକେଇ ଦେଲେ ହେଲା । ଖତମ୍ ।

ବିଜୟଙ୍କ ପ୍ରଳୟଙ୍କରୀ କ୍ରୋଧ ପୁଅର ଏ କଥାରେ ନିମିଷକେ ଗୋଟାଏ ଆନନ୍ଦ-କୌତୁକ-ବାତ୍ସଲ୍ୟମୟ ହସରେ ପରିଣତ ହୋଇ ଫାଟିପଡ଼ିଲା । ମୂଷାଟି ଏପର୍ଯ୍ୟନ୍ତ ନିର୍ବିକାର ଭାବରେ ଖାଇଚାଲିଥିଲା । କିନ୍ତୁ ହସର ଶବ୍ଦରେ ସେ ଖାଇବା ବନ୍ଦ କରି ପଛଗୋଡ଼ରେ ଛିଡ଼ାହୋଇ ତା'ର ନାଲି ନାଲି ସାନ ସାନ କାନ ଦୁଇଟିକୁ ଘରର ଚାରିଆଡ଼କୁ ବୁଲାଇବାକୁ ଲାଗିଲା । ଉଦ୍ଦେଶ୍ୟ ନିଶ୍ଚୟ ହସର ଶବ୍ଦତରଙ୍ଗମାନ ଧରି ତାକୁ ବିଶ୍ଳେଷଣକରି ବିଚାର କରିବା ସେଥିରେ ଥିବା ଭାବ କୌଣସି ଅସାଧାରଣ ବିପଦର ସୂଚନା ଦିଏ କି ନା ! ସେ ଏପର୍ଯ୍ୟନ୍ତ ଗୋଟିଏ ପ୍ରକାର ଶବ୍ଦ ସହିତ ପରିଚିତ...ହେଇ ଗଲାଗଲା ଧରଧର ମାରମାର ପିଟପିଟ । ଏ ଶବ୍ଦ ଯେତେ ତୁମୁଳ ଓ ଭୟଙ୍କର ହେଉନା କାହିଁକି, ସେଥିରେ ଯେଉଁ ହିଂସ୍ର ଓ କ୍ରୋଧ ଭାବ ପ୍ରକାଶ ପାଏ ସେ ତାକୁ କଳିସାରିଚି ଏବଂ ସେ ଭାବ କି ପ୍ରକାର ବିପଦର ସୂଚନା ଦିଏ ତାକୁ ସିଏ ଭଲକରି ଜାଣେ । ଖାଲି ସେତିକି ନୁହେଁ । ଗୃହସ୍ଥମାନେ କି କି ପ୍ରକାର ଅସ୍ତ୍ର ବ୍ୟବହାର କରନ୍ତି, ତାକୁ ମାରିବା ପାଇଁ କେଉଁ ଅସ୍ତ୍ରର ପ୍ରୟୋଗନୀତି କି ପ୍ରକାର ଏବଂ କାହାର ମାରାତ୍ମକତା କେତେ, ସେ ସବୁ ମଧ୍ୟ କଳି ସବୁପ୍ରକାର

ପରିସ୍ଥିତିରେ ନିଜକୁ ନିରାପଦ ରଖି ଖସି ପଳାଇବାର ଦକ୍ଷତା ସେ ହାସଲ କରିଚି । ସେଥିପାଇଁ ସେ ଏ ପର୍ଯ୍ୟନ୍ତ ନିର୍ବିକାର ଭାବରେ ଖାଉଥିଲା ଏବଂ ଯୁଦ୍ଧାରମ୍ଭ ମୂହୂର୍ତ୍ତ ଜିରୋ ଆୱାରକୁ ନିର୍ଭୟରେ ଅପେକ୍ଷା କରୁଥିଲା । କିନ୍ତୁ ଏ ଯେଉଁ ହସର ଶବ୍ଦ ତା କାନରେ ଧରାପଡ଼ିଲା ତା ସହିତ ସେ ସଂପୂର୍ଣ୍ଣ ଅପରିଚିତ । ଏ ଶବ୍ଦ ଅନ୍ୟ ଏକ ଭାବ ବହନ କରୁଚି ବୁଝିପାରି ସେ ବୋଧହୁଏ ଘାବରେଇଗଲା । ବୁଝିପାରିଲା ନାହିଁ ତାର କର୍ତ୍ତବ୍ୟ କଅଣ ।

ବିଜୟ କିନ୍ତୁ ଥମିଲେ ନାହିଁ । ଠେଙ୍ଗାକୁ ବାଗେଇ ଯେମିତି ସେ ହୁଙ୍କାର ଛାଡ଼ି ମାରିବାକୁ ଯାଇଛନ୍ତି, ମୂଷା ସେ ଚିରପରିଚିତ ଭୟଙ୍କର ଶବ୍ଦ ଶୁଣି ଓ ଦୃଶ୍ୟ ଦେଖି ନିମିଷକେ ନିର୍ଭୟ ହୋଇ 'ପ୍ରାଣର ସ୍ଥିତି ଆଚରିଲା' । ତା'ର ସାମନା ଗୋଡ଼ ଦୁଇଟି କ୍ଷଣକ ପାଇଁ ପ୍ରାର୍ଥନା ମୁଦ୍ରା ଧାରଣ କଲା (ବୋଧହୁଏ, ଗଜ ନିସ୍ତାରଣର ଗଜଭଳି ସେ ପ୍ରାର୍ଥନା କଲା-ଆତଙ୍କ ନାଶନ ତୋ ବାନା, ବାରେ ତୁ ହୁଅ ବଜ୍ର ସେହ୍ନା) । ବିଜୟଙ୍କ ଠେଙ୍ଗା ସେତିକିବେଳେ ଥାକ ଉପରେ ପଡ଼ିଲା ଏବଂ ଥାକର ସବୁ ଡବା ଓ ବୋତଲ ଝଣଝଣ ଶବ୍ଦରେ ତଳେ ପଡ଼ି ଏଣେ ତେଣେ ଗଡ଼ିବାକୁ ଲାଗିଲେ । ଜିରା, ଲଙ୍କା, ଚିନି, ଲୁଣ ଆଦି ମିଶି ଏକାକାର । ଅନୁପମାର କେତେ ନିପୁଣ ଶ୍ରମ ନିମିଷକେ ନଷ୍ଟ । ବିଜୟଙ୍କ ଛାତିଟା ଭୟରେ କ୍ଷଣକ ପାଇଁ ଦମ୍‌କିନା ହେଲା । ସେ ତାକୁ ଏଡ଼ିବାକୁ ଯାଇ ପାଟି କରି କହିଲେ : ହ୍ୟାପ, ଗାଡ଼ିଏ ଶିଶି ଡବା ଏ ଥାକରେ । ଏତେ କି ଦରକାର ବୁଝିପାରେ ନାହିଁ । ଅନୁପମା ରାଗିଯାଇ କହିଲେ : ତମକୁ କିଏ କହୁଥିଲା ଶୁଣେ ...କୌଣସି କାମ ତ ଜାଣ ନାହିଁ...

ବିଜୟ ଗୋଟାଏ ଅତି କଟୁ କଅଣ ଅନୁପମାକୁ କହିବାକୁ ଯାଉଥିଲେ । ଠିକ୍ ସେତିକିବେଳେ ତାଙ୍କ ପାଦ ଗୋଟିଏ ଗଡ଼ନ୍ତା ଡବା ଉପରେ ପଡ଼ିଯିବାରୁ ସେ କଚାଡ଼ି ପଡ଼ିଲେ । ଅନୁପମା ଭୟରେ ଚିତ୍‌କାର କରି ଉଠିଲେ, ଇଲୋ ମୋ ପୁଅ । କଥାଟା ଅତର୍କିତେ ଅନୁପମାଙ୍କ ମୁହଁରୁ ବାହାରିଗଲା । ସମସ୍ତ କ୍ରୋଧ ଓ ଅପମାନ ଭାବ ଭୁଲିଯାଇ ସେ ଅନୁପମାଙ୍କ ଆଡ଼େ ଚାହିଁଲେ । ସେ ନିଜେ ବୁଝିପାରିଲେ ନାହିଁ ଏଥିରେ ତାଙ୍କର କି ଧରଣର ପ୍ରତିକ୍ରିୟା ହେବା ଉଚିତ୍ । କ୍ରୌଞ୍ଚବଧ ଦେଖି ବାଲ୍ମୀକିଙ୍କ ଶୋକ ହଠାତ୍ ଶ୍ଳୋକ ରୂପରେ ବାହାରିଯିବାରୁ ସେ ନିଜେ ତାହା ଶୁଣି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଯାଇଥିଲେ, ଅନୁପମା ସେମିତି ନିଜ କଥା ଶୁଣି ଆଚମ୍ୱିତ ହୋଇ ଲଜ୍ଜାରେ ଜିଭ କାମୁଡ଼ିଲେ । ବିଜୟ ମନେ ମନେ କହିଲେ : ହଁ, ପୁଅ ନୁହେଁ ତ ଆଉ କଅଣ କି ।

ସାନପୁଅ ଇତି ମଧ୍ୟରେ ପାଟି କରି ଉଠିଲା : ହେଇ ପଳେଇଲା ବାପା । ତମେ ଯେମିତି ଠେଙ୍ଗା ଉଠେଇଚ ନା, ସେ'ତ କୁଦାଟାଏ ମାରି ମୋ ଗାଲକୁ ଗୋଇଠାଏ ଦେଇ ପଳେଇଲା ।

ସମସ୍ତେ ଏକା ସାଙ୍ଗରେ ଦୁଆର ମୁହଁ ବାଟେ ଚେଷ୍ଟାକଲେ ତାକୁ ଧରିବାକୁ । ଫଳରେ କେହି ବାହାରି ପାରିଲେ ନାହିଁ । ସେଇଠି ନିଜ ନିଜ ଭିତରେ ପରସ୍ପେ ଧସ୍ତାଧସ୍ତି ଲାଗିଗଲା । ସେ ଛନ୍ଦାଛନ୍ଦିରୁ ମୁକ୍ତ ହୋଇ ବାହାରକୁ ଆସିଲା ବେଳକୁ ଆଉ ମୂଷା କାହିଁ ଥାଏ । ମୂଷା ଖୋଜି ଆଉ ଲାଭ ନାହିଁ । ଏତେବେଳେ ସମସ୍ତଙ୍କ ନଜର ପଡ଼ିଲା ଯେ ସାନପୁଅର ଗାଲରୁ ଧାରେ ରକ୍ତ ଜକଉଛି ।

ସାନପୁଅର କ୍ଷତ ଧୋଇ ଔଷଧ ଲଗଉ ଲଗଉ ବିଜୟ ନିଷ୍ଫଳ କ୍ରୋଧରେ ଫୁଲିବାକୁ ଲାଗିଲେ । ତାଙ୍କୁ ଭାରି ଅପମାନ ବି ଲାଗୁଥାଏ । ମନେ ମନେ ସେ କହୁଥାନ୍ତି : ଦେଖତ ହ୍ୟାପ୍ । ଛାର ମୂଷାଟାଏ, ଭଗବାନଙ୍କ ଭଳି ଅପରାଜେୟ ହୋ । 'ସୋ ଇନ୍‌ଭିନ୍‌ସିବଲ, ସୋ ଅଲ୍‌ମୋଷ୍ଟ

ଲାଇକ୍ ଗଡ୍ ।' ଏକ କୁଦାକେ ପାଞ୍ଚହାତ ଡେଇଁ ଗଲା ଆମ ମୁଣ୍ଡ ଉପର ଦେଇ । ଆମକୁ କ୍ଷତବିକ୍ଷତ କରି ବିଜୟ ଗର୍ବରେ ଚାଲିଗଲା । କିନ୍ତୁ ଗଲା କୁଆଡ଼େ ! ଉଭାନ ହୋଇଗଲା ! ଯେଉଁ ଯେଉଁ କଥାମାନ ତାଙ୍କୁ ଆଶ୍ଚର୍ଯ୍ୟ ଲାଗୁଥିଲା ସେଇ ସେଇ କଥାମାନ ତାଙ୍କ କ୍ରୋଧକୁ ଆହୁରି ତେଜୁ ବି ଥିଲା । ପ୍ରତ୍ୟେକ କଥା ସାଙ୍ଗରେ ସେ ଦାନ୍ତ ରଗଡ଼ିବାକୁ ଲାଗିଲେ ।

ସେତେବେଳକୁ ସୁନ୍ଦରା ଫାଟିଆସୁଥାଏ । ସମସ୍ତେ ମାନସିକ ଓ ଶାରୀରିକ ଅବସାଦରେ ଶୋଇପଡ଼ିଲେ । ଭୋର ହେବାମାତ୍ରେ ବିଜୟ ବିଛଣାରୁ ଉଠି ଘର ଭିତର ଓ ବାହାର ଖୋଜିଲେ । ସବୁ ନଳା ମୁହଁ ଓ ଦୁଆର ମୁହଁ ରୁନ୍ଧିବା ସତ୍ତ୍ୱେ ମୂଷା କେଉଁବାଟେ ଘର ଭିତରକୁ ପଶୁଚି ଓ କେଉଁବାଟେ ପଳେଇଲା, କୌଣସି ହଦିସ ସେ ପାଇଲେ ନାହିଁ । ବଡ଼ପୁଅ କହିଲା : ବାପା ! ଆପଣ ବୃଥା ଖୋଜୁଛନ୍ତି । କିଛି ପତ୍ତା ପାଇବେ ନାହିଁ ।

-କାହିଁକି ।

-ସେ କେଉଁ ଜାତିର ମୂଷା ଜାଣନ୍ତି ? ସେ ପରା ର୍ୟାଟ୍‌ସ୍ ନର୍‌ୱେଜିକସ୍ ଜାତିର ।

-ମୂଷାର ପୁଣି ଜାତିଗୋତ୍ର ଅଛି ନା କଅଣ ? ବିଜୟ ବିରକ୍ତ ହୋଇ ପଚାରିଲେ ।

-ହଁ । ଆମେ ପରା ପ୍ରାଣୀବିଜ୍ଞାନରେ ପଢ଼ିଚୁ । ଏ ଜାତିର ମୂଷା ଭାରି ଚଲାଖ । ଏମାନଙ୍କ ଆଦି ଦେଶ ହେଉଚି ମଧ୍ୟ-ଏସିୟା । ପୃଥିବୀଯାକ, ଏମିତିକି ପୃଥିବୀର ପ୍ରତ୍ୟେକ ଗାଁକୁ ଏମାନେ ଖେଦି ଯାଇସାରିଲେଣି । ଇଂଲଣ୍ଡକୁ ଏମାନେ ଯାଆନ୍ତି ସତରଶହ ତିରିଶ ଖ୍ରୀଷ୍ଟାବ୍ଦରେ ।

-ବାଜେକଥା । କିଏ କଅଣ ଏମାନଙ୍କ ପଛରେ ଗୋଡ଼େଇ ଗୋଡ଼େଇ ସବୁ ଦେଖିଚି କହୁଚୁ !

-ନିଶ୍ଚୟ । ଶୁଣିବେ । ଉତ୍ତର ଆମେରିକାରେ ଗୋଟାଏ ଜାତିର ମାଛରଙ୍କା ଅଛନ୍ତି ଯେ ତାଙ୍କ ତଳଥଣ୍ଟରେ ଗୋଟେ ବଡ଼ ଥଳି ଝୁଲୁଥାଏ । ସେଇଥିରେ ସେମାନେ ମାଛ ଧରି ରଖନ୍ତି । ବେଶ୍ କିଛି ଜମିଗଲେ ପରେ ସୁସ୍ଥରେ ଖାଆନ୍ତି । ଥରେ ଗୋଟାଏ ମାଛରଙ୍କାର ସେ ଥଳିଟା କଣ୍ଟାରେ ଚିରିଗଲା ଯେ ସେ ଆଉ ମାଛ ଧରି ପାରିଲା ନାହିଁ । ଯାହା ସେ ଧରିଲା ସବୁ ସେଇ ଚିରାବାଟେ ଗଳିଗଲା । ବିଚରା ନଖାଇ ନଖାଇ ଶୁଖିଗଲା । ଏକୁ ଲକ୍ଷ୍ୟ କରୁଥିଲେ ଜଣେ ପ୍ରାଣୀବିଜ୍ଞାନୀ । ସେ ତାକୁ ଧରିବାକୁ ତା' ପଛେ ପଛେ ଦେଢ଼ଶହ ମାଇଲ ପ୍ରାୟେ ମାସେ କାଳ ଧରି ଗୋଡ଼ାଇଲେ । ଦିନେ ଯେମିତି ସେ ମାଛରଙ୍କାଟି ମାଛ ଧରିବାକୁ ପାଣି ଭିତରକୁ ଝାମ୍ପମାରିଚି ସେ ବି ତା ସହିତ ଝାମ୍ପ ମାରି ତାକୁ ଧରିଲେ । ତା' ଚିରାତକ ସିଲେଇ କରି ଔଷଧ ଲଗାଇ ଘା'କୁ ଭଲକରି ତାକୁ ଛାଡ଼ିଦେଲେ । ଆହୁରି କିଛିଦିନ ତା' ସହିତ ବୁଲି ବୁଲି ଦେଖିଲେ, ସେ ସୁସ୍ଥସବଳ ହୋଇ ଆହାର ଖାଉଚି । ତେବେ ଯାଇ ସେ ଘରକୁ ଫେରିଲେ । ସେ ଦେଢ଼ମାସ ତାଙ୍କର ଖିଆପିଆ ନଥିଲା କହିଲେ ଚଳେ । ଘରକୁ ଫେରିଲାବେଳକୁ ସେ ନିଜେ ଘୋର ଅସୁସ୍ଥ ।

ଏହି କଥା ଶୁଣି ବିଜୟ ଅଭିଭୂତ ହୋଇଗଲେ । ଏଇ ମଣିଷ ବୋମା ପକାଇ ଲକ୍ଷ ଲକ୍ଷ ଲୋକ ମାରି ଉଲ୍ଲାସରେ ନୃତ୍ୟ କରୁଛି, ପଶୁପକ୍ଷୀ କ୍ରୀଡ଼ାଛଳରେ ମାରି ବଂଶଲୋପ କରି ଦେଉଛି । ଏଇ ମଣିଷ ଭିତରେ ପୁଣି ଏମିତି ପ୍ରେମୀ ମଣିଷ ବି ଅଛନ୍ତି ଯିଏ ଗୋଟାଏ ସାମାନ୍ୟ ଚଢ଼େଇ ପଛରେ ଖିଆପିଆ ଛାଡ଼ି ଗୋଡ଼େଇଛି ତାକୁ ଭଲ କରିବାକୁ । ଏଇମାନେ ହିଁ ଜାତି ଧର୍ମକୁ ପୃଥିବୀରେ ଧରି

ରଖିଛନ୍ତି । ପ୍ରବଳ ନିଷ୍ଠୁରତା, ହିଂସ୍ରତାସତ୍ତ୍ୱେ ମଣିଷ ଉପରୁ ବିଶ୍ୱାସ ଯେ ତୁଟିଯାଉ ନାହିଁ, ଆଶା ଯେ ସେମିତି ଉଜ୍ଜ୍ୱଳ ରହିଚି ଜାଣ ଏଇମାନଙ୍କ ପାଇଁ । ପ୍ରବଳ ସ୍ୱାର୍ଥାନ୍ଧ ନିଷ୍ଠୁରତାକୁ ଏଇମାନଙ୍କ ନୀରବ ଅଜ୍ଞାତ ପ୍ରେମହିଁ ଜାଣ ନୀରବରେ ହଟାଇ ଦେଉଛି । କାଳର ମହାପୁରୁଷ ଚିରକାଳ ଏଇ ଅଳ୍ପସଂଖ୍ୟକ ବାହାରକୁ ଦୁର୍ବଳ ଦିଶୁଥିବା ଅଥଚ ଯଥାର୍ଥ ମହାଶକ୍ତିଶାଳୀ ପ୍ରେମିକଙ୍କ ହାତରେ ଜୟପତାକା ଦେଇ ଆସିଛି । ଦେଖ ଯେ ହ୍ୟାପ ମୁଁ ଗୋଟାଏ ମୂଷା ମାରିବାକୁ... । ତାଙ୍କ ଆଖି ଜକେଇ ଆସିଲା । ସବୁକଥା ଭୁଲିଯାଇ ସେ ଏକ କୋହମିଶା କୌତୂହଳରେ ପଚାରିଲେ : ତେବେ ଯେ ର୍ୟାଟ୍‌ଟସ୍ ଆମ ଭାରତକୁ କେବେ ଆସିଲେ ?

-ସେ କଥା ଜଣା ନାହିଁ । ମୁଁ ଭାବୁଚି ଶ୍ରୀ ଗଣେଶ ବୋଧେ ଏ ମୂଷାରୁ ଗୋଟିଏ ନିଜ ବାହନ ରୂପେ ରଖି ଆଉ କେତୋଟି ଛାଡ଼ି ଦେଇଥିଲେ ।

-ତୋର ଏମିତି ଭାବିବାର କାରଣ ?

-ଭାରତରେ ତ ସେତେବେଳେ ପ୍ରଚୁର ଫସଲ ହେଉଥିଲା । ସେତେବେଳେ ଫସଲହିଁ ଥିଲା କିଣାବିକାର ମାଧ୍ୟମ, ଅର୍ଥରୂପେ ବ୍ୟବହୃତ ହେଉଥିଲା । ଆଜିକାଲି ଫସଲ ପ୍ରଚୁର ହେଲେ ଅର୍ଥନୀତିକୁ ସମତୁଲ ରଖିବା ପାଇଁ ଫସଲ ସବୁ ନଷ୍ଟକରିଦିଆ ହେଉଚି । କିନ୍ତୁ ସେତେବେଳେ ପ୍ରାକୃତିକ ଉପାୟରେ ଏହା କରିବା ପାଇଁ ବୋଧହୁଏ-

-ଓଃହୋ ! ଏଟା ବିଜ୍ଞାନଯୁଗ କି ନା, ପୁରାଣ କାହାଣୀର ଗୋଟେ ବିଜ୍ଞାନସମ୍ମତ କାରଣ ବାହାର କରାହୋଇଚି । କିନ୍ତୁ ତୁ ଯା କହିଲୁ ଫସଲ ନଷ୍ଟ କରିବା କଥା, ତା' କେବଳ ପୁଞ୍ଜିବାଦୀ ଦେଶରେ ଘଟେ, ଯେଉଁଠି ପୁଞ୍ଜିପତିମାନେ ଲୋକଙ୍କୁ ନାନାଭାବେ ଶୋଷଣ କରି ଦରକାର ହେଲେ ମାରି ବି ଏକକ ଭାବେ ଧନପତି ହେବାକୁ ପାଗଳ । ସମାଜବାଦୀ ଦେଶରେ କିନ୍ତୁ...

-ସେ କଥା ମୁଁ ଜାଣେ ଯେ । ମୁଁ କହୁଥିଲି, ପ୍ରକୃତି ତା' ବାଟରେ ସମାଜବାଦ ପ୍ରତିଷ୍ଠା କରିବାକୁ ଲାଗିଛି । ଏକକୁ ଆରେକ ସାଙ୍ଗରେ ଲଢ଼େଇ ଦେଇ । ମଣିଷ ଭିତରେ ପ୍ରକୃତି ହିଂସା, ଈର୍ଷା, ଲୋଭ ସେଇଥିପାଇଁ ଦେଇଛି । ଏଇ ପନ୍ଦରଦିନ ତଳେ ତ ଏକ ପୃଥିବୀ ବିଖ୍ୟାତ ବିଜ୍ଞାନ ପତ୍ରିକାରେ ବାହାରିଚି ଯେ ଗୋଟିଏ ଗାଁରେ ମହୁଫେଣା ସଂଖ୍ୟା କମିଗଲାରୁ ଗବେଷଣା କରି ଦେଖାଗଲା ଯେ ଲୋକେ କୁକୁର ସଂଖ୍ୟା ବଢ଼ାଇବାରୁ ଏପରି ହେଲା ।

-କେମିତି ।

-କୁକୁରମାନେ ଗାଁରୁ ବିଲେଇମାନଙ୍କୁ ନିକାଲି ଦେଲେ । ବିଲେଇ ସଂଖ୍ୟା କମିବାରୁ ମୂଷା ସଂଖ୍ୟା ବଢ଼ିଲେ । ମୂଷାମାନେ ମହୁଫେଣା ନଷ୍ଟ କରିବାରୁ ମହୁମାଛିମାନେ ସେ ଗାଁ ଛାଡ଼ିଦେଲେ । ଗାନ୍ଧିଜୀ ତାଙ୍କ ଆଶ୍ରମରେ ସାପ ମାରିବାକୁ ମନା କରିଦେଇଥିଲେ ଏଇଥିପାଇଁ କେବଳ ଯେ ସାପ ସଂଖ୍ୟା କମିଲେ ମୂଷା ସଂଖ୍ୟା ବଢ଼ି ପନିପରିବା ବଗିଚା ନଷ୍ଟ କରିବେ ।

-ହଁ ରେ ପୁଅ, ଏ ବିଶ୍ୱରେ କାହାର ସହିତ କାହାର କି ସଂଯୋଗ ଅଛି କିଏ କହି ପାରିବ । ଯେଉଁ ସଂଯୋଗ ସୂତ୍ରରେ ସମସ୍ତେ ଗୁନ୍ଥା, ସେ ସୂତ୍ରଟି ଧରିବାକୁ ଆଧୁନିକ ବିଜ୍ଞାନ କୁହ, ସାହିତ୍ୟ କୁହ, ଭାରି ଚେଷ୍ଟା କରୁଚି । କଥାଟା ହେଉଚି, ସେ ସୂତ୍ରଟି ପ୍ରେମର ନା ହିଂସାର, ନା ବାହାରକୁ ହିଂସାର ଦିଶୁଥିଲେ ବି ଭିତରେ ପ୍ରେମର ।

-ସେ ଯାହା ହେଉ, ଏଇ ଜାତିର ମୂଷା ଯେମିତି ସାହସୀ, ସେମିତି ବୁଦ୍ଧିଆ ଓ ଆକ୍ରମଣଶୀଳ । ତା' ବସା ଆମ ଘର ପାଖେ କେଉଁଠି ଥିବ ଭାବିଚ କି ବାପା ! ଏମାନେ ତାଙ୍କ ଖାଦ୍ୟ ଜାଗାରୁ ବହୁତ ଦୂରରେ ଥାନ୍ତି । ସେଠୁ ସୁଡ଼ଙ୍ଗ କରିଥାନ୍ତି ଖାଦ୍ୟ ଜାଗାକୁ । ଘରର ଇଟା କାନ୍ଥ ସିମେଣ୍ଟ ଚଟାଣ ସବୁ ଫୁଟାଇ ପାରନ୍ତି ଏମାନେ ।

ବିଜୟ ଆଶ୍ଚର୍ଯ୍ୟହୋଇ ଶୁଣୁଥାନ୍ତି । ଏତିକିବେଳେ ଅନୁପମା ତାଙ୍କ କାନେକାନେ କହିଲେ : ଟୁନା (ବିଜୟଙ୍କ ମଝିଆ ପୁଅ । ଦଶମ ଶ୍ରେଣୀର ଛାତ୍ର । ବିଜ୍ଞାନ ତାହାର ଅତି ପ୍ରିୟ ବିଷୟ) ତା ବହି ମେଲେଇ ପଢ଼ୁଛି- ତମକୁ ଏ ବିଷୟରେ କିଛି କହିବ ବୋଲି । ତମେ ସୁନା କଥା ଶୁଣି ଆନନ୍ଦ ପାଇଛ ବୋଲି ତା' ମନଟା ଫିକା ପଡ଼ିଯାଇଛି । ଟାଉଟାଉ ହେଉଚି ତମକୁ କିଛି କହିବା ପାଇଁ । ତାକୁ ଡାକି ପଚାର ।

ବିଜୟ ପ୍ରଥମେ ଖୁସି ହେଲେ । ଟିକିଏ ଗର୍ବ ବି ଅନୁଭବ କଲେ ଯେ ପୁଅମାନେ ତାଙ୍କ ସ୍ନେହ ପାଇବା ପାଇଁ ବ୍ୟଗ୍ର । କିନ୍ତୁ ପ୍ରତି କଥା ନେଇ ଦି'ଜଣଙ୍କ ଭିତରେ ଅସ୍ୱାସ୍ଥ୍ୟକର ପ୍ରତିଦ୍ୱନ୍ଦିତା ଯୋଗୁଁ ବେଳେ ବେଳେ ବାଡ଼ିଆପିଟା କଥା ଭାବି ତାଙ୍କ ମନ ଦବି ବି ଗଲା । ସେଇ ସୂତ୍ରରେ ନିଜ ଭିତରେ ଈର୍ଷାକୁ ଦେଖି ଆତ୍ମ-ଘୃଣା ବି ଉପୁଜିଲା । ଉଦାସ ଭାବରେ ଭାବିଲେ, କିଏ କଅଣ କରିବ ! ମନ ଭିତରେ ସେତ କେଉଁଠି ଥାଏ, ମୁଣ୍ଡ ଟେକି କୁହେ ସମସ୍ତଙ୍କୁ ଘୃଣା କର । ଘୃଣାର ଅଦ୍‌ଭୂତ ମାଦକତା ଓ ଉତ୍ତେଜନା ମନକୁ ମୁଗ୍ଧ ଓ ଆଛନ୍ନ କରିଦିଏ । ଏଇ ପଚନଶୀଳ ସହଜଦାହ୍ୟ ଦେହଟାକୁ ସୁଖରେ ରଖିବାକୁ ମଣିଷ ଯେମିତି ବ୍ୟାକୁଳ, ଟିକେ ସ୍ନେହ ପ୍ରଶଂସା ପାଇବାକୁ ସେମିତି କାଙ୍ଗାଳ । ଟିକେ ପ୍ରାଧାନ୍ୟ ପାଇବାକୁ ଡହଳବିକଳ । ସମସ୍ତେ କହନ୍ତୁ- ମୁଁ ନ ହେଲେ ଚଳିବ ନାହିଁ । ପୁଣି ଅତିଶୀଘ୍ର ଏଇ କାଙ୍ଗାଳପଣିଆ ପ୍ରାଧାନ୍ୟ ପାଇବାର ବୀଭତ୍ସ ଲାଳସାର ରୂପନେଇ ମଣିଷକୁ କେଡ଼େ କ୍ରୂର ନିର୍ମମ ନୃଶଂସ କରି ଦିଏଟି ! ମଣିଷ ପାଗଳ ବନିଯାଏ ପ୍ରାଧାନ୍ୟ ପାଇବା ପାଇଁ । ଭାବେ ସେଇ ଏକା ପ୍ରଧାନ ହୋଇ ରହିବ । ଅନ୍ୟ କେହି କୌଣସି କ୍ଷେତ୍ରରେ ମୁଣ୍ଡ ଟେକିଲେ ତାକୁ ଅସହ୍ୟ ଲାଗେ । ତା' ନିଜ କ୍ଷେତ୍ରରେ ହେଲେ ତ କଥା ନାହିଁ । ତା ମନ ଭିତରେ ଗଢ଼ିଉଠେ ଭୀଷଣ ଚକ୍ରାନ୍ତ । ସବୁବେଳେ ଷଡ଼ଯନ୍ତ୍ର- କେମିତି ଅନ୍ୟମାନଙ୍କଠାରୁ ବଡ଼ ବୋଲି ପ୍ରମାଣିତ ହେବି । ସେ ଚାଲିଗଲାବେଳେ ସମସ୍ତେ କୁର୍ଣ୍ଣିଶ କରୁଛନ୍ତି, ଆଶ୍ଚର୍ଯ୍ୟ ହୋଇ ତାକୁ ଦେଖୁଛନ୍ତି, ଏହି ଦିବାସ୍ୱପ୍ନ ଯେଉଁ ମାନସିକ ଉତ୍ତେଜନା ସୃଷ୍ଟିକରେ ତାହାହିଁ ହୁଏ ତା'ର କର୍ମ ପ୍ରେରଣା ଏବଂ ଏଇ ପ୍ରେରଣାରୁ ଜାତହୁଏ ଅନ୍ୟମାନଙ୍କ ପ୍ରତି ଗୋଟାଏ ପ୍ରକାର ସ୍ନେହ, ଦୟା, ଯାହା ମିଥ୍ୟା ହେଲେହେଁ ସତ୍ୟ ଭଳି ଜଣାପଡ଼େ । ପୁଣି କୁତ୍ସାରଟନାଠାରୁ ହତ୍ୟା ପର୍ଯ୍ୟନ୍ତ ନାନା ଘୋର କୁକର୍ମ ଏ ପ୍ରେରଣା ମଧ୍ୟ ଟାଣିନିଏ । ଅଥଚ ଦେଖିବାକୁ ଗଲେ ଏ ସବୁ ମୂଳରେ ଅଛି ସେଇ ଦୟନୀୟ ପ୍ରବୃତ୍ତିଟି... ମୁଁ କେମିତି ନିରାପଦରେ ବଞ୍ଚିବି ଏବଂ ସେଥିପାଇଁ ସମସ୍ତଙ୍କ ସାହାଯ୍ୟ ଆନୁଗତ୍ୟ ନିଶ୍ଚିନ୍ତ ଭାବରେ ପାଉଥିବି । ଏଇଥିପାଇଁ କେବଳ ସେ ଅନ୍ୟର ସୁଖ, ଯଶ, ପ୍ରତିପତ୍ତି, ପ୍ରଶଂସା ଶୁଣିଲେ ବା ଦେଖିଲେ ନିଜର ନିରାପଦ ସ୍ଥିତି ପ୍ରତି ବିପଦ ଆସିଗଲା ଭାବି ବିକଳ ହୋଇ ଯାହା ତାହା କରିପକାଏ । ନିଜର ନିରାପତ୍ତା ପାଇଁ ସେ ଧନ, ମାନ ପ୍ରତିପତ୍ତି ଓ ଅନ୍ୟଠାରୁ ସ୍ନେହ ବୃଦ୍ଧି କରି ଅନ୍ୟକୁ କବଳିତ କରିବା ପାଇଁ ବ୍ୟାକୁଳ ହୁଏ । ସମସ୍ତଙ୍କୁ ପରୋକ୍ଷରେ ମାଗୁଣି କରୁଥାଏ, ଏକା ମୋତେଇ ଟେକ । ଅଥଚ ସାମାନ୍ୟ ଅର୍ଥନୀତିକୁ ସତ୍ୟଟା

ସେ ଦେଖିପାରେ ନାହିଁ ଯେ ସମସ୍ତେ ନିରାପଦରେ ସୁଖରେ ରହିଲେ ଯାଇଁ ତାର ଜୀବନ ନିରାପଦ ଓ ସୁଖମୟ ହେବ । ନହେଲେ ଅନ୍ୟମାନଙ୍କ ଦୁଃଖହିଁ ହେବ ତାହାର ବିପଦ । ତାହାର ଯେତେ ଧନ, ମାନ, ପ୍ରତିପତ୍ତି ଥାଉ ପଛକେ ମନ ଏକଥା ବୁଝୁନାହିଁ । କି ଯନ୍ତ୍ରଣା । କି ଯନ୍ତ୍ରଣା !

ବିଜୟ ସତକୁ ସତ ଛାତି ଭିତରେ ଗୋଟାଏ ଯନ୍ତ୍ରଣା ଅନୁଭବ କରି ଆଉଁସିଲେ । ଗୋଟାଏ ଅନ୍ଧାରିଆ ଗହିରିଆ ବଡ଼ ବଡ଼ ଲୋମଶ ବୁଢ଼ିଆଣୀ ଜଙ୍ଗଡ଼ାବିଛା ସାଲୁ ସାଲୁ କୂଅ ଭିତରେ ଯେମିତି ସେ ପଡ଼ିଯାଇଛନ୍ତି । ଏଠୁ ବାହାରି ଆଉ ଯେମିତି ସେ ବାହାର ଦୁନିଆ, ମଣିଷ, ଗଛବୃଛ ଦେଖି ପାରିବେ ନାହିଁ । କେହି ବି ଜାଣିପାରିବେ ନାହିଁ, ସେ ଏମିତି ଗୋଟାଏ କୂଅ ଭିତରେ ପଡ଼ିଯାଇଛନ୍ତି । ଯେଉଁ ମଣିଷ ଉପରେ ପ୍ରାଧାନ୍ୟ ବିସ୍ତାର କରିବାକୁ ସେ ବ୍ୟାକୁଳ, ତାକୁଇ ହାତଯୋଡ଼ି 'ତହୁଁ ସେ ବୋଲେଇ ଗୋସାଇଁ, ଉଠି ତ ନ ପାରଇ ଯାଇ, ସେ କଥା କହଇ ମୁଁ ତତେ, ଏଠୁ ଉଦ୍ଧାର ହେ ସଙ୍ଗାତେ ।' ମଣିଷର ଶତ ନୀଚତା ସ୍ୱାର୍ଥାନ୍ଧତା ସତ୍ତ୍ୱେ ସେମାନଙ୍କ ମୁହଁଟିମାନ ତାକୁ ଭାରି ସୁନ୍ଦର ଦୃଶିଲା । ପ୍ରତ୍ୟେକଙ୍କ ଭିତରେ ଇଶ୍ୱରଙ୍କ ପ୍ରକାଶ ବେଶୀ ବେଶୀ ଦେଖି ସେମାନଙ୍କ ସ୍ନେହ ମାଗୁଣି କରିବାକୁ ଲାଗିଲେ । ଭାରି ଉଦାର ଓ ଆରାମ ଲାଗିଲା ତାକୁ । ସେ ମନେ ମନେ ଚିତ୍କାର କରି କହିଲେ-ହେ ପୃଥିବୀର ଭାଇଭଉଣୀମାନେ, ନିଜ ଭିତରେ ଓ ଅନ୍ୟ ଭିତରେ କାମ, କ୍ରୋଧ, ଲୋଭ, ହିଂସା, ଅହଂ ଦେଖି ଭୟ କରନା, ଚିନ୍ତା କରନା, ବିମର୍ଷ ହୁଅନା । ସବୁ ଦିନେ ଚାଲିଯିବ । ତାଙ୍କର ମନେ ହେଲା ହଠାତ୍ କୌଣସି ଅଲୌକିକ ଉପାୟରେ ସେ ଯେମିତି କୂଅଭିତରୁ ଉଦ୍ଧାର ପାଇଛନ୍ତି । କି ଆନନ୍ଦ । କି ଆନନ୍ଦ ।

ହଠାତ୍ ଆଲୋକ ପାଇବାଭଳି ସେ ମନେ ମନେ କହିଲେ : ଓଃ ହୋ ବୁଝିଲି । ଏଥିରୁ ମୁକ୍ତି ପାଇବାର ଏକମାତ୍ର ବାଟ ହେଉଛି ପ୍ରେମ । ମନେ ହେଲା ସେ ପ୍ରେମ ସେ ପାଇସାରିଛନ୍ତି । ସମସ୍ତ ମାନବଜାତି ପଶୁପକ୍ଷୀ ଗଛବୃଛ ଏମିତି କି ପ୍ରତି ଧୂଳିକଣାଟି ପ୍ରତି ତାଙ୍କ ମୁଣ୍ଡ ଲଇଁ ଗଲା । ସେ ମନେ ମନେ ସ୍ତବ କଲେ-

ପଶ୍ୟାମି ଦେବାଂସ୍ତବ ଦେବ ଦେହେ ସର୍ବାଂସ୍ତଥା ଭୂତ ବିଶେଷ ସଂଘାନ୍...

...ଏଇଥର ବୋଧହୁଏ ମୋ ମନରୁ ସବୁ ଈର୍ଷା, ସ୍ୱାର୍ଥପରତା, ପ୍ରାଧାନ୍ୟ ଲାଳସା ଗଲା । ଭାରି ସାହସ ଆସିଲା ତାଙ୍କ ମନକୁ ଏକଥା ଭାବି । ନିଜକୁ ପରଖିବାକୁ ସେ ମନେ ମନେ କହିଲେ, ଆଚ୍ଛା ଦେଖେ, ମୁଁ ଅକ୍ଟୋପସ୍‌କୁ ପ୍ରେମ କରୁଛି କି ନା । ମନେ ମନେ ସେ ଅକ୍ଟୋପସ୍ କଥା ଭାବିବାକୁ ଲାଗିଲେ... ଗୋଟାଏ ଗୋଲ ନରମ ଧଳା ମାଂସ ପିଣ୍ଡ... ସେଥିରେ ଦୁଇଟା ବଡ଼ ବଡ଼ କାଳିଆ ଆଖି... ସବୁବେଳେ ଖୋଲା ସେ ଆଖି... ସେ ଆଖିର ପତା ନାହିଁ କି ଢ଼ୋଳା ନାହିଁ... ସେ ମାଂସ ପିଣ୍ଡଳାରୁ ବାହାରିଛି ଆଠଟା ଗୋଡ଼.. ଲମ୍ବା ଲମ୍ବା ସେ ଗୋଡ଼ର ଦୁଇ କଡ଼େ କଡ଼େ ରହିଛି ଅସଂଖ୍ୟ ଛିଦ୍ରର ଧାଡ଼ି... ସେଇ ବାଟେ ସେ ଶିକାରର ଦେହରୁ ରକ୍ତ ଶୋଷି ନିଏ... ମାଂସ ପିଣ୍ଡୁଳାଟା ଭାସି ଭାସି ଯାଉଛି, ଆଉ ଆଠଟା ଗୋଡ଼ଯାକ ଆଠଦିଗକୁ ପ୍ରସାରିତ ହୋଇ ଲହ ଲହ ହେଉଛନ୍ତି, ଖୋଜି ବୁଲୁଛନ୍ତି ଶିକାର... ଗୋଟାଏ ସେଥିରୁ ତାଙ୍କ ଦେହରେ ଲାଖିଗଲା... ଦେଖୁ ଦେଖୁ ଆଠଟିଯାକ ତାକୁ ଜାବୋଡ଼ି ଧରିଲା ।

ଘୃଣା ଓ ଭୟରେ ତାଙ୍କ ଦେହ ଶୀତେଇ ଉଠିଲା । ପ୍ରତ୍ୟେକ ଲୋମ ଛିଡ଼ା ହୋଇଗଲେ ।

ବିଜୟ ହତାଶ ହେଲେ । ନାଃ, ତେବେ ହେଲାନାହିଁ । ନାଁ, ଅତେଦୂର ବୋଧେ ଏତେ ଶୀଘ୍ର ହେବନାହିଁ ଯୁକ୍ତି ବାଢ଼ିଲେ ସେ... କାହିଁକି ବା ଅକ୍ଟୋପସ୍ ପ୍ରତି ପ୍ରେମ ହୁଅନ୍ତା ଯେ... । ଆଚ୍ଛା ଦେଖାଯାଉ, ମୁଁ ଯା'କୁ ସବୁଠୁ ଈର୍ଷା କରେ ତା'ର ପୁଅ ଖେଳା ପଢ଼ାରେ ପ୍ରଥମ ହୋଇ ବିଖ୍ୟାତ ହୋଇଛି ଏକଥା ମୋତେ କେମିତି ଲାଗୁଚି । ତା'ର ବାପା ଯେଉଁ ଆନନ୍ଦ ପାଇବ ମୁଁ ସେଥିରେ ସୁଖୀ ହେଉଛି କି ନା । ଭାବିଲାବେଳକୁ ଏକଥା ମନଭିତରେ ଖଚ୍‌କରି ଲାଗିଲା । କୌଣସି ମତେ ସେ ନିଜକୁ ମିଶାଇ ପାରିଲେ ନାହିଁ ତା ବାପାର ଆନନ୍ଦ ସହିତ ନିଜକୁ । ମନ ଭିତରେ କିଏ ଯେମିତି ଏହାର ପ୍ରତିବାଦ କଲା ।

ବିଜୟ ବିମର୍ଷ ହେଲେ ।...ଇସ୍, ସାଧାରଣ ଭାବରେ ତତ୍ତ୍ୱରେ ଭାବିଲେ, ସର୍ବେ ଭବନ୍ତୁ ସୁଖୀନଃ କହି ବେଶ୍ ଉଦାର ପ୍ରଶାନ୍ତ ଲାଗୁଛି ଅଥଚ ବ୍ୟକ୍ତିକୁ ଆସିଲାବେଳକୁ ଯେଉଁ କଥାକୁ ସେଇ କଥା... କାହିଁକି ... କିଏ ଯେମିତି ତାଙ୍କ ମନଭିତରୁ କହିଲା, ସେ କି ସହଜେ ମିଳିବା ଧନରେ ତାକୁ ଅଳପେ ପାରିବୁ ଧରି... । ତେବେ ? ତେବେ ନିଶ୍ଚୟ କମ୍ୟୁନିଜିମ୍ ପାରିବ ଯିଏ କି ସମାଜରେ ଜୋର ଜବରଦସ୍ତି କରି ଆର୍ଥିକ ସମତା ଆଣି, ସାମାଜିକ ଉଚ୍ଚନୀଚ ଭେଦଭାବ ଉଠାଇ, ଜୀବନଯାପନକୁ ନିରାପଦ ଓ ସୁଖମୟ କରି ବ୍ୟକ୍ତିର ମନରେ ପ୍ରେମ ଆଣିବାକୁ ଚେଷ୍ଟା କରେ ।

କିନ୍ତୁ ତାଙ୍କ ମନ କହିଲା, ଏ ତ ତନ୍ତ୍ର । ତନ୍ତ୍ରରେ ଯେମିତି ଦେହ ଉପରେ ଜବରଦସ୍ତି କରି ମନରେ ନିର୍ବିକାରଭାବ ଓ ପ୍ରେମ ସଞ୍ଚାର କରିବାର ଚେଷ୍ଟା କରାଯାଏ-ମଳମୂତ୍ର, ଶବ ମାଂସ ଖାଇ ନିର୍ବିକାର ହେବା, ଅଧେ ତୁଳସୀ କାଠ ଓ ଅଧେ ହାଡ଼ର ଜପାମାଳାରେ ଜପକରି ସବୁ ତୁଲ୍ୟମୂଲ୍ୟ ଭାବ ଆଣିବା, ନାରୀଭଳି ଶାଢ଼ୀ ଗହଣା ପିନ୍ଧି ଭଗବାନ ଏକମାତ୍ର ପୁରୁଷ ଆଉ ସମସ୍ତେ ପ୍ରକୃତି ବା ନାରୀ- ଏ ଭାବ ଆଣିବା (କାହିଁକି ନା ସବୁ ପ୍ରାଣୀ ଜାଣତରେ ବା ଅଜାଣତରେ ତାଙ୍କୁଇ ପାଇବା ପାଇଁ ବ୍ୟାକୁଳ), ଦରିଦ୍ର ଭଳି ଜୀବନଯାପନ କରି ନ୍ୟୂନଭାବ ଆଣିବାର ଚେଷ୍ଟା କରିବା; ଯେମିତି ସାହିତ୍ୟରେ ତନ୍ତ୍ର-ମିନି ସାହିତ୍ୟ, ଜ୍ୟାମିତିକ ସାହିତ୍ୟ (ତାନ୍ତ୍ରିକ ମନ୍ତ୍ର ହ୍ଲୀଂ କ୍ଲୀଂ ଫଟ୍ ଆଦି ଭଳି ସାହିତ୍ୟକୁ ଅତି ସଂକ୍ଷିପ୍ତ କରି ଅର୍ଥ ଗୁପ୍ତ କରିବାର ଚେଷ୍ଟା-ସାହିତ୍ୟରେ ପୁଣି ଗୋଟାଏ ଏକସ୍‌ପେରିମେଣ୍ଟ କଅଣ ବା), ଭାଷାରେ ଚାତୁର୍ଯ୍ୟ ଦୁର୍ବୋଧତା ଚମକପ୍ରଦ ଓ କ୍ଲିଷ୍ଟ ଉପମା ପ୍ରତୀକ ରୂପକଳ୍ପ ଆଦି ପ୍ରୟୋଗ କରି ଅର୍ଥାତ ଫର୍ମ ଉପରେ ଜବରଦସ୍ତି କରି ସାହିତ୍ୟକୁ ଭାବମୟ କରିବାର ଚେଷ୍ଟା କରିବା; ସେମିତି ସମାଜ ଉପରେ ଜବରଦସ୍ତି କରି, ଦରକାର ପଡ଼ିଲେ ହଣାକଟା କରି, ଅର୍ଥନୀତିକ ଓ ସାମାଜିକ ସାମ୍ୟ ଆଣି ବ୍ୟକ୍ତିର ମନରେ ସାମ୍ୟ ପ୍ରତି ଆବେଗ ସୃଷ୍ଟି କରିବାର ଚେଷ୍ଟା କରିବା ।

...ଏଥିରେ କଅଣ ହେବ । ଶ୍ରୀ ରାମକୃଷ୍ଣ କହିଛନ୍ତି, ତନ୍ତ୍ର ବାଟରେ ଯିବାମାନେ ପାଇଖାନା ବାଟଦେଇ ଘର ଭିତରକୁ ପ୍ରବେଶ କରିବା । ...ତା ହେଲେ ଜବରଦସ୍ତି କଅଣ ଆଦୌ ଦରକାର ନାହିଁ ...ଦେହ ବାଟେ ମନକୁ ନ ଯାଇ ମନବାଟେ ଦେହକୁ ଆସିଲେ ହବ ନାହିଁକି... ସେ ଚେଷ୍ଟା ତ ବୁଦ୍ଧ, ଯୀଶୁ, ମହମ୍ମଦ, ଚୈତନ୍ୟ, ରାମକୃଷ୍ଣ, ଗାନ୍ଧିଜୀ, ଶ୍ରୀ ଅରବିନ୍ଦ ଏମିତି କି ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି... ସଫଳ ହୋଇଛନ୍ତି କି...ନା ତ...ସେମାନେ ବି ତ କହିଛନ୍ତି : ଦେହ ଉପରେ କିଛିଟା ଜବରଦସ୍ତି ଦରକାର । କିନ୍ତୁ ମଣିଷ ତ ବଦଳି ନାହିଁ । ତେବେ କଅଣ ପ୍ରତ୍ୟେକର ଦାବି ଓ ସ୍ୱାର୍ଥ ଭିତରେ ସଂଘର୍ଷ ଲାଗୁ ଲାଗୁ ମଣିଷ ଛାଏଁ ବୁଝିବ ଯେ ପରମାର୍ଥ ଲାଭହିଁ ସ୍ୱାର୍ଥ ସିଦ୍ଧିର ଏକମାତ୍ର

ଆନନ୍ଦମୟ ଓ ନିରାପଦ ବାଟ... ତେବେ ମାର୍କସ କଅଣ ଠିକ୍, ଆଉ ସମସ୍ତେ ଭୁଲ... କିନ୍ତୁ ବୁଦ୍ଧ ଆଦିଙ୍କ ପାଇଁ ମଣିଷ କଅଣ କିଛି ବଦଳି ନାହିଁ-

ବିଜୟ ଯେଉଁବାଟେ ଯାଆନ୍ତୁ ନା କାହିଁକି, କିଛି ବାଟ ଗଲାପରେ ଦେଖିଲେ ଅନ୍ଧ ଗଳି, ଆଉ ବାଟ ନାହିଁ । ସେଠୁ ଫେରି ପୁଣି ଆଉ ଗୋଟେ ରାସ୍ତା, ପୁଣି ଅନ୍ଧ ଗଳି । ବିଜୟଙ୍କୁ ଭାରି ହତାଶ ଲାଗିଲା । ବିରକ୍ତ ହୋଇ ସେ କହିଲେ, ଚାଲୁ ଶଳା ଯେମିତି ଚାଲୁଛି ସେମିତି ଚାଲୁ ।

ହଠାତ୍ ତାଙ୍କ କାନରେ ପଡ଼ିଲା, ଆରେ ମୁଁ କଅଣ କହିଲି ତମ କାନରେ ପଡ଼ିଲା ନା ନାହିଁ ବା । ଇଲୋ ମାଆଲୋ, ଏମିତି ବଲ୍ ବଲ୍ କରି କିଆଁ ଚାହିଁଛ ବା । ଆରେ ମୁହଁଟା ଶେତା ଦିଶୁଛି କାହିଁକି ବା । ମୁଁ କଅଣ କରିବିଟି । ଖାଲି ଗୁଡ଼ାଏ ଚିନ୍ତା କରୁଛ କାହିଁକି ବା । କାମ କରିବଟି ଆଗ । ପୁଅକୁ ଡାକି କହିବଟି ଯାହା କହିଲି ।

ବିଜୟଙ୍କ ସମ୍ବିତ ଫେରି ଆସିଲା । ସେ ସବୁ ଭାବନା ଠେଲି ଦେଇ ପୁଅକୁ ଡାକି କହିଲେ ଆରେ ଟୁନା, ତୋର ପ୍ରାଣୀ ବିଜ୍ଞାନ ବିଷୟରେ ପରା ପଢ଼ା ହୁଏ । ତୁ କଅଣ ଜାଣିଛୁ କହିବୁଟି ।

କିନ୍ତୁ ତାଙ୍କ ମନକୁ ପୁଣି ଯୁକ୍ତିସବୁ ମାଡ଼ି ଆସିଲେ । ସେ ମନେ ମନେ କହିଲେ, ଅନୁପମା ଅଜାଣତରେ ଠିକ୍ କହିଚି -କିଛି କର, ଗୁଡ଼ାଏ ଯୁକ୍ତି କରନା ବସି ବସି । ମାଓ -ସେ-ତୁଙ୍ଗ ଏଇଥିପାଇଁ ପରା ଯେ ଇଣ୍ଟେଲେକ୍ଚୁୟେଲ୍‌ମାନଙ୍କୁ ଥରକୁ ଥର କଲ୍‌ଚରେଲ୍ ରିଭୋଲ୍ୟୁସନ୍ ନାମରେ ଖତମ କରିଛନ୍ତି । କିନ୍ତୁ...ଚୋପ୍‌ବେ...କିନ୍ତୁ...ଚୋପ୍, ଫେଣେ ଯୁକ୍ତି...ହ୍ୟାପ୍, ତାଧେଇ ଖଟ୍‌ଖାଟ୍ ଖ୍ୟାଞ୍ଚ ଖ୍ୟାଞ୍ଚ, କଥାରେ କାଟେ କଥାରେ ପେଞ୍ଚ...ଯେ ଯା' କହିଛନ୍ତି, ସିଏ ତା' କହନ୍ତି...ତୁ କଅଣ କହୁଚୁ ଶୁଣେ... ତା' ବେଳକୁ, ମୋର ହାତ ଧରି ତୁମେ ନେଇ ଚାଲ ପ୍ରଭୁ । ମୁହିଁ ଯେ କିଛି ଜାଣେନା... କିନ୍ତୁ... ଚୋପ୍... କିନ୍ତୁ ଚୋପ୍... କାହିଁକି ଚୁପ୍ କରିବି ଶୁଣେ...ବୁଦ୍ଧ, ଯୀଶୁ, ମହମ୍ମଦ, ଚୈତନ୍ୟ, ମାର୍କସ, ଗାନ୍ଧୀ, ତୁଙ୍ଗଙ୍କ ଭଳି ମୁଁ ବି ଜଣେ... ହ୍ୟାପ୍ ମାଇକିନିଆ କହୁଚି କଅଣ ନା ଚିନ୍ତା କର-ନା କାମ କର... ଚିନ୍ତା କରିବାଟା ଯେମିତି କାମ ନୁହେଁ... ଆଗ ତ ଚିନ୍ତା... ନ ହେଲେ ହ୍ୟାପ ତୋ'ରି ପରି ଅନ୍ଧାଧୁନ୍ଧିଆ କାମ...ଦିନକୁ ହଜାରେ ଥର ଆଲମାରି ଚାବି ହଜୁଚି, ଚାବି ଖୋଜା ଚାଲିଚି, ପିଲାଙ୍କ ଉପରେ ଅଯଥା ଗାଳି ବରଷୁଚି... ମୁଁ ଜଣେ ଚିନ୍ତାଶୀଳ ବ୍ୟକ୍ତି... କିଛି ପଶୁ ନୁହେଁ... କିଏ କହିଦେଲେ ବୋଲି ବେଦ ବାକ୍ୟ ହେଲା ନା କଅଣ... ଅନ୍ତତଃ ମୁଁ ମାନିବି ନାହିଁ... ଯେ କୌଣସି ଶାସ୍ତ୍ର ବା ଜ୍ଞାନ ଶେଷ କଥା କହିଦେଇ ପାରେନା... ତା'ହେଲେ ତ ମଣିଷ ବୁଦ୍ଧିର ବିକାଶ ହୁଅନ୍ତା ନାହିଁ... ଗୋଟାକୁ ଧରି ତାକୁହିଁ ଶେଷକଥା ବୋଲି ଦଳ ଗଢ଼ି ପ୍ରଚାର କରିବା ମାନେ ନିଜର ପ୍ରତିପତ୍ତି ବିସ୍ତାର କରିବା... ଗୀତାରେ ତ ଭଗବାନ ନିଜେ କହିଲେ, ଶାସ୍ତ୍ରରେ ଏମିତି ଏମିତି ଲେଖା ଅଛି, ହେଲେ ତୁ ତୋ ନିଜ ବୁଦ୍ଧିରେ ସବୁ ବୁଝ... ଅନ୍ତତଃ ମୋ ମନ ସେମିତି ଚୁପ୍ ରହିପାରିବ ନାହିଁ... ମୁଁ କାହାରି ଗୋଡ଼ାଣିଆ ହୋଇପାରିବି ନାହିଁ, ଭଗବାନଙ୍କର ବି ନୁହେଁ... ମୁଁ ମୁଁ...ମୁଁ ... ମୁଁ-

ବିଜୟ ସଁ ସଁ ନିଶ୍ୱାସ ମାରିବାକୁ ଲାଗିଲେ । ତାଙ୍କ ମୁଣ୍ଡ ଗରମ ହୋଇଗଲା । କାନ ଲାଲ ପଡ଼ିଗଲା । ଦୁଇ ରଗ ଯେମିତି ପଡୁଥାଏ ଉଠୁଥାଏ ଦପ୍ ଦପ୍ କରି । ତଥାପି ସେ ଯୁକ୍ତି କରୁଥା'ନ୍ତି । ଠିକ୍ ସେ ନୁହଁ । ତାଙ୍କ ମନ ତା' ମନକୁ ମନ ଯୁକ୍ତି କରି ଚାଲିଥାଏ । ସେ ମନଟା ଯେମିତି ଆଉ କାହାର । ଅଜାଏ ଜବରଦସ୍ତ ତାଙ୍କ ମନ ଭିତରେ ପଶି ସୂକ୍ଷ୍ମ ଯୁକ୍ତିସବୁ ଯୋଗାଇ ଦେଉଥାଏ । ବିଜୟ

ଚେଷ୍ଟା କଲେ ବି ତାକୁ ତଡ଼ି ପାରୁ ନ ଥାନ୍ତି । ଛାତ୍ର ଅବସ୍ଥାରେ ସେ ଯେତେବେଳେ ପଢୁଥିଲେ 'କହଇ ମନ ଆରେ ମୋ ବୋଲ କର' ବା 'ବାଇୟା ମନଟାକୁ ତୁ ବାନ୍ଧରେ ବାନ୍ଧୁ' ସେତେବେଳେ ବୁଝି ପାରୁ ନ ଥିଲେ । ନିଜ ମନକୁ ନିଜେ ମନାଇବ କଅଣ । ଭାବୁଥିଲେ ସେଟା ଗୋଟେ ସାହିତ୍ୟିକ ଚାତୁରୀ । ବର୍ତ୍ତମାନ ସେ ବୁଝିପାରିଲେ ଇନ୍ଦ୍ରିୟଜ ବା ଅହଂଜ ମନ ନିଜ ଭିତରର ହେଲେ ବି ଭିନ୍ନ ଏକ ମନ । ବଡ଼ ପ୍ରବଳ ଅବୋଲକରା ସେ । ତା' ଉପରେ ଜବରଦସ୍ତି ଦରକାର । ଏକଥା ବୁଝି ମଧ୍ୟ ସେ ମନକୁ ସେ ରୋକି ପାରିଲେ ନାହିଁ । ନାନା ବାଗରେ ସେ ପଶି ଆସି ମୁଣ୍ଡ ଟେକୁଥାଏ । ଜବରଦସ୍ତି ଦରକାର କହିଲେ ବି ସେ ମନ କହିଲା, ହଁ ଜବରଦସ୍ତ ଦରକାର ସତ, ହେଲେ ତା ଭିତରୁ ନା ବାହାରୁ ? ପ୍ରଶ୍ନଟା ଭାରି ଲୋଭନୀୟ । ନିଜ ବୁଦ୍ଧି ବଳରେ ତା'ର ସମାଧାନ କରିବାକୁ ବିଜୟ ପୁଣି ଲୋଭରେ ପଡ଼ିଗଲେ । ଯୁକ୍ତି କରିବାକୁ ଲାଗିଲେ ପୁଣି । କ୍ରମେକ୍ରମେ ଯୁକ୍ତି ସବୁ ଗୋଳମାଳିଆ ଧରିବାକୁ ଲାଗିଲେ । ମନଟା କ୍ଳାନ୍ତ ହୋଇପଡ଼ିଲା । ମନ ଭିତରେ ନାନା ଯୁକ୍ତି ତାଣ୍ଡବ ନୃତ୍ୟ କରୁଥା'ନ୍ତି । ମନ ଶାନ୍ତ ହେଲେ ସିନା ଗୀତା କହିଥିବା ବୁଦ୍ଧି ସମତ୍ୱ ପାଆନ୍ତା, କୁଶଳୀ ଭାବରେ କାମ କରନ୍ତା । ବିଜୟଙ୍କ ମନ ଖାଲି ବିତର୍କ କରୁଥାଏ, ସବୁ କଥାକୁ ଖଣ୍ଡନ କରୁଥାଏ । ଏଣେ ବିଜୟ କିଛି ଗୋଟାଏ ସିଦ୍ଧାନ୍ତରେ ପହଞ୍ଚି ଶାନ୍ତି ପାଇବାକୁ ଆକୁପାକୁ ଛଟପଟ ହେଉଥାନ୍ତି ।

ଭାଗ୍ୟକୁ ଟୁନା ତାଙ୍କୁ ସେ ଅବସ୍ଥାରୁ ଉଦ୍ଧାର କଲା । ସେ ନିଜ ବାହାଦୁରି ଦେଖାଇବାକୁ ଅଧୀର ଭାବରେ ବଡ଼ ପାଟି କରି କହିଲା : ବାପା, ଯେକୌଣସି ସ୍ଥାନକୁ ଏ ମୂଷା କୁଦା ମାରି ଉଠିପାରେ । ହିସାବ କରି...

ବିଜୟ ସେ କଥାକୁ କାନ ଦେଲେ... ସେ ମୂଷା ବି ବଞ୍ଚିବାକୁ ଚାହେଁ... ଯାର ବି ଜୀବନ ଅଛି... ମୂଷା ସମସ୍ତଙ୍କ ଜୀବନ ମିଶି ଏକ ଅଖଣ୍ଡ ବିରାଟ ଜୀବନ ସ୍ପନ୍ଦିତ ହେଉଛି... । ବିଜୟ କ୍ଷଣକ ପାଇଁ ହେଲେ ବି ସେ ବିରାଟ ସାମନାରେ ଛିଡ଼ା ହୋଇ ନିଜର କ୍ଷୁଦ୍ରତା ଉପଲବ୍ଧି କରି ସୁସ୍ଥ ହେଲେ ।

ଟୁନା କହି ଚାଲିଥାଏ : ହିସାବ କିଛି [illegible] କୋଟି ଟଙ୍କାର ଫସଲ ନଷ୍ଟ କରୁଛନ୍ତି । ଗବେଷଣାରେ ଜଣାଯାଇଛି- ଯଦି କେଉଁଠି ଗୋଟେମାତ୍ର ଦେଖାଗଲା ତେବେ ନିଶ୍ଚେ ଆଖପାଖରେ ପାଞ୍ଚଶହରୁ ହଜାରେ ଭିତରେ ଅଛନ୍ତି ।

ବିଜୟଙ୍କୁ ଚାଏଁ କିନା ଲାଗିଲା ସେ କଥା । ସେ ଆତଙ୍କିତ ହୋଇ କହିଲେ : ଇସ୍ । ୟାଙ୍କ ଦାଉରୁ ପୃଥିବୀରେ ଦୁର୍ଭିକ୍ଷ ପଡ଼ିଯିବ । ମଣିଷଜାତିକୁ ଦିନେ ଧରାପୃଷ୍ଠରୁ ଲୁପ୍ତ କରିଦେବେ ଏ ଶଳେ ଅଧମ ଜୀବମାନେ ।

ଠିକ୍ ଏହି ସମୟରେ ତାଙ୍କ ନଜର ପଡ଼ିଲା ସାନପୁଅର କ୍ଷତ ଉପରେ । କ୍ଷତଟା ପାଚି ଘା ଭଳିଆ ହୋଇଯାଇଛି । ଜୀବନତତ୍ତ୍ୱ କଥା ଭାବି ତାଙ୍କର ଯେଉଁ ଆତ୍ମଭୋଳା ସାମ୍ୟଭାବଟି କୋହ ସଞ୍ଚାର କରିଥିଲା, ତାହା ଅପସରିଯାଇ ମୂଷାଟା ଉପରେ ଘୃଣାମିଶା କ୍ରୋଧ ଜାତ ହେଲା । ଦାନ୍ତ ରଗଡ଼ି ସେ କହିଲେ - ଯେତିକି ଅତ୍ୟାଚାର ମୋରି ଉପରେ; କେତେ କଷ୍ଟକରି ସାମାନ୍ୟ ଛେନା ଟିକକ ପୁଅ ପାଇଁ ରଖୁଚି । ତାକୁ କେଉଁଦିନ ପିମ୍ପୁଡ଼ି ବେଢ଼ି ଗଲେଣି ତ କେଉଁଦିନ ଅଲମାରୀ ନୁହଁ ମାରିସାରିଲାଣି । ଶେଷକୁ ଶଳା ମୂଷାଟାଏ ନୟାନ୍ତ କରି ସାରିଲାଣି ଆମକୁ । ମାରିବି ମାରିବି, ନିଶ୍ଚେ ମାରିବି । ୟାକୁ ମାରିଲେ ଯାଇ ମୋ ଆତ୍ମା ତୃପ୍ତି ପାଇବ ।

ସନ୍ଧ୍ୟାବେଳକୁ କଟେରୀରୁ ଫେରିବା ବାଟରେ ସେ ସାତଟଙ୍କା ଦେଇ କିଣି ଆଣିଲେ ଗୋଟେ ଭୀଷଣ ଜର୍ମେନ ଜନ୍ତା । ଜନ୍ତାର ଦୁଇ ପାଟିରେ ଦୁଇଧାଡ଼ି ଅତି ତୀକ୍ଷ୍ଣ ଦାନ୍ତ । କଉ ଶିଳ୍ପୀ ପୁଣି ଉପର ପାଟିରେ ଦୁଇଟା ବଡ଼ ବଡ଼ ନାଲି ନାଲି ଆଖି, ତା' ତଳକୁ କ୍ଷୁଦ୍ର ଚଉଡ଼ା ନାକଟାଏ ଓ ତା' ତଳେ ହଳେ ବଡ଼ ବଡ଼ ଗହଳିଆ ନିଶ ଆଙ୍କି ଦେଇଥିବାରୁ ଜନ୍ତାଟା ଆହୁରି ସଜୀବ ଓ ଭୟଙ୍କର ଦିଶୁଥାଏ । ଯାହା ଦେଖି ବିଜୟ ପସନ୍ଦ କରି ତାକୁ କିଣି ଆଣିଥାନ୍ତି । ଦୁଇଧାଡ଼ି ଦାନ୍ତ ଟେକିଦେଲେ ଗୋଟାଏ ବଡ଼ ପାଟି ମେଲା ହୋଇଯିବା ଭଳି ଦିଶେ । ସେ ପାଟିଭିତରେ ଗୋଟେ ସାନ ଗିନା । ବିଜୟ ମହାଖୁସିରେ ଘରେ ସମସ୍ତଙ୍କୁ ଦେଖାଇଲେ, ଜନ୍ତାଟି କେମିତି କାମ କରେ । ଗୋଟାଏ ସାନ ଗୋଡ଼ି ଆଣି ଧୀରେ ସେ ଗିନାରେ ଛାଡ଼ିଦେଲେ । ଆଖି ପିଛୁଳାକେ ଗୋଟେ ଭୟଙ୍କର କ୍ୟାଞ୍ଚକୋଞ୍ଚ୍ ରଡ଼ି ଛାଡ଼ି ଦୁଇଧାଡ଼ି ଦାନ୍ତରେ ଲାଗିଥିବା ସ୍ପ୍ରିଂ ଖସିଯାଇ ଜାବ ପଡ଼ିଗଲା । ଦାନ୍ତକାଠି ଖଣ୍ଡେ ଦୁଇଧାଡ଼ି ଦାନ୍ତଭିତରେ ରଖିଥିଲେ ଯେ ସେଟା କଟି ଦୁଇଖଣ୍ଡ ହୋଇଗଲା । ବିଜୟ ସଗର୍ବେ ସମସ୍ତଙ୍କୁ ଚାହିଁ କହିଲେ, ଏଟା ସବୁଠୁ ବଢ଼ିଆ ଜନ୍ତା, ବଜାରଯାକ ଖୋଜି ଖୋଜି ଆଣିଛି ।

ରାତିର ଖିଆପିଆ ସରିବା ପରେ ଜନ୍ତାକୁ ରୋଷେଇଘରେ ରଖାଗଲା । ବହୁ ଆଲୋଚନା ପରେ ସ୍ଥିର ହେଲା ଯେ ମୂଷାଟାର ଯେତେବେଳେ ଛେନା ଅତି ପ୍ରିୟ ଖାଦ୍ୟ ଦେଖାଯାଉଛି, ଛେନା ହିଁ ରଖାଯିବ ଗିନାରେ । ମୂଷାଟାକୁ ଯେ ଦିନେ ପିଠା ବଳକା ଖାଇବାର ଦେଖାଯାଇଥିଲା ସେଟାକୁ ବିଜୟ ଧର୍ତ୍ତବ୍ୟ ଜ୍ଞାନ କଲେ ନାହିଁ । ହେଲେ ଅନୁପମା ମୋନାଲିସା ଭଳି ରହସ୍ୟମୟ ହସହସି କହିଥିଲେ ଯେ- ତାଙ୍କର ମନେହୁଏ, ମୂଷା ଆଉ ଛେନା ଖାଇବ ନାହିଁ । ବିଜୟ ତାଙ୍କ ଉପରେ ବିରକ୍ତ ହୋଇ ନିଜ ନିଷ୍ପତ୍ତିକୁ ହିଁ କାଏମ ରଖିଥିଲେ ।

ମୂଷା ଜନ୍ତାରେ ପଡ଼ି ଦି'ଗର ହୋଇଯାଉଛି ଆଉ ଦି'ଖଣ୍ଡଯାକ ଛଟପଟ ହେଉଛନ୍ତି । ଏ ତୃପ୍ତିକର ଦୃଶ୍ୟ ସାଙ୍ଗେ ସାଙ୍ଗେ ଦେଖିବାପାଇଁ ବିଜୟଙ୍କ ଆଖିକୁ ନିଦ ଆସିଲା ନାହିଁ । ରାତି ତିନି ବେଳକୁ ଜନ୍ତାର ବିକଟ ରଡ଼ି ଶୁଣି ସେ 'ଜୟ ଜନ୍ତା' ନିନାଦ କରି ଖୁସିରେ ଦୌଡ଼ିଗଲେ ରୋଷେଇ ଘରକୁ । ତାଙ୍କ ନିନାଦରେ ଅନ୍ୟ ସମସ୍ତେ ଉଠି ଦୌଡ଼ିଗଲେ ।

ସେଠି ଯାହା ଦେଖିଲେ ସେ କାଠଭଳି ଛିଡ଼ା ହୋଇ ରହିଲେ । ଜନ୍ତାର ଜାବ ପଡ଼ିଛି ସତ, କିନ୍ତୁ ସେଥିରେ ମୂଷା କାହିଁ ? ଗିନାର ଛେନାତକ ତଳେ ବିଞ୍ଚି ହୋଇ ପଡ଼ିଛି । ମୂଷା ଥାକ ଉପରେ ବସି କୁଟୁରୁ କୁଟୁରୁ କରି ପିଠା ବଳକା ଖାଉଛି ଆଉ ନିରାସକ୍ତ ଭାବରେ ସମସ୍ତଙ୍କୁ ବୁକୁବୁକୁ କରି ଅନଉଚି । ଜନ୍ତାଟା ଦାନ୍ତ ନିକୁଟି ମଲାପରି ପଡ଼ିଛି । ତା'ର ଆଖି ଦି'ଟା ମନେହେଲା ଭୟରେ ବଡ଼ ବଡ଼ ହୋଇଯାଇ ମୂଷାଆଡ଼େ ଚାହିଁ ରହିଛି । ଏତେବେଳେ ତାଙ୍କର ମନେହେଲା ହ୍ୟାପ ଶିଳ୍ପୀ ଅବାନ୍ତର ଭାବରେ ସେମିତି ଆଙ୍କିଛି ଦେଖ ଯେ, କଅଣନା ଗରାଖକୁ ଠକିବା ପାଇଁ । ଭାରି ରାଗ ହେଲା ଜନ୍ତା ଉପରେ । ଅସହ୍ୟ କ୍ରୋଧରେ ଜନ୍ତାକୁ ପ୍ରଚଣ୍ଡ ଗୋଇଠାଟାଏ ମାରି ସେ ଗୋଟାଏ ବାଲିଟି ଟେକି ଫୋପାଡ଼ି ଦେଲେ ମୂଷା ଉପରକୁ । ମୂଷା ଡୁଦାମାରି ପଳାଇଲା । ବାଲିଟି ଛିଟିକି ଆସି ସାନପୁଅର କପାଳରେ ବାଜି ରକ୍ତ ଝରାଇଲା । ବିଜୟ ଅଧୀର ଭାବରେ କାନ୍ଦିପକାଇଲେ ।

ପୁଅର ମୁଣ୍ଡ ଧୂଆଧୋଇ ହେଲା । ସାମାନ୍ୟ କ୍ଷତ । ବିଜୟ ଟିକେ ଶାନ୍ତ ହେଲେ । ଜନ୍ତା କଥାଟା ତାଙ୍କୁ ଏକ ଦୁର୍ଭେଦ୍ୟ ରହସ୍ୟ ଭଳି ଲାଗିଲା । ଜନ୍ତାର ଜାବ ଯେତେବେଳେ ପଡ଼ିଛି ସେତେବେଳେ ନିଶ୍ଚୟ ମୂଷା ଛେନା ଖାଇବାକୁ ଜନ୍ତା ଉପରକୁ ଉଠିଥିଲା । ତା'ହେଲେ ଛେନା ବା

ନ ଖାଇଲା କାହିଁକି । ଜାବରେ ନ ପଡ଼ିଲା ବା କେମିତି ! ପୁଣି ସେଇ ଅଲୌକିକ କଥା ତାଙ୍କ ମନକୁ ଛୁଇଁଗଲା ।

କିନ୍ତୁ ସୁନା କହିଲା : ନାଇଁମ ବାପା, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏମିତି ଦେଖାଯାଇଛି ଯେ, ଏ ଜାତିର ମୂଷା ଗୋଇଠା ମାରି ଜନ୍ତାର ଜାବ ପକାଇଦେବା ପରେ ଗିନାରୁ ଖାଦ୍ୟ ଖାଇ ଚାଲିଯାଇଛି । ଏମାନେ ଭାରି ବୁଦ୍ଧିଆ ।

-ତା' ହେଲେ ସେ ଛେନା ଖାଇଲା ନାହିଁ କାହିଁକି ।

ପୁଅ କହିଲା : ସେଇଟା ମୁଁ ବୁଝିପାରୁ ନାହିଁ । ଏତେ ଦିନ ତ ସେ ଛେନା ଖାଉଥିଲା । ଏଇ କେଇଦିନ ହେବ ସେ ଛେନା ଛାଡ଼ି ପିଠା ବଳକା ଖାଉଛି କାହିଁକି ବୁଝିପାରୁନାହିଁ । ବହିରେ ଏ ବିଷୟରେ କିଛି ନାହିଁ ।

ଅନୁପମା ମୁରୁକି ହସି ବିଜୟଙ୍କ ଆଡ଼େ ଚାହିଁ ପିଲାଙ୍କ ଆଖି ଏଡ଼ାଇ ନିଜ ପେଟ ଉପରେ ହାତ ବୁଲାଇ ସଙ୍କେତ ଦ୍ୱାରା ଜଣାଇ ଦେଲେ ଯେ, ମୂଷା ଗର୍ଭବତୀ ହୋଇଚି । କହିଲେ, ଏ ଅବସ୍ଥାରେ ସେ ଖାଲି ଟାଣ ଟାଣ ଜିନିଷ ଖାଇବାକୁ ଭଲପାଇବ । ମୁଁ ଏ ଅବସ୍ଥାରେ ଚୂଲୀମୁଣ୍ଡ ମାଟି ଖାଇଯାଉଥିଲି ଦେଖିନ । ସବୁ ମା ସମାନ ।

ଅନୁପମା କହିବାବେଳେ ତାଙ୍କ ଆଖିରେ ଏକ ଅପୂର୍ବ ଆଭା ଦେଖି ବିଜୟ ଅବାକ୍ ହୋଇଗଲେ । ତାଙ୍କର ମନେହେଲା ଅବସ୍ଥାଟା କ୍ରମେ ଜଟିଳ ହୋଇଯାଉଛି । ସେ ମ୍ଳାନ ଭାବରେ ହସି କହିଲେ : ତା' ହେଲେ ଯେ ମୂଷା ନୁହେଁ, ମୂଷୀ । ଆମ ମୂଷୀ ମା' ହେବାକୁ ଯାଉଛି ତେବେ ।

ତାଙ୍କ ସାହିର ବୁଲା କୁତୀର ମା' ହେବାବେଳର ସବୁ କଥା ତାଙ୍କ ମନେ ପଡ଼ିଗଲା । ସେ ଗର୍ଭବତୀ ହେବାରୁ ଅନୁପମା ତାକୁ ନିଇତି ଖାଇବାକୁ ଦେଉଥିଲେ । ଠିକ୍ ଖାଇବାବେଳକୁ ସେ ଦୁଆର ପାଖରେ ଛିଡ଼ା ହୋଇ କୁଁ କୁଁ ହୋଇ ଡାକ ଛାଡେ । ଅନୁପମା ଭାତ ଥୋଇଦେଇ ଆସନ୍ତି । ଖାଇସାରି ସେ ଚାଲିଯାଏ । ଏମିତି ସେ ନିଜ କୁକୁର ଭଳି ହୋଇଗଲା । ପିଲାଏ ତା ନାଁ ରଖିଲେ କାଳୀ । ପିଲାଏ 'କାଳୀ କାଳୀ' ଡାକିଲେ ସେ ଯେଉଁଠି ଥାଉ ଦୌଡ଼ିଆସି ଗୋଡ଼ତଳେ ଲୋଟିଯାଏ । କିଛିଦିନ ପରେ ତା'ର ଛୁଆ ହେଲେ । ଛୁଆଙ୍କୁ ଘରସାମନା ଗୋଟାଏ ସାନ ପୋଲତଳେ ଲୁଚାଇ ରଖି ସେ ଭିନ୍ନ ଜାଗାରେ ରହେ । ଠିକ୍ ସମୟରେ ଦିନକୁ ପାଞ୍ଚଥର ସେ ପୋଲ ପାଖକୁ ଆସି କୁଁ କୁଁ କରି ଡାକେ । ଛୁଆଗୁଡ଼ିକ ଗୁଲୁଗୁଲୁ ହୋଇ ପୋଲତଳୁ ବାହାରି ଆସି ମା ପହ୍ନାରେ ସିଲାଇ ହୋଇଯିବା ଭଳି ଲାଗିଯାଇ ଚଁ ଚଁ ଦୁଧ ପିଇଯାଆନ୍ତି । କିଛି ସମୟ ପରେ ମା ସେମାନଙ୍କୁ ଠେଲି ପଳାଇଯାଏ । ଛୁଆଏ ଗୁଲୁଗୁଲୁ ହୋଇ ଫେରିଯାଆନ୍ତି ପୋଲତଳକୁ । ଛୁଆଏ ଟିକିଏ ବଡ଼ ହେଲେ । ଅନ୍ୟ ଖାଇବା ପଦାର୍ଥ ଖାଇ ଶିଖିଲେ । ମା ଶିଖାଇଦେଲା । ଏଥର କିନ୍ତୁ ଅନୁପମା ଖାଇବାକୁ ଦେଲେ କାଳୀ ଖାଏନି; ପିଲାଙ୍କୁ ତା'ର ଡାକି ଦିଏ । ପିଲାଏ ତା'ର ଭାତକୁ ବେଢ଼ିଯାଆନ୍ତି । କାଳୀ ଅଳ୍ପ ଦୂରରେ ଜଗି ବସିରହେ ।

ସେ କଥା ମନେ ପଡ଼ିଯିବାରୁ ବିଜୟଙ୍କ ମନେହେଲା ସେ ଯେମିତି ଏକ ମହାସାଗରରେ ପଡ଼ିଯାଇଛନ୍ତି । ଥଳକୂଳ ପାଉନାହାନ୍ତି । ଏତେ ଜୀବ ଅଛନ୍ତି । ସମସ୍ତଙ୍କ କଥା ଭାବିଲେ ତ ନିଜ ରକ୍ଷଣ ଅସମ୍ଭବ । ନିଜ ସ୍ୱାର୍ଥ ଗୋଟାଏ ସ୍ପଷ୍ଟ ନିର୍ଦ୍ଦିଷ୍ଟ ବାଟ ଦେଖାଏ । ସ୍ୱାର୍ଥ ଗୋଟାଏ ବେଶ୍ ଶକ୍ତ ଖୁଣ୍ଟି, ଯାହାକୁ ଜାବୋଡ଼ି ଧରିଲେ ବେଶ୍ ନିଶ୍ଚିତ ନିଶ୍ଚିନ୍ତ ଲାଗେ । ସେ ଖୁଣ୍ଟି ଛାଡ଼ିଲେ ତ ମହାସାଗର । କେଉଁ ସାହସରେ ସେ ମହାସାଗରକୁ ସେ ଝାସ ଦେବେ ଯେ ! କଅଣ ଅଛି ତାଙ୍କ ସମ୍ବଳ ! କେମିତି

ବା ମହାପୁରୁଷମାନେ ସେଇ ମହାସାଗରକୁ ସବୁଠାରୁ ନିଶ୍ଚିନ୍ତ ନିଶ୍ଚିତ ଆନନ୍ଦମୟ ଭାବନ୍ତି କେଜାଣି !

ତହୁଁ ସେ ନିଜ କ୍ରୋଧକୁ ପୁଣି ଜଗାଇଦେଲେ । ...ପୁଅ କହିବା ଅନୁସାରେ ଆଖପାଖରେ ତ ହଜାର ଯାଏଁ ମୂଷା ଅଛନ୍ତି । ସେଥିରୁ ମାଇ ମୂଷା ତ ନିଶ୍ଚେ ଶତକଡ଼ା ନବେ । ପ୍ରତ୍ୟେକ ମୂଷା ଯଦି...ହଇରେ ପୁଅ, ଏ ମୂଷାଙ୍କ ଛୁଆ ଦେବା ଶକ୍ତି କେତେ ବା...

ଟୁନା ଚଟ୍‌କିନା ମୁଖସ୍ଥ କଲାଭଳି କହିଗଲା : ଏମାନେ ବର୍ଷକୁ ପାଞ୍ଚଥର ଗର୍ଭବତୀ ହୁଅନ୍ତି । ପ୍ରତ୍ୟେକଥର ହାରାହାରି ଆଠୋଟି ଛୁଆ ଦିଅନ୍ତି । ମାଇଛୁଆଏ ଛ'ମାସର ହେବା ବେଳକୁ ଗର୍ଭବତୀ ହେବାପାଇଁ ଉପଯୁକ୍ତ ହୋଇଯାଆନ୍ତି ।

ବିଜୟଙ୍କ ଆଖି ଆତଙ୍କରେ ବଡ଼ ବଡ଼ ହୋଇଗଲା । କ୍ରୋଧ ଚରମସୀମା ଛୁଇଁଲା । ନିଃଶ୍ୱାସ ଖର ହେଲା । ଦାନ୍ତମାନ କଡ଼ମଡ଼ ହେଲା । ...ଯେ ମୂଷାର ହ୍ୟାପ ବର୍ଷକେ ହେବେ ଚାଳିଶ ଛୁଆ.. ଆଖପାଖରେ ଅନ୍ତତଃ ନଅଶହ ମୂଷୀ... ଏମାନେ ବର୍ଷକେ ଦେବେ ନଅଶହ ଗୁଣିତକ ଚାଳିଶ ସମାନ...ସମାନ...ଚାଳିଶ ଶୂନେ ଶୂନ୍ ଚାଳିଶ ଶୂନେ ଶୂନ୍... ଚାଳିଶ ନଉକେ ଛତିଶ... ଛତିଶ କଅଣ ବା, ତିନିଶହ ଷାଠିଏ...ଆଗରୁ କେଇଟା ଶୂନ ଥିଲା ବା -ଧ୍ୟେତତେରି... ହେ ଏ ଆଣିବୁଟି ଖଣ୍ଡେ କାଗଜ ଆଉ କଲମ...ଛ୍ୟା ଛ୍ୟା ...ମୁହଁରେ ମୁହଁରେ ଅଙ୍କଟା ହୋଇଗଲେ କଅଣ ବା କ୍ଷତି ହୁଅନ୍ତା, ଭଗବାନ ଆପଣଙ୍କର... କିଛି କଅଣ ସହଜରେ ପାଇବି ନାହିଁ ମୁଁ... ଏମିତି ନିୟମ ଯେ ସାମାନ୍ୟ କଥାପାଇଁ ପରିଶ୍ରମ... ମୋରି ବେଳକୁ ସବୁ ନିୟମ କଡ଼ାକଡ଼ି-ମୋତେ ଗରିବ ପାଇଲେ ବୋଲି ନା କଅଣ... ଏମିତି କଅଣ କାମ କରାନ୍ତି...

ଟୁନା କହିଲା, ବର୍ଷକେ ହେବେ ଛତିଶ ହଜାର ଛୁଆ ।

ଛତିଶହଜାର ...ଛ...ତି...ଶ.. ହଜାର । ଏମାନେ ପୁଣି ମାତ୍ର ଛ'ମାସରେ ଗର୍ଭବତୀ ହେବେ । ଛତିଶହଜାର ଗୁଣିତକ ଚାଳିଶ...

ଅଙ୍କଟା ମନରେ ମନରେ କଷିବାକୁ ଆତଙ୍କିତ ହେଲେ ମଧ ଗୁଣଫଳର ସଂଖ୍ୟା ଅନୁମାନ କରି ସେ ଶିହରି ଉଠିଲେ ଆତଙ୍କରେ । ...ଏମାନେ ଯେ ହଜାର କୋଟି ଟଙ୍କାର ଆହାର ଆମ ମୁହଁରୁ ପ୍ରତିବର୍ଷ ଛଡ଼ାଇ ନେଉଛନ୍ତି ଏଥିରେ ଆଉ ସନ୍ଦେହ କଅଣ...ଆହା, କେତେ ପରିଶ୍ରମ କରି ଆମେ ଉତ୍ପାଦନ କରୁଛୁ, ଆଉ ଏମାନେ ମାଗଣା ମାଗଣା ମାରି ନେଉଛନ୍ତି...ମୋ ରୋଗୀଣା ପୁଅର ଛେନାଟିକକ ବି ଖାଇଯାଉଛି... ଏମାନଙ୍କୁ ଦୟାମାୟା ନାହିଁ-ପୃଥିବୀଯାକ ଅଭିଯାନ ଚାଲିଛି ଏଙ୍କ ବିରୁଦ୍ଧରେ...ମୁଁ କାହିଁକି ସେଥିରେ ସହଯୋଗ ନ କରି ଅଖଣ୍ଡ ଜୀବନ ପ୍ରବାହ କଥା ଭାବୁଛି ବସି...

ସେ ଦାନ୍ତ କଡ଼ମଡ଼ କରି ଘୋଷଣା କଲେ, ଯଦି ଜନ୍ତାରେ ନ ମଲା ତେବେ ବିଷଦେଇ ମାରିବି । ମୁଁ ଆଜି କିଣି ଆଣିବି ସବୁଠୁ କଡ଼ା ମୂଷାମରା ବିଷ ।

ବିଷ କିଣାହେଲା । ରାତିରେ ଦୁଇଖଣ୍ଡ ଟାଣ ଟାଣ ପିଠା ବକଳରେ ବିଷ ମାଖି ରଖି ଦିଆଗଲା । ପରଦିନ ସକାଳେ କିନ୍ତୁ ଦେଖାଗଲା ବିଷମଖା ପିଠା ସେମିତି ରହିଚି । ମୂଷୀ ପିଠା ପାଛିଆରୁ ଅନ୍ୟ ପିଠାର ବକଳ ଖାଇଚି । ସୁନା କହିଲା : ମୁଁ କହୁ ନ ଥିଲି ବାପା, ଏମାନେ ଭାରି ବୁଦ୍ଧିଆ । କେଉଁ ଘରର କେଉଁ ଖାଦ୍ୟର କି ପ୍ରକାର ଗନ୍ଧ ଏମାନେ ଜାଣି ରଖନ୍ତି ପ୍ରଥମେ । ଟିକିଏ ଭିନ୍ନ ପ୍ରକାର ଗନ୍ଧ ବାରିଲେ ଛୁଇଁବେ ନାହିଁ ପରା ।

ବିଜୟଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ...ଗୋଟାଏ ମୂଷୀ ଦେଖ ଯେ ନୟାନ୍ତ କରି ସାରିଲାଣି

ଆମକୁ । ଯାହା ବା ପିଠା ଖାଇଥିଲା ବର୍ତ୍ତମାନ ଝିଅର ଦାମିକା ଶାଢ଼ୀ ଦି'ଟା, ଅନୁପମାର ଠାକୁରାଣୀଙ୍କ ସିନ୍ଦୂରରେ ତିଆରି ଆଖି, ଚମଡ଼ା ସୁଟ୍‌କେସ କାଟି ନାରଖାର୍ କରି ସାରିଲାଣି । ଅନୁପମା କହୁଚି କଅଣ ନା, ଏ ଅବସ୍ଥାରେ ସେମିତି ହେବ । ମାରିବି ମାରିବି ମାରିବି ।

ସେଇଠୁ ବିଜୟ ପ୍ରଥମେ ତନଖି ଦେଖିଲେ କେଉଁବାଟେ ମୂଷୀ ଘର ଭିତରକୁ ପଶୁଛି । ଦେଖିଲେ ରୋଷେଇଘରର କାଠଗଦା ତଳେ କାନ୍ଥସନ୍ଧିକୁ ତିନୋଟି ଗାତ । 'ମିତ୍ରଲାଭ' ଗଳ୍ପରେ ହିରଣ୍ୟକ ନାମ ମୂଷିକରାଜ କଥା ପଢ଼ିବା ବେଳେ ମୂଷାର ବୁଦ୍ଧି ଦେଖି ତାଙ୍କୁ ଭାରି ଆମୋଦ ଲାଗିଥିଲା ଯେ, ମୂଷା ଭୂଇଁତଳୁ ଉପରକୁ ଶହେଟି ଦ୍ୱାର ଫୁଟାଇଥାଏ, ଯେମିତିକି ଶତ୍ରୁ ଗୋଟେବାଟେ ପଶିଲେ ସେ ଅନ୍ୟ ବାଟରେ ପଳାଇବ ଆଉ ଶତ୍ରୁବି ଗୋଲକଧନ୍ଦାରେ ପଡ଼ି ଛଟପଟ ହେବ । ବର୍ତ୍ତମାନ କିନ୍ତୁ ନିଜ ଘରେ ସେ କଥା ଦେଖି ତାଙ୍କ ବ୍ରହ୍ମ ଜଳିଗଲା । ସେଦିନ ସେ କଚେରୀରୁ ଛୁଟି ନେଇ ଦିନଯାକ ଲାଗି ସେ ଗାଡ଼ମାନଙ୍କରେ ବିଷ ଦେଇ ଇଟାଗୋଡ଼ି ଦ୍ୱାରା ଭଲକରି ରୁନ୍ଧିଦେଲେ । ରାତିରେ ଅନ୍ୟ ସବୁ ନଳା ବି ବନ୍ଦ କରି ଦିଆହେଲା । ତଥାପି ରାତିରେ ଖଡ଼ ଖଡ଼ ଶବ୍ଦ ଶୁଣି ଯାଇ ଦଉଡ଼ି ଦେଖନ୍ତି ତ ମୂଷୀ ପାଇଖାନାର ବେସିନ୍ କଣାବାଟେ ପଳାଇଲା । ପଳାଇଲାବେଳେ ବୁଲି ପଡ଼ି ମୁହଁକୁ ଟିକେ ବାହାର କରି ବିଜୟଙ୍କ ଆଡ଼େ ନାକ ଫୁଲାଇ କିଛିକ୍ଷଣ ଚାହିଁ ଉଭାନ ହୋଇଗଲା ।

ପରଦିନ କଚେରୀରୁ ଫେରିବା ବାଟରେ ବିଜୟ ଜଣେ ବନ୍ଧୁଙ୍କ ଘରୁ ଗୋଟିଏ ପୋଷା ବିଲେଇ ଆଣିଲେ । ବର୍ଣ୍ଣବୋଧର 'ଆଇଲାଣି ବିଲେଇ, ମୂଷାଯିବ ପଳାଇ'କୁ ସେ ବେଦବାକ୍ୟ ଭଳି ଧରିନେଇଥିଲେ । କିନ୍ତୁ ରାତିରେ ଯାହା ଦେଖିଲେ, ସେ ସ୍ତମ୍ଭୀଭୂତ ହୋଇଗଲେ । ଦେଖିଲେ, ରୋଷେଇଘରେ ଥାକ ଉପରେ ଚଢ଼ି ବିଲେଇ ଛେନା ଖାଉଚି -ଆଉ କିଛି ଦୂରରେ ମୂଷୀ ବସି ପିଠା ଖାଉଛି । ଦିହେଁ ପରସ୍ପରକୁ ମଝିରେ ମଝିରେ ଅନାଉଛନ୍ତି । ଠିକ୍ ଯେମିତି ଖାଉ ଖାଉ ଦୁଃଖସୁଖ ହେଉଛନ୍ତି । କିମାଶ୍ଚର୍ଯ୍ୟମ୍ ଅତଃପରମ୍ ।

କୁନା ଶୁଣି କହିଲା : ବାପା, ବାଘ, ସିଂହ, ବିଲେଇ ଆଦି ଜନ୍ତୁରୁ ଶିକାରୀ ନ ଥାନ୍ତି । ଛୁଆଙ୍କୁ ମା' ଶିକାର ନ ଶିଖାଇଲେ ସେମାନେ ଶିକାର କରି ପାରନ୍ତି ନାହିଁ । ପୋଷା ବିଲେଇ ତେଣୁ ଶିକାର କରିପାରନ୍ତି ନାହିଁ । ଜାଣନ୍ତି ନାହିଁ ଯେ ମୂଷା ତାଙ୍କ ଖାଦ୍ୟ ।

ବିଜୟ ଅଭିଭୂତ ହେଲେ । କି ବିଚିତ୍ର ଏ ମା ରୂପିଣୀ ପ୍ରକୃତି । କାଳୀ କୁତୀ କଥା ତାଙ୍କର ମନେପଡ଼ିଗଲା । କିଛିଦିନ ତଳେ ତା'ର ଏକ ବିଚିତ୍ର କଥା ଦେଖି ଘୃଣାରେ ଶିହରି ଉଠିଥିଲେ । କାଳୀ ତା'ର ବର୍ଷକର ପୁଅକୁ ରମଣ କରିବାକୁ ଉତ୍ତେଜିତ କରୁଚି । କିନ୍ତୁ ପୁଅ କାଳୀ ଉପରକୁ ଉଠିବାମାତ୍ରେ କାଳୀ ପଳାଇଲା । କି ଭୟଙ୍କର ଏ ପ୍ରକୃତି । କି ଭୟଙ୍କର । ବିଜୟଙ୍କ ମନେ ପଡ଼ିଗଲା ଶ୍ରୀରାମକୃଷ୍ଣ ଦେଖିଥିବା ଏକ ସାକ୍ଷାତ ଦୃଶ୍ୟ ବା ଭିଜନ୍ । ଦିନେ ସନ୍ଧ୍ୟାବେଳେ ସେ ଗଙ୍ଗାକୂଳରେ ବୁଲୁଥାନ୍ତି । ଦେଖିଲେ, ଗଙ୍ଗା ଭିତରୁ ଗୋଟିଏ ଅତି ସୁନ୍ଦରୀ ଯୁବତୀ ସ୍ତ୍ରୀ କୂଳକୁ ଉଠି ଆସିଲା । ତା କୋଳରେ ଗୋଟିଏ ଦେବୋପମ ଗୁଲୁଗୁଲିଆ ଶିଶୁ । କିଛିକ୍ଷଣ ଧରି ସେ ଯୁବତୀଟି ତା' ଛୁଆଟିକୁ ଅନେକ ଗେହ୍ଲା କଲା । ତା'ପରେ ଅଣ୍ଟାରୁ ଗୋଟାଏ ଛୁରା ବାହାର କରି ଶିଶୁଟିର ଛାତିରେ ଭୁଷିଦେଇ ଶିଶୁକୁ ଗଙ୍ଗାରେ ପକାଇ ଦେଲା ନିର୍ବିକାର ଭାବରେ ଓ ଖିଲିଖିଲି ହସି ଚାଲିଗଲା ପୁଣି ଗଙ୍ଗା ଭିତରକୁ ।

ବିଜୟ ମନେ ମନେ ଆବୃତ୍ତି କଲେ ରବୀନ୍ଦ୍ରନାଥଙ୍କ କବିତା, ତୁମର ବିସ୍ତୀର୍ଣ୍ଣ ପଥ ରଖିଛ ଆକୀର୍ଣ୍ଣ କରି ବିଚିତ୍ର ଛଳନା ଜାଲେ ହେ ଛଳନାମୟୀ ! ବିଜୟଙ୍କ ମନ ହତାଶାମିଶ୍ରିତ ଉଦାସ ଭାବରେ

ଭରିଗଲା । ମୂଷାକୁ ମାରିବା ସଂକଳ୍ପ ସେ ତ୍ୟାଗ କଲେ । ବିଲେଇ ଫେରାଇ ଦେଲେ । ସ୍ଥିର କଲେ, ଗୋଟାଏ ଜାଲି ଆଲମାରି କିଣି ଆଣିବେ ଆଜି, ଆଉ ସେଥିରେ ସବୁ ଖାଇବା ଜିନିଷ ରଖାଯିବ । ସମସ୍ତଙ୍କୁ ନିର୍ଦ୍ଦେଶ ଦେଲେ ଯେ ମୂଷୀ ଛୁଆ ଦେବା ପର୍ଯ୍ୟନ୍ତ ସମସ୍ତେ ସବୁ ପଦାର୍ଥ ସାବଧାନରେ ରଖିବେ ।

ସାନପୁଅ କୁନା ତା'ପରେ ଦିନେ ଦୌଡ଼ି ଆସି କହିଲା : ବାପା, ଚଞ୍ଚଳୀ ଛୁଆ ଦେଇ ସାରିଲାଣି ।

ବିଜୟ ଆଶ୍ଚର୍ଯ୍ୟ ହୋଇ ପଚାରିଲେ : ଚଞ୍ଚଳୀ ପୁଣି କିଏରେ ?

କୁନା କହିଲା : ଆମ ମୂଷା ନାଁ ମୁଁ ଦେଇଛି ଚଞ୍ଚଳୀ ।

ମୂଷୀକୁ ମାରିବାକୁ ଯାଇ ତା ବିଷୟରେ, ମୂଷା ଜାତି ବିଷୟରେ ପୁଣି ନାନା କଥା ବିଷୟରେ ଏତେ କଥା ଜାଣି ସାରିଲେଣି ଯେ ମୂଷୀ ଉପରେ ଅଜାଣତରେ ସମସ୍ତଙ୍କର ଗୋଟାଏ ମାୟା ଲାଗିସାରିଥାଏ । ସେଥିରେ ପୁଣି ତା'ର ଗୋଟାଏ ନାମକରଣ ହେଲାପରେ ସମସ୍ତେ ଅନୁଭବ କଲେ, ସେ ଯେମିତି ଏ ପରିବାରର ଜଣେ । ବିଜୟ ଆଗ୍ରହରେ ପଚାରିଲେ : କଉଠି ଛୁଆ ଦେଇଛିରେ ।

କୁନା କହିଲା : ଆପଣଙ୍କ ଯେଉଁ ଛିଣ୍ଡା କୋଟ୍‌ଟା ଅଲଗୁଣିରେ ଟଙ୍ଗା ହୋଇ ରହିଥାଏ ନା, ତା'ରି ପାକିଟିରେ । ଗୋଟାଏ ଚେଁ ଚେଁ ଶବ୍ଦ ଶୁଣି ଖୋଜୁ ଖୋଜୁ ଦେଖିଲି ଯେ ସେ ପାକିଟିରେ ନାଲି ଗୁଲୁ ଗୁଲୁ ସାତୋଟି ଛୁଆ ।

ସମସ୍ତେ ଦୌଡ଼ିଯାଇ ଦେଖିଲେ ସେ ଦୃଶ୍ୟ । ସେଇଠୁ ଠିକ୍ ହେଲା ଯେ, ଚଞ୍ଚଳୀ ରାତିରେ ଆସିଲେ ତା' ଛୁଆ ପାଖକୁ ତ ନିଶ୍ଚୟ ଯିବ, ସେତିକିବେଳେ ତାକୁ ପାକିଟି ଭିତରେ ଚାପିଧରି ଛୁଆ ସହିତ ଗୋଟେ ପିଞ୍ଜରାରେ ରଖାଯିବ । ଗୋଟେ ପିଞ୍ଜରା ବି କିଣା ହୋଇ ଆସିଲା ।

ସେ ରାତିରେ ଗାଧୋଇବା ଘରଭିତରୁ ଗୋଟାଏ ଭୟଙ୍କର ସଁ ସଁ ଶବ୍ଦ ଶୁଣି ବିଜୟ ଯାଇ ଦେଖନ୍ତି ତ ଘରେ ଗୋଟାଏ ଡମଣା ସାପ ମୁଣ୍ଡ ଟେକି ଗର୍ଜନ କରୁଛି । ଆଉ ଚଞ୍ଚଳୀ ତା' ସାମନାରେ ସ୍ଥିର ହୋଇ ବସି ଥରୁଛି । ବେଶ୍ ଲମ୍ବା ସାପଟାଏ । ତା' ଦେହର ରଙ୍ଗବେରଙ୍ଗର ସୁନ୍ଦର ଚିତ୍ରଣ ତାକୁ ଯେମିତି ଆହୁରି ଭୟଙ୍କର କରିଦେଉଥାଏ । ଆଲୁଅରେ ସେ ଚିତ୍ରାଙ୍କନ ଚକ୍‌ଚକ୍ ଦିଶୁଥାଏ । ସାପଟା ଧୀରେ ଧୀରେ ତା ଦେହଟାକୁ ତରଙ୍ଗାୟିତ କରୁଥାଏ । ମନେ ହେଉଥାଏ ଯେମିତି ଉଲ୍ଲାସରେ ଫୁଲି ଫୁଲି ଉଠିଚି । ମଝିରେ ମଝିରେ ତା'ର ଦି' ଫାଳିଆ ଜିଭଟାକୁ ସେ ଲହ ଲହ କରୁଥାଏ । ସ୍ଥିର ଦୃଷ୍ଟିରେ ସେ ଚାହିଁଥାଏ ମୂଷୀଆଡ଼େ । ମନେ ମନେ ସେ ଯେମିତି ଭଗବାନଙ୍କୁ ଜଣାଉ ଥାଏ, ଧନ୍ୟ ବିଧାତା ଅଟୁ ତୁହି, ତୋ ବିନୁ ଅନ୍ୟ ଆଶ୍ରା ନାହିଁ । ତିନିଦିନର ଉପାସକୁ, ଆହାର ଦେଲୁ ଯେ ଆମ୍ଭକୁ ।

ପିଲାଏ ହୁମ୍‌ହୁମ୍ ହେଉଥାନ୍ତି ସାପଟାକୁ ମାରିଦେବାକୁ; କିନ୍ତୁ ତା' ପାଖକୁ ଯିବାକୁ କେହି ସାହସ କରୁ ନ'ଥାନ୍ତି । ସେମାନେ ବିଜୟକୁ ଅଥୟ କରୁଥାନ୍ତି ସାପଟାକୁ ବାଡ଼େଇ ମାରିଦେବାକୁ । କିନ୍ତୁ ସାନପୁଅ ଆଖିରେ ପାଣି ।

ବିଜୟ ସ୍ତମ୍ଭୀଭୂତ ହୋଇ ଭାବୁଥାନ୍ତି, କଅଣ କରିବେ । ମହାଭାରତର ଗୋଟିଏ ଗଳ୍ପ ତାଙ୍କୁ ଆଲୋଡ଼ିତ କରୁଥାଏ । ଦୁଇଜଣ ମହାତପା ଯୋଗୀ ଥିଲେ । ତାଙ୍କର ତପ-ପ୍ରଭାବ ଏଡ଼େ ପ୍ରଖର ଯେ ଗାଧୋଇ ଆସି ସେମାନେ ଓଦା ଲୁଗା ଶୂନ୍ୟରେ ଟାଙ୍ଗି ଦେଉଥିଲେ ଶୁଖିବାପାଇଁ । ଲୁଗା

ପଡ଼ିଯାଉ ନ ଥିଲା । ଦିନେ ସେମାନେ ସେମିତି ଶୁଖାଇ ତପସ୍ୟା କରିବାକୁ ବସିଛନ୍ତି, ଦେଖିଲେ ତାଙ୍କ ସାମନାରେ ଗୋଟିଏ ବିଲେଇ ଗୋଟିଏ ମୂଷାକୁ ମାଡ଼ି ବସିଲା । ପ୍ରଥମ ଯୋଗୀଟି ଏଥିରେ ବ୍ୟଥିତ ହୋଇ ବିଲେଇ ପାଖରୁ ମୂଷାକୁ ମୁକୁଳାଇ ଦେଲା । ସେ କାର୍ଯ୍ୟରେ ତାଙ୍କ ତପପ୍ରଭାବ ନଷ୍ଟ ହୋଇଯିବାରୁ ଶୂନ୍ୟରେ ଟଙ୍ଗା ହୋଇଥିବା ତାଙ୍କ ଲୁଗା ଖସି ତଳେ ପଡ଼ିଗଲା । ଅନ୍ୟ ଯୋଗୀଟି ଭାବିଲା, ବିଲେଇଟିକୁ ତାର ପ୍ରକୃତିଦତ୍ତ ଖାଦ୍ୟରୁ ବଞ୍ଚିତ କରିବା ଅନ୍ୟାୟ ହେଲା । ତେଣୁ ସେ ମୂଷାଟିକୁ ଆଣି ପୁଣି ବିଲେଇ ପାଖରେ ଛାଡ଼ି ଦେବାରୁ ବିଲେଇ ମାଡ଼ିବସିଲା । କିନ୍ତୁ ତା ଲୁଗା ବି ଖସି ପଡ଼ିଲା ।

କଅଣ କରିବେ ଭାବୁ ଭାବୁ ସାପଟା ଖଟ୍‌କିନା ମୂଷାକୁ ଧରି ପଳାଇଲା । ତା'ର ଦେହ ଏଥର ମହାଉଲ୍ଲାସରେ ଶୀଘ୍ର ଶୀଘ୍ର ତରଙ୍ଗାୟିତ ହେବାକୁ ଲାଗିଲା । ସାପ ପାଟିଭିତରୁ ମୂଷାର କରୁଣ ଆର୍ତ୍ତନାଦ ଶୁଭୁଥାଏ । ସତେ ଯେମିତି ସେ କହୁଥାଏ-ଚାଲିଲି ମୁଁ, ମୋ ଛୁଆଏ ତମମାନଙ୍କୁ ଲାଗିଲେ ।

ସାପଟା ଚଟକିନା ବୁଲିପଡ଼ି ନଳାବାଟେ ପଳାଇଲା । ସମସ୍ତଙ୍କ ଆଖି ଛଳ ଛଳ ହୋଇଗଲା । ସାନପୁଅ ତା ମା କୋଳରେ ମୁହଁ ଗୁଞ୍ଜି କଇଁ କଇଁ ହୋଇ କାନ୍ଦି ଉଠିଲା । ସମସ୍ତେ ସମସ୍ତଙ୍କ ଦେହରେ ହାତ ବୁଲାଇ ପ୍ରବୋଧ ଦେବାକୁ ଲାଗିଲେ । ଅନୁପମା ଆଖି ପୋଛି କହିଲେ : ହଅ, ଦୁନିଆତ ଏଇୟା ।

ବିଜୟ ଦୀର୍ଘନିଶ୍ୱାସ ପକାଇ ଆଖି ପୋଛି କହିଲେ : 'କାଳସର୍ପ ଆପଣ କବଳ କର ପ୍ରାଣ' କିନ୍ତୁ ସେ ଚମକିତ ହୋଇ ଦେଖିଲେ ଯେ ତା ସହିତ ଶତ୍ରୁନାଶର ତୃପ୍ତି ବି ମିଶିଛି । ଯାଃ, ହ୍ୟାପ୍ ଗଲା ଏତେ ଦିନକେ ।

କୁନା ସେ ଛୁଆ ସାତୋଟିକୁ ଗୋଟିଏ କାଗଜ ବାକ୍‌ସରେ ତୁଳା ଗଦିରେ ରଖିଲା । କିଛିଦିନ ପରେ ଛୁଆଗୁଡ଼ିକ ବି ଯେତେବେଳେ ମରିଗଲେ, ବିଜୟଙ୍କୁ ଦୁଃଖଠୁଁ ଛୁଆଙ୍କୁ ପାଳିବାର ଦାୟିତ୍ୱରୁ ମୁକ୍ତିର ତୃପ୍ତିଟା ବେଶ ସୁଖ୍ ଲାଗିଲା । ସେ ତୃପ୍ତିଟା ପୁଣି ହୀନ ଲାଗିବାରୁ ଅନୁଶୋଚନା ହେଲା । ପୁଣି ଅନୁଶୋଚନା ଅଯଥା ଦୁର୍ବଳତା ବୋଲି ଭାବିବାରୁ ତା ବିରୁଦ୍ଧରେ ବିଦ୍ରୋହ ଜାତ ହେଲା । ମଝିରେ ପୁଣି ଗୋଟାଏ ଅଜଣା କୋହ ଠେଲି ଉଠିବାକୁ ଚେଷ୍ଟା କରୁଥାଏ ।

ବିଜୟ ମୁଣ୍ଡରେ ହାତଦେଇ କହିଲେ, ଉଃ, କି ଜଟିଳ ଏ ଜୀବନ । ଆଉ କି ବୈଚିତ୍ର୍ୟମୟ ଏ ଜଟିଳତା । କ୍ଷଣେ କ୍ଷଣେ ବିଚିତ୍ର । ବାହାରର ଯେତେ ଅସଂଖ୍ୟ କଥା, ପୁଣି ଭିତରର ଯେତେ ଅସଂଖ୍ୟ କଥା, କାହାରି ସହିତ କାହାରି ସମ୍ପର୍କ ନାହିଁ, ସବୁ ଗୋଳେଇ ପୋଳେଇ ଘଣ୍ଟାଘଣ୍ଟି ହୋଇ ସମ୍ପର୍କିତ ହେଉଛନ୍ତି ନିଜ ନିଜ ଅହଂ ଅନୁସାରେ । ଅହଂ ତାକୁ ସବୁ ବୋହିଚାଲିଛି... ଚାଲିଛି... ସେ ଗୁରୁଭାରକୁ ଫୋପାଡ଼ି ଦେଇ ଆଉ କଅଣ ପାଇବାକୁ ପୁଣି ଲୋଡ଼ୁଚି... କି ଅଲୌକିକ କାଣ୍ଡରେ ବାବା.... !

# ପକ୍ଷାଘାତ

ଦୁର୍ଯ୍ୟୋଧନ ବାବୁ ବର୍ତ୍ତମାନ ସବୁବେଳେ ବାହାର ବାରନ୍ଦାରେ ପଡ଼ିଥିବା ଖଟଉପରେ କାନ୍ଥକୁ ଡ଼େରି ହୋଇ ପଡ଼ିଥାଆନ୍ତି । ପିଠିଆଡ଼େ ତାଙ୍କର ଗୋଟାଏ ତେଲଚିକିଟା ଛିଣ୍ଡା ତକିଆ । ବଲ ବଲ କରି ଆକାଶକୁ ଚାହିଁ ସେ ପାନ ପାକୁଳି କରୁଥାଆନ୍ତି । କଥା କହିବାର ଶକ୍ତି ନାହିଁ, କି ଉଠିବାର ମଧ ଶକ୍ତି ନାହିଁ । ପକ୍ଷାଘାତ-ରୋଗୀ ସେ । କେତେବେଳେ କାହାର ଇଚ୍ଛା ହେଲେ ଖଣ୍ଡେ ପାନ ଦେଇଯାଏ, ତକିଆଟାକୁ ସଜାଡ଼ିଦେଇ ଯାଏ ବା କଅଣ ଟିକିଏ କରିଦେଇଯାଏ । ଘରର ସମସ୍ତେ ତାଙ୍କ ଉପରେ ବର୍ତ୍ତମାନ ବିରକ୍ତ । ତାଙ୍କ ପରିବାରର ଅନ୍ୟମାନଙ୍କ ସହତ କ୍ଷୀଣ ଦୈହିକ ସଂଯୋଗ ଥିଲେହେଁ, ମାନସିକ ସଂଯୋଗ ଆଦୌ ନାହିଁ । ଏ ଯୁଗର ହଠାତ୍ ଧନୀ ଓ ପାଶ୍ଚାତ୍ୟ ସଭ୍ୟତାର ପୂଜାରୀ-ପରିବାର ଘରେ କୌଳିକ ଦେବତାର ଅବସ୍ଥା ଯେପରି ବହିଷ୍କୃତ ନୁହେଁ, ପରିତ୍ୟକ୍ତ ।

ପଞ୍ଚାବନ ବର୍ଷ ବୟସରେ ପେନ୍‌ସନ୍ ନେବାର ଠିକ୍ ତିନିଦିନ ପରେ ଏ ଅବସ୍ଥା ତାଙ୍କର ଘଟିଲା । ଦୀର୍ଘ ତିରିଶ ବର୍ଷ ଧରି ସେ ଚାକିରି କରି ପେନ୍‌ସନ ନେଲେ । ଚାକିରି ତାଙ୍କର ଆରମ୍ଭ ଖୁବ୍ ତଳରୁ, କିନ୍ତୁ ଶେଷ ଯେତେବେଳେ କଲେ, ସେତେବେଳେ ଥିଲେ ସେ ଅତି ଉଚ୍ଚ ଆସନରେ । କ୍ଷମତା, ପ୍ରତିପତ୍ତି, ସମ୍ମାନ ଓ ଅର୍ଥ ସେ ଚାକିରୀ ଜୀବନରେ ପାଇଥିଲେ ପ୍ରଚୁର । ତଥାପି ପେନ୍‌ସନ ଯେତେବେଳେ ନେଲେ, ସେତେବେଳେ ସେ କାନ୍ଦି ପକାଇଲେ । ପେନ୍‌ସନ ନେବା ପରମୁହୂର୍ତ୍ତଠାରୁ ତାଙ୍କ ସହିତ ଅଇଣ୍ଠୁ ସାହୁ ବା ନିଧି ମଲିକର ଯେପରି କୌଣସି ପ୍ରଭେଦ ନାହିଁ, ଏହିପରି ତାଙ୍କର ମନେହେଲା । ଯେଉଁ କଚେରିରେ ସେ ବର୍ଷ ବର୍ଷ ଧରି ହାକିମି କରି ଆସିଛନ୍ତି, ସଲାମ ପାଇଆସିଛନ୍ତି, ଆଜି ସେ କଚେରିକୁ ଗଲାବେଳେ କେହି ଟିକିଏ ଉଠି ଛିଡ଼ାହେଲେନାହିଁ, ତାଙ୍କ ଆଡ଼କୁ ଫେରି ଚାହିଁଲେ ବି ନାହିଁ । ଅଥଚ କେହି କେହି ଜାଣିଶୁଣି ତାଙ୍କୁ ଅସମ୍ମାନ ଦେଖାଇବା ଉଦ୍ଦେଶ୍ୟରେ ହତାଦର କଲେ ତା ନୁହଁ, ତାଙ୍କର ସମ୍ମାନ ଥିଲା ଏକାନ୍ତ ଭାବରେ ପଦବୀ ସହିତ ଜଡ଼ିତ । ତା ବାହାରେ ମଧ ପରିଚୟ କିଛି ନ ଥିଲା । ଆଜି ସେ ପଦବୀ ଯିବା ପରେ କେବଳ ମାତ୍ର ଜଣେ ସାଧାରଣ ନାଗରିକ । କଚେରିରେ ଅହେତୁକ ଘୂରି ଘୂରି ସେ ଘରକୁ ଫେରିଲେ, ମନ ତାଙ୍କର ବ୍ୟାକୁଳ ହୋଇ ଉଠିଲା, ହାହାକାର କରି ଉଠିଲା । ''ମୁଁ ତେବେ କିଏ ବର୍ତ୍ତମାନ ? କଅଣ ନିଜର ପରିଚୟ ବର୍ତ୍ତମାନ ? ମୋର ସମସ୍ତ ପରିଚୟ ମଧ ଅତୀତ, ଅବସର ପ୍ରାପ୍ତ ?'' ବ୍ୟାକୁଳ ଭାବରେ ସେ ପ୍ରଶ୍ନ କରି ବିଛଣା ଉପରେ ପଡ଼ିରହି ଚାରିଆଡ଼େ ଚାହିଁ ଆଖି ତାଙ୍କର ଛଳ ଛଳ ହୋଇଗଲା । କିଏ ଡାକିଲାପରି ସ୍ୱର, ତାଙ୍କର ସେଇ ପୂର୍ବ ପରିଚିତ ଡାକରେ, ସାହେବ ଆଦିମ୍ ସଲାମ୍ ଦିଆ ହେ । ସେ ଧଡ଼ପଡ଼ କରି ଉଠିଲେ, କେହି ନାହିଁ । ସେତେବେଳେ ତାଙ୍କର ମନେହେଲା ଅବସରପ୍ରାପ୍ତ ଜଣେ କର୍ମଚାରୀ । ଅବଶ୍ୟ କେହି ନାହିଁ

ତାଙ୍କ ସହିତ, ଆଉ କେହି ଆସିବେ ନାହିଁ ଦେଖା କରିବାକୁ, ସଲାମ ଦେବାକୁ । ସେ ପଡ଼ି ରହିଲେ ବିଛଣାରେ ।

ଦୁଇ ଦିନ ଭିତରେ ସେ କଳାକାଠ ପଡ଼ି ଶୁଖିଗଲେ । ତୃତୀୟ ଦିନ ଖରାବେଳେ ସେ ବାହାରକୁ ଯିବାବେଳେ ଗୋଡ଼ ଖସିଯିବାରୁ ପଡ଼ିଗଲେ । ଉଠିବାକୁ ଚେଷ୍ଟାକଲେ । ଗୋଡ଼ରେ ଶକ୍ତି ନାହିଁ । ପାଟିକରି ଡାକିବାକୁ ଚେଷ୍ଟା କଲେ, କିନ୍ତୁ ପାଟି ଖୋଲିଲା ନାହିଁ । ବୁଝିପାରିଲେ ଯେ ହଠାତ୍ ପକ୍ଷାଘାତ ତାଙ୍କୁ ଆକ୍ରମଣ କଲା । ଦୁଇ ଓଠ ତାଙ୍କର ଥରି ଉଠିଲା, ଆଖିରୁ ତାଙ୍କର ଝର ଝର ହୋଇ ଲୁହ ବୋହି ଛାତି ଭସାଇଦେଲା । ସରକାର ତାଙ୍କର ସବୁ ଶୋଷି ନେଇଚି ଦୀର୍ଘ ତିରିଶ ବର୍ଷ ଖଟାଇ ଖଟାଇ । ଏକଦମ୍ କାଙ୍ଗାଳ କରିଦେଇଚି । ଯିଏ ଦିନେ ମାସକୁ ପାଞ୍ଚ ହଜାର ଟଙ୍କା ପାଉଥିଲେ, ସେ ଆଜି ଦି-କଡ଼ାର ବି ନୁହନ୍ତି ।

ଘରେ ତାଙ୍କର ସେତେବେଳେ କେହି ନ ଥାନ୍ତି । ସ୍ତ୍ରୀ ତାଙ୍କର ଦ୍ୱିତୀୟ ପକ୍ଷର-ବୟସର ତଫାତ୍ ପନ୍ଦର ବର୍ଷ । ବିବାହବେଳେ ସେ ଥିଲେ ଅତି ଲଜ୍ଜାବତୀ, ମଫସଲି ଢଙ୍ଗର । ଏକା ଖଟରେ ଶୋଇବାବେଳେ ବି ସେ ପଡ଼ି ରହୁଥିଲେ ନିସ୍ପୃହଭାବରେ, ଖଣ୍ଡେ କାଠଭଳି । ଦୁର୍ଯ୍ୟୋଧନ ବାବୁହିଁ ତାଙ୍କୁ ନବ୍ୟା କହିଲେ, ଦେହ ଓ ମନରେ । ଆଜିକାଲି ସେ ଖୁବ୍ ଅଳ୍ପ ସମୟ ପାଇଁ ଘରେ ରହନ୍ତି । ମଟର ନେଇ ସବୁବେଳେ ବୁଲୁଥାନ୍ତି ଏଠି ସେଠି ଏବଂ ଅନେକ ରାତିରେ ଯେତେବେଳେ ସେ ଶୁଅନ୍ତି, ସେତେବେଳେ ଅନେକ ମିଛ ଓ ସତ କଥା ବାବୁଙ୍କ ଘର ଭିତରକୁ ପଶିଆସେ । କିଏ କହିଛନ୍ତି, ମୋପାଁସା ବୋଧହୁଏ, ନାରୀର ସୁପ୍ତ ଅଭିଳାଷ ଜଗାଇବା ଅନୁଚିତ, ଥରେ ଜାଗିଲେ ତାହା ଗତିରୋଧ କରିବା ଅସମ୍ଭବ । ଏହାର ସତ୍ୟତା କେତେଦୂର ସାତ୍ତ୍ୱିକମାନେ କହିବେ, କିନ୍ତୁ ଦିନେ ଦୁର୍ଯ୍ୟୋଧନଙ୍କ ସହିତ ତାଙ୍କର ଏହି ସବୁ ବିଷୟରେ ବାଦାନୁବାଦ ହେଲା । ସେ ନିଜେହିଁ କହିଲେ, କିଏ କହିଥିଲା ମୋତେ ବାହାରିବାକୁ, ସମସ୍ତଙ୍କ ସହିତ ମିଶିବାକୁ, ମଦ ଖାଇବାକୁ ଶୁଣେ ? ବର୍ତ୍ତମାନ କାହିଁକି ମୋତେ ଭାଗବତ ଶୁଣାଉଚ ? ତୁମେ ବୁଢ଼ା, ମୁଁ ବୁଢ଼ୀ । ମୋତେ ଯଦି କେବଳ ପୁତ୍ରାର୍ଥେ ଭାର୍ଯ୍ୟା କରିଥାନ୍ତ, କଥା ଭିନ୍ନ ହୋଇ ଥାଆନ୍ତା । ତୁମେ କଲ ମୋତେ ଡମର... । ତୁମେ ବୁଢ଼ା, କିନ୍ତୁ ମୁଁ ନୁହଁ, ତୁମକୁ କହିଥିଲି, ନାରୀର ଇଚ୍ଛା ଯଦି ଜାଣ ସମ୍ଭାଳି ପାରିବନାହିଁ ଦୁର୍ଯ୍ୟୋଧନ ବାବୁ !

ପୁଅ ତାଙ୍କର ତିନୋଟି । ଜୀବନ କ୍ଷଣସ୍ଥାୟୀ ମରଣଶୀଳ ସତ; କିନ୍ତୁ ଜୀବନପ୍ରବାହ ଚିରନ୍ତନ, ଅମର । ପିତା ମାତା ଉତ୍ପାଦନ କରନ୍ତି ସନ୍ତାନ ସନ୍ତତି । ପୁଣି ସେମାନେ ଦିନେ ପିତାମାତା ହୋଇ ସନ୍ତାନ-ସନ୍ତତି ଉତ୍ପାଦନ କରନ୍ତି । ଜୀବନ ପରେ ଜୀବନ ଯାଏ; କିନ୍ତୁ ଜୀବନପ୍ରବାହ ନିରନ୍ତର ହିଁ ଚାଲିଥାଏ । ମୃତ୍ୟୁ ଅମର ହୁଏ । ପୁରୁଷ ଓ ସ୍ତ୍ରୀର ପ୍ରେମ ମଧ୍ୟରେ ନିୟମର ପ୍ରକାଶମାତ୍ର । ପିତା ଅମର ହୁଏ ପୁତ୍ର ମାଧ୍ୟମରେ ।

କିନ୍ତୁ ଅମରତ୍ୱ କଅଣ ? କେବଳ ଜୀବନ ପରେ ଜୀବନର ଦୈହିକ ସୃଷ୍ଟି ? ମୁଁ କଅଣ ମୋର ପୁତ୍ରମାନଙ୍କ ମଧ୍ୟରେ ଅମର ହୋଇ ରହିବି ?

ସେ ଦିନ ଛିଣ୍ଡା ତକିଆକୁ ଡେରି ସେ ଭାବୁଥାନ୍ତି, ସେଇ କଥା । ପାନଖଣ୍ଡକ ପାଟିରୁ କେତେବେଳୁଁ ସରିଲାଣି । ଆଉଖଣ୍ଡେ ଦେବାପାଇଁ କେହି ନାହାନ୍ତି କିମ୍ବା କେହି ଆସୁନାହାନ୍ତି ପାଖକୁ ଯେ, ସଙ୍କେତଦ୍ୱାରା କାହାକୁ କହିବେ । ଅଟ୍ଟାଳିକା ଭଳି ଘର କରିଚନ୍ତି ସେ; କିନ୍ତୁ ପଡ଼ିଥାନ୍ତି ଗୁହାଳକୁ

ଲାଗି ବାହାର ପିଣ୍ଡାରେ । ସ୍ତ୍ରୀ ପ୍ରାୟ ଏକଘଣ୍ଟା ହେବ ସଜବାଜ ହେଉଛନ୍ତି ବାହାରକୁ ଯିବାକୁ । ତାଙ୍କର ସାଜଘରୁ ଭାସିଆସୁଚି ତାଙ୍କ ଗୁଣୁ ଗୁଣୁ ଗାନ ଓ ଅତରର ସୁଗନ୍ଧ । କିଛିକ୍ଷଣ ପରେ ସେ ଚାଲିଗଲେ ସୌନ୍ଦର୍ଯ୍ୟ ମୁଣ୍ଡା ହଲାଇ ହଲାଇ, ସମସ୍ତ ମାଂସଳ ଅଙ୍ଗରେ ତରଙ୍ଗ ଖେଳାଇ । ତାଙ୍କଆଡ଼େ ଥରେ ଚାହିଁଲେ ବି ନାହିଁ ।

ଦୁର୍ଯ୍ୟୋଧନ ବାବୁଙ୍କ ଦେହ ଥରି ଉଠିଲା ଅସହ୍ୟ ମାନସିକ ଯନ୍ତ୍ରଣାରେ । ଚିତ୍କାର କରିବାକୁ ଚେଷ୍ଟାକଲେ; କିନ୍ତୁ ପାରିଲେ ନାହିଁ, କେବଳ ଗଁ ଗଁ ଶବ୍ଦ ନିର୍ଗତ ହେଲା ।

ଏହି ସମୟରେ ପ୍ରବେଶ କଲେ ତାଙ୍କ ବଡ଼ ପୁଅ । ଦୁର୍ଯ୍ୟୋଧନ ବାବୁ ମନେ ମନେ ଟିକିଏ ହସିଲେ ଓ ମନେ ମନେ କହିଲେ, ଆସିଗଲେ ନେତା ।

ଦୁର୍ଯ୍ୟୋଧନ ବାବୁଙ୍କ ବଡ଼ପୁଅ ନେତା ହୋଇନାହାନ୍ତି; କିନ୍ତୁ ଦ୍ରୁତଗତିରେ ଆଗେଇ ଚାଲିଚନ୍ତି ନେତା ହେବାକୁ । ନାନା ଅସତ୍ ଉପାୟରେ ସେ ପ୍ରଚୁର ଅର୍ଥ ଉପାର୍ଜନ କରିଛନ୍ତି, କରୁଛନ୍ତି । ନାନା ପେଞ୍ଚ ଓ କୂଟନୀତି ପ୍ରୟୋଗ କରି ସେ ଧାପେ ଧାପେ ଉଠି ଚାଲିଚନ୍ତି ନେତା ହେବାପାଇଁ ।

ସେ ଆସିଲେ ଓ ତାଙ୍କ ପଛେ ପଛେ ଆସିଲେ ଆଉ ଦୁଇଚାରିଜଣ । ଜଣେ ହାତରେ କ୍ୟାମେରା ଧରିଛନ୍ତି । ଦୁର୍ଯ୍ୟୋଧନ ବାବୁଙ୍କଆଡ଼େ ଟିକିଏ ଚାହିଁ ମୁରୁକି ହସି ଗୋଡ଼ ଘଷିଦେବାକୁ ଲାଗିଲେ । ହଠାତ୍ ଏ ପରିବର୍ତ୍ତନ ଦେଖି ଦୁର୍ଯ୍ୟୋଧନ ଚମକି ପଡ଼ିଲେହେଁ କୃତଜ୍ଞତାରେ ତାଙ୍କ ଆଖିରୁ ପାଣି ଝରିପଡ଼ିଲା । ସେ ଗୋଡ଼ ଘଷିଦେଉଥିବା ଅବସ୍ଥାରେ କ୍ୟାମେରାବାଲା ଜଣକ ଫଟ ଉଠାଇ ନେଲେ । ତା'ପରେ ସେ ହସି କହିଲେ, ମୁଁ ବର୍ତ୍ତମାନ ଆସୁଚି ବାପା, କିଛି କଷ୍ଟ ନାହିଁ ତ ।

ଦୁର୍ଯ୍ୟୋଧନ ବାବୁ ମୁଣ୍ଡ ହଲାଇ ଜଣାଇଲେ 'ନା' । ସମସ୍ତେ ଚାଲିଗଲେ । ତେବେ ପିତୃଭକ୍ତିର ଫଟ ଉଠାଇବାକୁ ଆସିଥିଲେ ପୁଅ ।

ଏ ମୋର ପୁଅ; କିନ୍ତୁ ମୋର ଚରିତ୍ରର ଗୋଟାଏ ଦିଗର ମୂର୍ତ୍ତି ସେ । ମୁଁ ଯେବେ ଧନଲୋଭରେ ନାନା ଅସଦୁପାୟ ଆଚରଣ କରୁଥିଲି, ନାନା କୂଟନୀତିଦ୍ୱାରା ଚାକିରୀକ୍ଷେତ୍ରରେ ଦ୍ରୁତ ଉପରକୁ ଉଠିଚାଲିଥିଲି, ଏ ପୁତ୍ର ମୋର ସେଇ ସମୟର, ମୋର ଗୁପ୍ତ ଚରିତ୍ରର ଏକ ପ୍ରକାଶ୍ୟ ମୂର୍ତ୍ତି । ଅତଏବ ତା'ର କିଛି ଦୋଷ ନାହିଁ । ମୋର ସମ୍ପୂର୍ଣ୍ଣ ଦୋଷ । ଦୁର୍ଯ୍ୟୋଧନ ବାବୁଙ୍କ ଆଖିରୁ ପୁଣି ପାଣି ଝରିପଡ଼ିଲା, ପୁଣି ସେ ଗଁ ଗଁ କରି ଉଠିଲେ । ଅସ୍ଥିରଭାବରେ ସେ ମୁଣ୍ଡ ଛିଣ୍ଡା ତକିଆ ଉପରେ ଏପାଖ ସେପାଖ ଚଳାଇବାକୁ ଲାଗିଲେ ।

ଏହି ସମୟରେ ପ୍ରବେଶ କଲେ ତାଙ୍କର ମଝିଆଁ ପୁଅ ଟଳି ଟଳି, ହାତରେ ମଦ ବୋତଲ ଧରି । ବାପାଙ୍କୁ ଦେଖି ସେ ସାଷ୍ଟାଙ୍ଗ ପ୍ରଣିପାତ କରି କାନ୍ଦି ପକାଇ କହିଲେ, ବାପା, ଆଜି ସକାଳୁ ମୁଁ, ବେଶି ନୁହେଁ, ଗୋଟିଏ ମାତ୍ର ବୋତଲ ପିଇଚି । ଆଉ ଅଛି, ନେବେ ଟିକିଏ ନିଅନ୍ତୁ, ଭାରି ଆରାମ ଦେବ । ଦୁର୍ଯୋଧନ ବାବୁ ସେମିତି ବଲ ବଲ କରି ଚାହିଁଆନ୍ତି, ପୁତ୍ର ପିତାଙ୍କୁ ଅନୁରୋଧ କରୁଚି ଟିକିଏ ପିଇବାକୁ ମଦ । ଦୁର୍ଯ୍ୟୋଧନ ବାବୁ ମୁଣ୍ଡ ଟୁଙ୍ଗାରି କହିଲେ, ହଁ । ହାଃ ହାଃ ହାଃ ହାଃ-ପୁତ୍ର ଲହରାଇ ଲହରାଇ ହସୁ ହସୁ ଟଳି ଟଳି ଚାଲିଗଲେ ।

ଦୁର୍ଯୋଧନ ବାବୁ ଭାବିବାକୁ ଲାଗିଲେ, ଏ ମଧ ମୋର ଚରିତ୍ରର ଆଉ ଏକ ପ୍ରକାଶ୍ୟ ମୂର୍ତ୍ତି । ମୁଁ ମଧ ଦିନେ ଘରର ସମସ୍ତଙ୍କ ଆଗରେ ମଦ ପିଉଥିଲି ଏବଂ ମାତାଲ ହେଉଥିଲି । ମୁଁ ହିଁ

ଦିନେ କହୁଥିଲି, ମଦ ପିଇବା କିଛି ଖରାପ ନୁହେଁ, ସବୁ ସଭ୍ୟଦେଶରେ ସମସ୍ତ ପରିବାର ବସି ମଦ ପାନ କରନ୍ତି । ସେହି ମୁଁ ଆଜି ପୁତ୍ରରୂପରେ ଦେଖାଦେଇଛି, ମୋର ଚରିତ୍ରର ସେଇ ଦିଗଟି ମୂର୍ତ୍ତି ପାଇଛି ।

ଦୁର୍ଯ୍ୟୋଧନ ବାବୁ ଗଁ ଗଁ କରି ଉଠିଲେ ପୁଣି ହାତ ଉପରକୁ ଉଠାଇ; କାହାକୁ ଧରିବାକୁ ଚେଷ୍ଟାକଲେ; କିନ୍ତୁ ପାରିଲେ ନାହିଁ । ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲେ । ନିଜ ହାତରେ ନିଜର ବେକ ଚିପି ଆତ୍ମହତ୍ୟା କରିବାକୁ  ଚେଷ୍ଟାକଲେ; କିନ୍ତୁ ପାରିଲେ ନାହିଁ ।

ଏତେ ବଡ଼ ଘର, କିନ୍ତୁ ଶୁନ୍‌ଶାନ୍ ଚାରିଆଡ଼, କେହି କେଉଁଠି ନାହାନ୍ତି । ସମସ୍ତେ ଯେ ଯା'ର ପ୍ରବୃତ୍ତି ମାର୍ଗ ଧରି କିଏ କୁଆଡ଼େ ଯାଇଛନ୍ତି, ଫେରିବେ ଅନେକ ରାତିରେ । ସେତେବେଳେ ପର୍ଯ୍ୟନ୍ତ ସେ ଏକା, ନିହାତି ଏକା । ଅନ୍ତରେ ବାହାରେ ଏକା ।

ମନ ତାଙ୍କର ହାହାକାର କରି ଉଠିଲା । ଦିନ ଥିଲା ଯେବେ ସେ ଦେହର ନାନା କ୍ରିୟାରୁ ଜାତ ନାନା ଇଚ୍ଛାକୁ ସମ୍ପୂର୍ଣ୍ଣ ପ୍ରାଧାନ୍ୟ ଦେଇଥିଲେ ଏବଂ ଚରିତାର୍ଥ କରିଥିଲେ । ଦେହଦ୍ୱାରା କୌଣସିଭାବେ ପ୍ରଭାବିତ ନ ହୋଇ ଶୁଦ୍ଧଚିନ୍ତା ଯେ ଥାଇପାରେ ସେ କଥା ସ୍ୱୀକାର କରୁ ନ ଥିଲେ । ଆଜି ସେ ଭାବୁଚନ୍ତି ପ୍ରଥମଟି ବ୍ୟକ୍ତି ଓ ସମାଜପକ୍ଷରେ ଅମଙ୍ଗଳଜନକ, ଧ୍ୱଂସକାରକ ଏବଂ ଦ୍ୱିତୀୟଟି ଉଭୟଙ୍କ ପକ୍ଷରେ ମଙ୍ଗଳକାରକ; କିନ୍ତୁ ଭେଡ଼ିଗୁଡ଼ କହୁଣିକି ଗଡ଼ିଗଲାପରେ ଆଉ କି ଉପାୟ ଅଛି ! ସେ କୌଣସିମତେ, ବହୁ ଯନ୍ତ୍ରଣା ପାଇଲେ ମଧ୍ୟ, ଦୁଇ ହାତ ଯୋଡ଼ି ନମସ୍କାର କଲେ ।

ନମସ୍କାର କରନ୍ତୁ ବାପା, ସେଇ ଏକମାତ୍ର ସହାୟ, ଆଶା, ସାର୍ଥକତା, ଆଉ ସବୁ ବ୍ୟର୍ଥ, କହୁ କହୁ ପ୍ରବେଶ କଲେ ଦୁର୍ଯ୍ୟୋଧନ ବାବୁଙ୍କର ତୃତୀୟ ପୁତ୍ର । ପିନ୍ଧିଛନ୍ତି ଗେରୁଆ ଲୁଗା ଖଣ୍ଡେ ଓ ଚାଦର । ଖୁବ୍ ମେଧାବୀ ଛାତ୍ର ଥିଲେ ସେ; କିନ୍ତୁ କଲେଜରେ ପଢୁ ପଢୁ ସେ ସନ୍ନ୍ୟାସୀ ହୋଇ ଚାଲିଯାଇଥିଲେ । ସେ ଆଜିକି ପାଞ୍ଚ ବର୍ଷ ଆଗର କଥା । ସେତେବେଳକୁ ଦୁର୍ଯ୍ୟୋଧନ ବାବୁ ଓ ସମସ୍ତେ ସିଦ୍ଧାନ୍ତ କରିଥିଲେ, ସେ କୁଳର କଳଙ୍କ । ଦୁର୍ଯ୍ୟୋଧନ ବାବୁ ସେଇଦିନୁ ଲଜ୍ଜାରେ ସେ ପୁତ୍ରର ନାମ ମଧ୍ୟ କାହାରି ଆଗେ ଉଲ୍ଲେଖ କରନ୍ତି ନାହିଁ, କେହି ଉଠାଇଲେ ଲଜ୍ଜିତ, ଅପମାନିତ ମନେ କରନ୍ତି ।

ଆଜି କିନ୍ତୁ ସେ ପୁଅକୁ ଦେଖି ସେ ମନରେ ଅଶେଷ ବଳ ଓ ସାନ୍ତ୍ୱନା ପାଇଲେ; କିନ୍ତୁ ଆଶ୍ଚର୍ଯ୍ୟ ହେଲେ ଭାବି, ଯେ ଏ ପୁତ୍ର ମୋର କିପରି ଜନ୍ମ ହେଲା । ତେବେ କଅଣ ବାହାରର ସବୁ ପଶୁ-ପ୍ରବୃତ୍ତି ଭିତରେ ଗୋଟିଏ କ୍ଷୀଣ ଶୁଦ୍ଧ ଚିନ୍ତା ଲୁକ୍‌କାୟିତ ଥିଲା !! କାହିଁ, ମୁଁ ତ କେବେ ତା'ର ସନ୍ଧାନ ପାଇନି । ଏଇ କଅଣ ତେବେ ଅମରତ୍ୱ । ଓଃ ! ମୁଁ କି ଭୁଲ କରିଚି !

ଦୁର୍ଯ୍ୟୋଧନ ବାବୁଙ୍କ ତୃତୀୟ ପୁତ୍ର ବାପାଙ୍କ ଦେହ ଆଉଁଷି ଦେଉଦେଉ କହିଲେ, ''ବାପା ! କ୍ଷମତା, ପ୍ରତିପତ୍ତି, ଉଚ୍ଚାସନ, ମାନ, ସମ୍ମାନ ପାଇବା ପୂର୍ବରୁ ବ୍ୟକ୍ତିଗତ ଶୋଧନ ଦରକାର; ତାହା ଯାହାର କରିବାର ଇଚ୍ଛା ବା କ୍ଷମତା ନାହିଁ, ସେ ସାଧାରଣ ଲୋକଭାବରେ ରହିବା ଉଚିତ । ତା ନ ହେଲେ ସେ ଯେତେ ବୁଦ୍ଧିମାନ ହେଉ ନା କାହିଁକି ସମାଜର ଘୋର ଅମଙ୍ଗଳ କରିବ ।''

ଦୁର୍ଯ୍ୟୋଧନ ବାବୁଙ୍କ ଇଚ୍ଛା ହେଲା- ଏ ପୁତ୍ର ପାଖରେ ଜୀବନର ସବୁ ଦୋଷ, ସବୁ ଦୁର୍ବଳତା ଖୋଲି କହିଦେବାକୁ, କହିବାର ଚେଷ୍ଟାରେ ଓଠ ତାଙ୍କର ଥରି ଉଠିଲା । ଆଖିରୁ ତାଙ୍କର ପାଣି ବାହାରି ପଡ଼ିଲା । ଅସ୍ଥିରଭାବରେ ସେ ମୁଣ୍ଡ ହଲାଇବାକୁ ଲାଗିଲେ ।

ବାପାଙ୍କୁ ଆଉଁଷି ଦେଉ ଦେଉ ସେ କହିଲେ, ବାପା ! ଆପଣ ଯାହା କହିବାକୁ ଚେଷ୍ଟା କରୁଛନ୍ତି ମୁଁ ଜାଣେ । ଭୁଲ କିଛି ନାହିଁ, ଅବଶ୍ୟ ଦୈହିକ କ୍ରିୟାକୁ ଜାତ ଇଚ୍ଛାକୁ ପ୍ରାଧାନ୍ୟ ଓ ସ୍ୱାଧୀନତା ଦେବା ହିଁ ଅନୀତି । ଯେଉଁ ଅଦ୍ଭୁତ ନିୟମରେ ବା ଯାହା ଇଚ୍ଛାରେ କୋଟି କୋଟି ବ୍ରହ୍ମାଣ୍ଡ ପ୍ରତି ମୁହୂର୍ତ୍ତରେ ସୃଷ୍ଟ ହୋଇ ପ୍ରତିମୁହୂର୍ତ୍ତରେ ବିଲୟ ହେଉଚି, ତାଙ୍କ ଚିନ୍ତାହିଁ ଶୁଦ୍ଧ ଚିନ୍ତା । ଆପଣ ସେ ଚିନ୍ତା କରି ନାହାନ୍ତି ବୋଲି ବ୍ୟସ୍ତ ହୁଅନ୍ତୁ ନାହିଁ, ବର୍ତ୍ତମାନ ମଧ ସମୟ ଅଛି । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବେଳ ଅଛି ।

ଦୁର୍ଯ୍ୟୋଧନ ବାବୁ ପୁଣି ଥରେ ବହୁ କଷ୍ଟରେ ଦୁଇ ହାତ ଯୋଡ଼ି ନମସ୍କାର କଲେ ।

# ଜୀବନ ଓ ଜୀବିକା

ଅନ୍ନମୟ କୋଷ, ତା ପରେ ରସମୟ କୋଷ, ଜ୍ଞାନମୟ କୋଷ, ବିଜ୍ଞାନମୟ କୋଷ ଓ ତା ପରେ ଆନନ୍ଦମୟ ଆତ୍ମା । ଜୀବନ ଖୋଜେ ସେଇ ଆନନ୍ଦମୟ ଆତ୍ମାକୁ ପାଇବାକୁ । କିନ୍ତୁ ଜୀବିକା ଘଟାଏ ଅନ୍ତରାୟ । ଯିଏ ଜୀବନ ଓ ଜୀବିକାର ସାମଞ୍ଜସ୍ୟ ଘଟାଇ ପାରିଚି, ତା ପକ୍ଷରେ ଜୀବନଯାତ୍ରା ହୁଏ ଗୋଟିଏ କଳାଚର୍ଚ୍ଚା, ଆର୍ଟ । ସବୁ ଆର୍ଟ ନିଜକୁ ଆନନ୍ଦ ଦେବା ସଙ୍ଗେ ସଙ୍ଗେ ଅନ୍ୟକୁ ମଧ୍ୟ ଆନନ୍ଦ ଦିଏ । ଯାହାର ଜୀବନରେ ଏ ଦୁହିଁର ସାମଞ୍ଜସ୍ୟ ଘଟିନାହିଁ; ସେ ନିଜେ ଆନନ୍ଦ ପାଏନା, ସୋରିଷ ତେଲରେ ଅଗରା ମିଶାଇ ସେ ଯେତେ କୋଠା ପିଟୁ, ଦାନଧ୍ୟାନ କରୁ ବା ରାମଚରିତ ମାନସ ଯଜ୍ଞ କରୁନା କାହିଁକି ! ଯିଏ ନିଜେ ଆନନ୍ଦ ପାଏନା, ସେ ଅନ୍ୟକୁ ଆନନ୍ଦ ବା ଶାନ୍ତି ଦେବାକୁ ଚାହେଁନା । ଏ ଦୃଷ୍ଟିରୁ ଦେଖିଲେ ଧପଡ଼ ସିଂ ଜଣେ ଶ୍ରେଷ୍ଠ କଳାକାର !

'ଧପଡ଼ ସିଂ' ତାର ନିଜ ନାଁ ନୁହେଁ । ତାର ନିଜ ନାଁ'ଟି ଅଇଣ୍ଠୁ । ଅନେକ ବଡ଼ ବଡ଼ ଲେଖକ ଓ ଶିଳ୍ପୀ ଯେପରି ଗୋଟିଏ ଅନ୍ୟ ନାମ ବ୍ୟବହାର କରନ୍ତି , ଅଇଣ୍ଠୁର ମଧ୍ୟ ଚନାଚୁର ବିକ୍ରୀ କରିବାର ନାଁ'ଟି ଧପଡ଼ ସିଂ । ସେଇ ନାଁ'ରେ ସେ କଟକରେ ସର୍ବତ୍ର ପରିଚିତ ।

ତାର ଚନାଚୁର ପ୍ରତି ମୁଁ ପ୍ରଥମେ ଆକୃଷ୍ଟ ହୋଇଥିଲି ତାର ଚନାଚୁର ଖାଇ ନୁହେଁ, ତାର ବେଶଭୂଷା, ତାର ଅଙ୍ଗଭଙ୍ଗୀ, ତାର ଗୀତ ଦେଖି ଶୁଣି । ଚୌଧୁରୀ ବଜାର ଛକ ଉପରେ ଛିଡ଼ା ହୋଇ ସେ ତାର ବୋଲି ଛାଡୁଥାଏ-ଚନାବନାଏ ତର୍‌ର୍, ଇସ୍‌କୁ ଲେତେଯାନା ଘର୍‌ର୍ । କେଉଁ ଅଜ୍ଞାତ ମହାକବିକଥିତ ଶାର୍ଦ୍ଦୂଳବିକ୍ରୀଡ଼ିତ ଛନ୍ଦରେ ପାରମ୍ପରିକ ପନ୍ଥାରେ ଏହିପରି ଜୀବିକା ମହାକାବ୍ୟ ଆରମ୍ଭ କରିବା ପରେ ଧପଡ଼ ସିଂ ଗାଇ ଚାଲେ ତାର ନିଜସ୍ୱ ମହାକାବ୍ୟ -କୁହ ଭାର୍ଯ୍ୟାକୁ ଡାର୍ଲିଂ, କରି ବାପାକୁ ଗୁଡ଼ ମର୍ଣ୍ଣି... ଖାଇ ଚପ୍ କଟଲେଟ, ଓଠେ ଚିପି ସିଗାରେଟ୍.. ନ ଭୁଲ ଚନାକୁ ମୋହର, ଏ ଯେ ଖାଣ୍ଟି ଓଡ଼ିଶାର... ଏଥିରେ ଅଛି ଭିଟାମିନ୍, ଖାଇଲେ ଦୁନିଆ ରଙ୍ଗୀନ୍... ଭିଟାମିନ୍ ପ୍ରୋଟିନ୍‌ରେ ଭରପୂର୍ ବନାୟା ଚନାଚୂର ମୂର୍‌ର୍... ଚନା ଚୂର୍‌ର୍‌ର୍ ମୁର୍‌ର୍‌ର୍ ଇତ୍ୟାଦି । ମେଘର ଗର୍ଜ୍ଜନ ଭଳି ର୍‌ର୍‌କୁ ସେ ଗମ୍ଭୀର ଗଳାରେ ଏମିତି ଘୂରେଇ ତୁରେଇ କୁହେ ଯେ ଜନଗହଳି ଛକର ସମସ୍ତ ଶବ୍ଦକୁ ଟପି ସେ ଶବ୍ଦ ଶୁଣାଯାଏ, ଆଉ ଲୋକେ ଚକିତ ହୋଇ ତାକୁ ଚାହାନ୍ତି ।

ଧପଡ଼ ସିଂ ଆଶୁକବି । ଗୀତ ତାର ମୁହେଁ ମୁହେଁ । ତାର ଚନାଚୂର ବୋଲିରେ ଆଧୁନିକ ଯୁଦ୍ଧ ସମସ୍ୟା, ଓଡ଼ିଶାର ବନ୍ୟା ସମସ୍ୟା, ନୀତିଶାସ୍ତ୍ର, ଧର୍ମଶାସ୍ତ୍ର ସବୁ ସ୍ଥାନ ପାଇ ଏକ ମହାକାବ୍ୟ ପ୍ରସ୍ତୁତ ହେଲା । ପ୍ରାଞ୍ଜଳ ସରଳ ଯେପରି ତାର ଭାଷା, ସହଜ ସୁନ୍ଦର ସେହିପରି ତାର ଭାବ । ମୁଣ୍ଡରେ ଗାଢ଼ ଲାଲ ରଙ୍ଗର ପଗଡ଼ି, ରାଜପୁତ ରାଜାମାନେ ଯେଉଁ ଠାଣିରେ ପିନ୍ଧନ୍ତି ସେମିତି ପିନ୍ଧା ହୋଇଚି ।

କପାଳ ଉପରକୁ ପଗଡ଼ିର ଠିକ୍ ମଝିରେ ନକଲି ସୁନାର ଗୋଟିଏ ବଡ଼ ବ୍ରୁଚ । ବ୍ରୁଚ ଉପରେ ସବୁଜ ରଙ୍ଗର ପକ୍ଷୀ ପରର ଚୂଡ଼ା । ବାଇଗଣି ରଙ୍ଗର ଜାପାନୀ ଶସ୍ତା ସିଲ୍କର ବୁଟିଦାର ପଞ୍ଜାବୀ ଉପରେ ହଳଦିଆ ରଙ୍ଗର ନକଲି ଭେଲ୍‌ଭେଟର ହାତକଟା ପତୁଆ, ସେଥିରେ ଜରିକାମ । ବେକରେ ଶସ୍ତା ସିଲ୍କର ଛାପଛାପକା ରୁମାଲ ବନ୍ଧାହୋଇଚି, ଗଣ୍ଠି ତାର ବେକର ଗୋଟିଏ କଡ଼କୁ । ପିନ୍ଧିଚି ଗୋଲାପି ରଙ୍ଗର ଭୟେଲ କନାର ଧୋତି କାବୁଲିଙ୍କ ଭଙ୍ଗୀରେ । ଗୋଡ଼ରେ ସବୁଜ ରଙ୍ଗର ନାଗ୍ରା ଜୋତା । ହାତରେ ଗୋଟିଏ ବଡ଼ ଘଡ଼ି ବନ୍ଧା ହୋଇଚି । କାନ୍ଧରୁ ଝୁଲୁଚି ଗୋଟିଏ ବଡ଼ ଥଳି । ଥଳିରେ ଅଛି ଗୋଟିଏ ବଡ଼ ଓ ଆଉ ଗୋଟିଏ ସାନ ଟିଣ । ବଡ଼ ଟିଣଟିରୁ ଗୋଟିଏ ଚୁଙ୍ଗା ଉପରକୁ ବାହାରିଚି ଓ ସେଥିରୁ ସବୁବେଳେ ଧୂଆଁ ବାହାରୁଚି । ଚନାଚୁରକୁ ତାଜା ତଟକା ରଖିବା ପାଇଁ ଟିଣ ଭିତରେ ନିଆଁ ଅଛି । ସାନ ଟିଣଟିରେ ଅଛି କାଗଜ ଓ ନାନା ରଙ୍ଗର ମସଲା । ଚାରିପଟେ ତାର ଲୋକର ଭିଡ଼ । ତନ୍ମୟ ହୋଇ ତାରି ବୋଲି ଶୁଣୁଚନ୍ତି ଓ ଚନାଚୁର କିଣିଛନ୍ତି । ଧପଡ଼ ସିଂ ମୁହଁରେ ବୋଲିର ମଧ୍ୟ ବିରାମ ନାହିଁ କି ହାତକୁ ଚନାଚୁର ବିକ୍ରୀ କରିବାରେ ମଧ୍ୟ ବିରାମ ନାହିଁ ।

ସାଇକେଲ ଚଢ଼ି ସେ ବାଟେ ଯାଉଥିଲି ପରିବା କିଣିବାକୁ । ଧପଡ଼ ସିଂର ବେଶଭୂଷା ବିଶେଷତଃ ତାର ଗୀତରେ ଆକୃଷ୍ଟ ହୋଇ ମୁଁ ସେଠି ଛିଡ଼ା ହୋଇଗଲି । ଧପଡ଼ ସିଂ ସେତେବେଳେ ତାର ଚନାଚୁର ବୋଲିରେ କହୁଥାଏ - ବଢ଼ି ହୋଇଚି, ଜୀବନ ନଷ୍ଟ ହୋଇଚି, ଫସଲ ନଷ୍ଟ ହୋଇଚି ସବୁ ସତ । କ୍ୟା ପରୁଆ । ଏମିତି ହେଲାଣି, ଆହୁରି କେତେ ହବ । ପଶୁମାନେ ସିନା ଡରିଯିବେ ! ମଣିଷ କାହିଁକି ଡରିବ ? ଚନାଚୁର ଖାଇ ମନକୁ ଆନନ୍ଦ କର ।

ଏହିପରି ଅନେକ ସମସ୍ୟା ସେ ସମାଲୋଚନା କରି ତାର ସମାଧାନ ସେ ଚନାଚୁର ଖିଆର ଆନନ୍ଦରେ କହିଦେଇଗଲା । ତନ୍ମୟ ହୋଇ ଅନେକକ୍ଷଣ ଶୁଣିବା ପରେ ମୁଁ ଦୁଇ ପଇସାର ଚନାଚୁର କିଣିଲି । ଧପଡ଼ ସିଂ ଗୋଟିଏ ସାନ ଠୁଙ୍ଗାରେ ଆଠ ଦଶଟି ଚନାଚୁର ଦେଲା । ଠୁଙ୍ଗା ଖୋଲି ସେଇଠି ଛିଡ଼ା ହୋଇ ଦୁଇଟି ପାଟିରେ ପକାଇଲି । ବାଃ ଚମତ୍କାର ! ପାଟିରୁ ମୋର ନାଳ ଗଳିପଡ଼ିଲା । ଅପ୍ରସ୍ତୁତ ଭାବରେ ଚାରି ଆଡ଼କୁ ଚାହିଁ ରୁମାଲରେ ପାଟି ପୋଛିଦେଲି । ଧପଡ଼ ସିଂ ମୋ ଆଡ଼କୁ ଚାହିଁ ଟିକେ ମୁରୁକି ହସି ସାଙ୍ଗେ ସାଙ୍ଗେ ସେ ବିଷୟ ମଧ୍ୟ ତାର କାବ୍ୟରେ ଯୋଡ଼ିଦେଲା । ସମସ୍ତେ ହସିଲେ, ମୁଁ ବି ହସିଲି ।

ଧପଡ଼ ସିଂ ବୋଲି ଚାଲିଲା । ତାର ଚନାଚୁର ଖାଇବାର ଆନନ୍ଦ ଏକା ଉପଭୋଗ କରିବାର ନୁହେଁ । ଘରର ସମସ୍ତଙ୍କୁ ଏ ଆନନ୍ଦ ଦେବା ଉଚିତ । ଏହା କରିବାର ଆଉ ଗୋଟିଏ ଅକାଟ୍ୟ ଯୁକ୍ତି ମଧ୍ୟ ସେ ତାର କାବ୍ୟରେ କହିଲା-ଯଦି କେହି ନିଇତି ତାର ଚନାଚୁର ଖାଇବାର ଇଚ୍ଛା ସମ୍ଭାଳି ନ ପାରେ ଏବଂ ସେ ଲୋକର ଅର୍ଥନୀତି ଯଦି ଘରୁ ନିୟନ୍ତ୍ରିତ ହେଉଥାଏ, ତେବେ ବେଶି ନୁହେଁ, ଦୁଇଟି ପଇସାର ଧପଡ଼ ସିଂର ଚନାଚୁର ସେ କିଣି ନେଇ ତାର ଗୃହିଣୀକୁ ଦେଉ । ଏହାପରେ ସେ ଲୋକ ଦେଖିବ, ନିଇତି ଦୁଇଟି ଅଣାର ଚନାଚୁର କିଣିବାର ଆଦେଶ ଘରୁ ହେବ । ଏହା ପରେ ସେ ଗାଇ ଚାଲିଲା - ପୁରୁଷ ସ୍ୱାଧୀନ ନୁହେଁ, ସ୍ୱାଧୀନ ନାରୀ । ନାରୀର ବାହାର ଅସହାୟତା ତଳେ ଲୁଚି ରହିଚି ପ୍ରଚଣ୍ଡ ଶକ୍ତି, ଯେଉଁ ଶକ୍ତି ସାହାଯ୍ୟରେ ସେ ପୁରୁଷର ଶକ୍ତିକୁ ନିୟନ୍ତ୍ରିତ କରେ । ଏହି ତଥାକଥିତ ସ୍ତ୍ରୀ ସ୍ୱାଧୀନତା ସ୍ତ୍ରୀ ମାନଙ୍କର ସେ ଶକ୍ତି ଅପହରଣ କରିଦେଉଚି । ସାବଧାନ । ସାବଧାନ ! ! ଏ

ସ୍ତ୍ରୀ ସ୍ୱାଧୀନତା ଫଳରେ ସମସ୍ତେ ହଣାକଟା ହୋଇ ମରିବେ । ମରିବେ ।।

ପୁରୁଷ ଯେ ଆଦୌ ସ୍ୱାଧୀନ ନୁହେଁ ମୁଁ ତାହା ମର୍ମେ ମର୍ମେ ଅନୁଭବ କଲି । ହାତ ଘଡ଼ିକୁ ଚାହିଁ ଦେଖିଲି ପ୍ରାୟ ଘଣ୍ଟାଏ ମୁଁ ଏଠି ବିତାଇ ଦେଲିଣି । ବଜାର ସୌଦା ଏ ପର୍ଯ୍ୟନ୍ତ ହୋଇନାହିଁ । ଗୃହିଣୀ ଚୁଲି ଲଗାଇ ମୋତେ କହିଥିଲେ ବଜାରରୁ ସୌଦା ଆସିଲେ ରୋଷେଇ ହେବ । ତାପରେ ମୁଁ ଦୁଇଟି ପଇସା ବାଜେ ଖର୍ଚ୍ଚ କରି ସାରିଲିଣି । ମନେ ମନେ ଆତଙ୍କିତ ହୋଇପଡ଼ିଲି । ଧପଡ଼ ସିଂର ଉପଦେଶ ମାନି ଆଉ ଦୁଇଟି ପଇସାର ଚନାଚୁର ନେଇ ମୁଁ ଘରକୁ ଫେରିଲି ।

ଘରେ ପାଦ ନ ଦେଉଣୁ ଗୃହିଣୀ ଗାଳି ଦେବାପାଇଁ ମୁଖ ବ୍ୟାଦାନ କରି ପାଖକୁ ଲାଗି ଆସିଲେ । କିଛି କହିବା ପୂର୍ବରୁ ମୁଁ ତାଙ୍କ ଅଧରରେ ଗୋଟିଏ ଚୁମ୍ବନ (ପ୍ରେମରେ ନୁହଁ, ଆତ୍ମରକ୍ଷାର୍ଥେ) ଦେଇ ବାକ୍ୟସ୍ରୋତ ନିରୋଧ କରିଦେଲି ଏବଂ ତାଙ୍କର ସନ୍ଦେହକୁଞ୍ଚିତ ବେନି ଓଷ୍ଠ ଈଷତ୍ ଖୋଲି ଦୁଇଟି ଚନାଚୂର ତାଙ୍କର ମୁଖ ଗହ୍ୱରରେ ନିକ୍ଷେପ କଲି । ଏହାର ପ୍ରତିକ୍ରିୟା ପର୍ଯ୍ୟବେକ୍ଷଣ କରିବା ପାଇଁ ମୁଁ ଆତଙ୍କିତ ହୃଦୟରେ ଅପେକ୍ଷା କରିବାକୁ ଲାଗିଲି । ଗୃହିଣୀଙ୍କ କ୍ରୋଧ-ନମିତ ଭ୍ରୂଚାପ ଯୁଗଳ ଧୀରେ ଧୀରେ ପ୍ରଶସ୍ତି ଲାଭ କଲା । ମୁଖ ବିବରରୁ ଚିକ୍ରିଏଁ କୁଡ୍‌କୁଡ୍ ମୁଡ୍‌ମୁଡ୍ ଶବ୍ଦ ବାହାରିବା ସଙ୍ଗେ ସଙ୍ଗେ ତାଙ୍କର ତାମ୍ବୁଳ-ରଞ୍ଜିତ ଦନ୍ତପଂକ୍ତି ବିକଶିତ ହେବାକୁ ଲାଗିଲା । ହଠାତ୍ ସେ ଚିଲାମାରି ମୋ ହାତରୁ ଠୁଙ୍ଗାଟି ଛଡ଼ାଇ ନେଲେ ।

ଧନ୍ୟ ଧପଡ଼ ସିଂ । ତୁମେ ମୋର ନମସ୍କାର ନିଅ !! ମନେ ମନେ ଧପଡ଼ ସିଂକୁ ଭକ୍ତିଭରେ ପ୍ରଣାମ କଲି ।

ଗୃହିଣୀ ହସ ହସ ବଦନରେ ପଚାରିଲେ, ଚମତ୍କାର ଚନାଚୂର ! କେଉଁଠୁ ଆଣିଲ ?

ଗର୍ବର ସହିତ କହିଲି, ଏଁ ହେଁ, କେମିତି ଲାଗୁଚି ? ଖୋଜି ଖୋଜି ତୁମ ପାଇଁ ଆଣିଚି ।

ସେଦିନ ଗୃହିଣୀ ମୋର ବିଳମ୍ବ ବା ଅଧିକ ଚାରି ପଇସା ଖର୍ଚ୍ଚ ବିଷୟରେ ଉଚ୍ଚବାଚ୍ୟ କଲେ ନାହିଁ ।

ପରଦିନ ବଜାରକୁ ଥଳି ନେଇ ବାହାରିବା ସମୟରେ ଗୃହିଣୀ ବଜାର ହିସାବ ବୁଝାଇ ଦେବା ପରେ କହିଲେ, ଏ ଛ'ଟା ପଇସା ଧର । ସେଇ ଚନାଚୂର ଆଣିବ । ପାଟିଟା କେମିତି ଟକରା ଲାଗୁଚି । ପୁଣି ଥରେ ଧପଡ଼ ସିଂକୁ ମନେ ମନେ ନମସ୍କାର କରି କହିଲି, ଧନ୍ୟ ଧପଡ଼ ସିଂ । ଧନ୍ୟ ତୁମର ଭବିଷ୍ୟଦ୍‌ବାଣୀ !!

ସେହିଦିନ ଠାରୁ ପ୍ରତ୍ୟହ ଛ' ପଇସାର ଧପଡ଼ ସିଂ ଚନାଚୂର ଗୃହିଣୀଙ୍କ ବଜେଟ ଅନ୍ତର୍ଭୁକ୍ତ ହୋଇଗଲା । ସେହି ଦିନୁ ମଧ୍ୟ ଧପଡ଼ ସିଂ ସହିତ ମୋର ପରିଚୟ କ୍ରମେ କ୍ରମେ ଘନୀଭୂତ ହୋଇ ବନ୍ଧୁତ୍ୱରେ ପରିଣତ ହେଲା । ଦିନେ ଦିନେ ଲୋଭରେ ପଡ଼ି ବଜେଟରୁ ଅଧିକା ଖର୍ଚ୍ଚ କରି ମୁଁ ନିଜେ ଖାଇଦିଏ । ସେ ଅଧିକା ପଇସା ଧପଡ଼ ସିଂ ପାଖରୁ ମୁଁ ଧାର ନିଏ । ସେ ସେଥିରେ କିଛି ଆପତ୍ତି କରେ ନାହିଁ । ବରଞ୍ଚ ମୋର ମନ ବୁଝି ସେ ଦିନେ ଦିନେ ଯାଚି ଯବରଦସ୍ତି କରି ଦୁଇ ଚାରି ପଇସାର ଅଧିକା ଦେଇଦିଏ । ଧାର ବଢ଼ି ବଢ଼ି ଯେତେବେଳେ ତିନି ଟଙ୍କା ହୋଇଗଲା, ମୋର ଶୋଧ କରିବାର କ୍ଷମତା ବାହାରେ ଚାଲିଗଲା, ଲଜ୍ଜାରେ ବାଧ୍ୟ ହୋଇ ମୁଁ ଧପଡ଼ ସିଂକୁ ଆର୍ଥିକ-ବାଛନ୍ଦ କଲି । ଧପଡ଼ ସିଂ ଯେଉଁ ବାଟରେ ଚନାଚୂର ବିକେ ସେ ବାଟ ଦେଇ ଆଉ ଗଲିନାହିଁ । ଗୃହିଣୀ ଆଉ ଚନାଚୂର

ନ ପାଇ ପଚାରିଲେ କହିଦିଏ, ଧପଡ଼ ସିଂର ଦେଖା ପାଇଲି ନାହିଁ ।

ଅନେକ ଦିନ ଧପଡ଼ ସିଂ ସହିତ ମୋର ଦେଖା ହୋଇନାହିଁ । ମଝିରେ ମଝିରେ ମନଟା ତା ପାଇଁ ଖରାପ ହୋଇଯାଏ । ତାର ଗୀତ ଶୁଣି ଚନାଚୁର ଖାଇବାକୁ ଭାରି ଇଚ୍ଛା ହୁଏ । କିନ୍ତୁ କଟକୀ ବଜାରୀଙ୍କ ମୁହଁରେ ତ ବାଡ଼ବତା ନାହିଁ । କାଳେ ଏତେ ଲୋକଙ୍କ ମଝିରେ ଧାର ମାଗି ଦେଇ କିଛି ଅପମାନ କରି କହିଦେବ ଏହି ଭୟରେ ଓ ଲଜ୍ଜାରେ ମୁଁ ଆଉ ଯାଇ ପାରିଲି ନାହିଁ । ନିଜର ଦାରିଦ୍ର୍ୟ ଉପରେ ଭାରି ରାଗ ହୁଏ ଓ ନିଜ ଉପରେ ଭାରି ଘୃଣା ହୁଏ ।

ଦିନେ ବଜାରରେ ଶୁଣିଲି ଧପଡ଼ ସିଂ ଭାରି ଅସୁସ୍ଥ, ବାତ ଜ୍ୱରରେ ପଡ଼ିଚି । ମନଟା ମୋର ସେଦିନ ଭାରି ଖରାପ ହୋଇଗଲା । ସ୍ଥିର କଲି, ଯେ କୌଣସି ପ୍ରକାରରେ ହେଉ ଆଜି ଭିତରେ ତିନୋଟି ଟଙ୍କା ଯୋଗାଡ଼ କରି ଧପଡ଼ ସିଂ ଘରେ ପହଞ୍ଚିବି । ଯିଏ ମୋର ଦାରିଦ୍ର୍ୟଜଞ୍ଜାଳପୂର୍ଣ୍ଣ ଜୀବନରେ ପ୍ରତ୍ୟହ ଅନ୍ତତଃ ପାଞ୍ଚ ମିନିଟ୍ ପାଇଁ ନିର୍ମଳ ଆନନ୍ଦ ଦେଇ ଆସିଚି, ତାର ଏ ଦୁଃସମୟରେ ମୁଁ ତାକୁ ଧପ୍‌ପା ଦେଉଚି, ଏ ଚିନ୍ତା ମୋତେ ଲଜ୍ଜା ଦେଲା ।

ସେଦିନ ରବିବାର । ରବିବାର ଦିନ ଧପଡ଼ ସିଂର ଚନାଚୁର ବେଶି ବିକ୍ରୀ ହୁଏ । ସେ ବେଳ ଥାଉଁ ଥାଉଁ ଘରୁ ବାହାରେ । ଦିନଯାକ ଧାର ଖୋଜି ପ୍ରାୟ ଚାରିଟାବେଳେ ଜଣଙ୍କ ପାଖରୁ ତିନୋଟି ଟଙ୍କା ଧାର ନେଇ ଘର ଖୋଜି ଖୋଜି ଯାଇ ପହଞ୍ଚିଲି ଧପଡ଼ ସିଂ ଘରେ । ଗୋଟିଏ ସାନ କୁଡ଼ିଆ ଘର । ଘର ଦୁଆର ମୁହଁ ଚାଳ ଏତେ ନୁଆଁଣିଆ ଯେ ଘରର କୌଣସି ଅଂଶ ବାହାରକୁ ଦିଶୁନାହିଁ । ଘର ପାଖରେ ଛିଡ଼ା ହୋଇ ମୁଁ ଧପଡ଼ ସିଂ ନାଁ ଧରି ଡାକିଲି ।

ଧପଡ଼ ସିଂ ବାହାରି ଆସିଲା ତାର ସାଜ ପୋଷାକ ପିନ୍ଧି ପିନ୍ଧି । ମୋତେ ଦେଖି ସେ ଆଶ୍ଚର୍ଯ୍ୟ ହୋଇ କହିଲା, ବାବୁ ଆପଣ ! ଆପଣଙ୍କ କଥା କେତେ ଦିନ ହେଲା ଭାବୁଥିଲି । ମୋ ଚନାଚୁର କଅଣ ଭଲ ଲାଗୁ ନାହିଁକି ? ହେଉଥିବ, ଯେତେ କହିଲି ତାକୁ ଯେ ଟଟକା ମସଲା ଦବୁ, ସେ ତ ଶୁଣିବ ନାହିଁ, ବାସି ମସଲା ଦେବ । ବାବୁ, ଚନାଚୁର ଖରାପ ହେଲେ ମୋ ମନ ଭାରି ଖରାପ ହୋଇଯାଏ ।

ଘର ଭିତରକୁ ଅନାଇ ଧପଡ଼ ସିଂ ବଡ଼ ପାଟି କରି କହିଲା, ଦେଖିଲୁ, ଦେଖିଲୁ, ମୁଁ କହୁଚି ତତେ ବାରମ୍ବାର...

ମୁଁ ତାକୁ ବାଧା ଦେଇ କହିଲି, ନା, ନା, ତୁମର ଚନାଚୁର ଭାରି ଚମତ୍କାର । କଟକଯାକ ତୁମର ଚନାଚୁରର ପ୍ରଶଂସା । ସେଦିନ ବଜାରରେ ଅନେକ ଲୋକ ତୁମ କଥା କହୁଥିଲେ । ତୁମେ ଆଉ ନ ଯିବାରୁ ତୁମକୁ...

-ମୋ କଥା ଛାଡ଼ନ୍ତୁ । ମୋ ଚନାଚୁର କଥା କଅଣ କହୁଥିଲେ ?

-ତୁମର ଚନାଚୁରକୁ ଝୁରୁଥିଲେ ।

-ସତେ ବାବୁ, ସତେ ! ଧପଡ଼ ସିଂ ମୋର ହାତ ଧରି ଘର ଭିତରକୁ ଟାଣି ନେଇଗଲା । ତାର ନିଷ୍ପ୍ରଭ ଆଖି ଯୋଡ଼ିକ ଆନନ୍ଦରେ ଉଜ୍ଜ୍ୱଳ ହୋଇଗଲା ।

ମୁଁ ବାଧା ଦେଇ କହିଲି, ନା, ମୋର ବେଳ ନାହିଁ । ମୁଁ ତୁମର ଧାର ପରିଶୋଧ କରିବାକୁ ଆସିଥିଲି । ଏତେଦିନ ଦେଇ ପାରି ନଥିଲି, ମୋତେ କ୍ଷମା କରିବ ।

ଧପଡ଼ ସିଂ ମୋର ହାତ ଧରି ପକାଇ କହିଲା, ଛି ବାବୁ । ପଇସା କଅଣ ସବୁ । ମୁଁ କଅଣ ବୁଝେନା କେଉଁଥିପାଇଁ ଆପଣ ଦେଇ ପାରିନାହାନ୍ତି । ଆସନ୍ତୁ ଟିକିଏ ଚାହା ଖାଇଯିବେ ।

ବ୍ୟସ୍ତ ହୋଇ ଘର ଭିତରେ ଖଣ୍ଡେ ମସିଣା ପାରିଦେଇ ସେ ଭିତରପଟ ପିଣ୍ଡାକୁ ଚାହିଁ କହିଲା, ଜାଣୁ, ମୋର ଚନାଚୂର୍‌ର ଜଣେ ବଡ଼ ସମଝଦାର୍ ଆସିଚନ୍ତି । ବାବୁ, ସମଝଦାର ନ ହେଲେ ବିକି ଆନନ୍ଦ ନାହିଁ ।

ମୁଁ କିନ୍ତୁ ଧପଡ଼ ସିଂର ଚେହେରା ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ତାର ଡାହାଣ ଗୋଡ଼ ଗୋଦଡ଼ ହୋଇଯାଇଛି, ଗାଲ ପଶି ଯାଇଚି, ଆଖି ଯୋଡ଼ିକ କୋଟରଗତ । କହିଲି, ଧପଡ଼ ସିଂ, ତୁମର ଦେହ ଭାରି ଖରାପ, ଆଉ କିଛି ଦିନ ବିଶ୍ରାମ କର ।

ଧପଡ଼ ସିଂ ହସି କହିଲା, ଆମର ବିଶ୍ରାମ କାହିଁ ବାବୁ, ଦାଣ୍ଡରୁ ଆଣିଲେ ହାଣ୍ଡିରେ ପଡ଼ିବ । ଏ କେତେ ଦିନ ଯେ କି କଷ୍ଟରେ...

ପିଣ୍ଡା ପାଖରୁ ଘର ଭିତରେ ଦୁଇଟି ଗିଲାସରେ ଚାହା ରଖି ଦେଇ ଧପଡ଼ ସିଂର ସ୍ତ୍ରୀ କହିଲା, ମିଛ କଥା ସବୁ । ତାରି ରୋଜଗାରରୁ ମୁଁ ଯାହା ସାଇତି ରଖିଚି ସେଥିରେ ଆହୁରି ମାସେ ଚଳିଯିବ । ଆଜିକି ସାତଦିନ ହେଲା ମୋ ସହିତ କଜିଆ, ସେ ଚନାଚୂର ବିକିବାପାଇଁ ବଜାରକୁ ଯିବ । କୌଣସିମତେ ଅଟକାଇ ରଖିଥିଲି । ଆଜି ମୋତେ ମାରି ଗାଳି ଦେଇ ବାହାରିଚି ବଜାରକୁ ବିକିବା ପାଇଁ । ଆଜି ସକାଳୁ ତାକୁ ଡର ନାହିଁ ଏପର୍ଯ୍ୟନ୍ତ, ଚନାଚୂର ତିଆରି କରିବାରେ ଲାଗିଛି, ଖିଆ ପିଆ ନାହିଁ । ଆଜିକି ପନ୍ଦର ଦିନ ହେବ ପେଟବ୍ୟଥା ଯେ କୁହନି । ମୋ କପାଳ-

ଧପଡ଼ ସିଂ ହସି କହିଲା, ସତେ ବାବୁ, ବଜାରକୁ ବିକି ନ ଯାଇ ରହି ପାରିବି ନାହିଁ । ଗୀତ ବୋଲି ଚନାଚୂର ବିକିବାକୁ ମୁଁ ଭାରି ଖୁସି ପାଏ । ମୋ ଚନାଚୂର ଖାଇ ପାଞ୍ଚଜଣ ଆନନ୍ଦ ପାଇଲେ ମୋ ଛାତି ଫୁଲି ଉଠେ । ନ ହେଲେ ପେଟ ଟାଖଣ୍ଡକ ପାଇଁ ମୋର ଚିନ୍ତା ନାହିଁ ।

ଆପତ୍ତି କରି କହିଲି, କିନ୍ତୁ ତୁମ ଦେହ ଖରାପ ଯେ-

-ହଁ ବାବୁ, ବିଶ୍ରାମ ନେଲେ ଆଉ ବର୍ଷେ ଗୋଟାଏ ବି'ଟା ଅଧିକା ହୁଏତ ବଞ୍ଚିବି । ମଣିଷ ତ ମରିବ ଦିନେ । ତେବେ ଲୋକେ ଯଦି ମୋ ଚନାଚୂର ଖାଇ ଆନନ୍ଦ ପାଇ କହିଲେ, ଧପଡ଼ ସିଂ ଚନାଚୂର ସରି କେହି ନୁହେଁ, ତେବେ ତ ମୁଁ ବଞ୍ଚିଗଲି କାଳକାଳକୁ ।

ମୁଁ ନୀରବ ରହି ଚାହାପାନ କରିବାକୁ ଲାଗିଲି । ବେଳ ହୋଇଗଲାଣି ବୋଲି ଧପଡ଼ ସିଂ ତରତର ହୋଇ ପୋଷାକ ପିନ୍ଧିବାକୁ ଲାଗିଲା । ଗୋଟିଏ ଟ୍ରଙ୍କରୁ ତାର ପୋଷାକ ସବୁ ଅତି ଯତ୍ନରେ ବାହାର କରି ସେ ପିନ୍ଧିବାକୁ ଲାଗିଲା । କାନ୍ଥରେ ମରା ହୋଇଥିବା ଖଣ୍ଡେ ଭଙ୍ଗା ଦର୍ପଣକୁ ଚାହିଁ ସେ ପଗଡ଼ି ବାନ୍ଧିବାକୁ ଲାଗିଲା । ସବୁ ପୋଷାକ ପିନ୍ଧିସାରି ଯେତେବେଳେ ସେ ଛିଡ଼ାହେଲା, ସେତେବେଳେ ତାର ରୂପ ଏକଦମ ବଦଳିଗଲା । ଚନାଚୂର ମୁଣାଟି କାନ୍ଧରେ ଝୁଲାଇଦା ପରେ ସେ ଦର୍ପଣ ପାଖରେ ମରା ହୋଇଥିବା ଗୋଟିଏ ଫଟକୁ ମୁଣ୍ଡ ନୁଆଁଇ ନମସ୍କାର କରିବାକୁ ଲାଗିଲା ।

ଫଟଟି କୌଣସି ଦେବଦେବୀଙ୍କର ନୁହେଁ, ଜଣେ ମନୁଷ୍ୟର । ଠିକ୍ ଧପଡ଼ ସିଂ ପରି ତାର ବେଶଭୂଷା । ଫଟଟି ରହିଚି ଗୋଟିଏ ପଟା ଉପରେ । ଦୁଇ କଡ଼ରେ ତାର ଦୁଇଟି ଧୂପଦାନୀ, ସେଥିରେ ଅଗରବତୀ ଜଳୁଚି ।

କୁତୂହଳୀ ହୋଇ ପଚାରିଲି, କାହାକୁ ନମସ୍କାର କଲ ? କେଉଁ ଦେବତା ସେ ।

ଧପଡ଼ ସିଂ ହସି କହିଲା, ସେ ମୋର ଗୁରୁଦେବ । ତାଙ୍କର ବାପମା' ଦିଆ ନାଁ ମୁଁ ଜାଣେ ନା । ତାଙ୍କର ଚନାଚୂର ବିକା ନାଁ'ଟି କବି ସିଂ । ସେଇ ମୋ ନାଁ ଦେଇଚନ୍ତି ଧପଡ଼ ସିଂ । ମୁଁ କିଛିଦିନ ବନାରସରେ ଥିଲି, ସେଇଠି ତାଙ୍କଠାରୁ ମୁଁ ସବୁ ଶିକ୍ଷା କରିଚି । ବାବୁ, କି ବୋଲି ତାଙ୍କର !! ପାଞ୍ଚଶହ ମଣିଷକୁ ସେ ଛକ ଉପରେ ଦୁଇ ଘଣ୍ଟା ଅଟକାଇ ଦେବେ ତାଙ୍କ ବୋଲିରେ ! ମୁହେଁ ମୁହେଁ ତାଙ୍କର ଗୀତବନ୍ଧା ଚାଲିଛି ଅନର୍ଗଳ !! ଥରେ ସରକାର ବିପକ୍ଷରେ ଏମିତି ପଦ ଯୋଡ଼ିଲେ ଯେ ଲୋକେ ପରା ମାତି ଉଠିଲେ ! ଅନେକ ବହି ସେ ପଢୁଥିଲେ, ଅନେକ କଥା ସେ ଚିନ୍ତା କରୁଥିଲେ । ସବୁ କଥା ସେ ମୋତେ ଶିଖାଇଛନ୍ତି । ତାଙ୍କରି କୃପାରୁ ମୋର ଏ ଗୁଣ । ଚାଲ ବାବୁ ଯିବା, ଆଜି ଫୁଟବଲ୍ ଖେଳ ପରା । କିଲ୍ଲା ଯିବି ।

ଧପଡ଼ ସିଂ ପୁଣି ଥରେ ତାର ଗୁରୁଦେବଙ୍କୁ ପ୍ରଣାମ କରି ବାହାରି ପଡ଼ିଲା । ଘରୁ ବାହାରି ଦୁଆର ମୁହଁରେ ଛିଡ଼ାହୋଇ ତାର ଆକର୍ଣ୍ଣବିସ୍ତୃତ ନିଶ ଉପରେ ହାତ ମାରି ଗମ୍ଭୀର ଭାବରେ ଚାରିଆଡ଼କୁ ଚାହିଁ ଯେତେବେଳେ ସେ ଛିଡ଼ା ହେଲା, ସେତେବେଳେ କିଏ କହିବ ସେ ମାସକର ମଲୁ । ମୁଁ ମୁଗ୍ଧ ହୋଇ ଅନାଇ ରହିଲି ତାକୁ । ତା ପରେ ଆଉ ଥରେ ଚାରିଆଡ଼କୁ ସିଂହାବଲୋକନ କରି ସେ ଯେତେବେଳେ ଆରମ୍ଭ କଲା... ଚନା ବନାଏ ଡର୍‌ର୍... ସେତେବେଳେ ମୋର ମନେ ହେଲା ମେରଙ୍ଗା ଯୁଦ୍ଧରେ ନେପୋଲିୟନ ଚାଲିଛନ୍ତି, କି ସିକାଗୋ ହଲରେ ବିବେକାନନ୍ଦ ବକ୍ତୃତା ଦେଉଚନ୍ତି ।

ଧପଡ଼ ସିଂ ମୋତେ ଆଉ ନ ଚାହିଁ ଚାଲିଗଲା ।

• • •

ଏହା ପରେ କିଛିଦିନ ବିତିଯାଇଛି । ଗୃହିଣୀଙ୍କ ବଜେଟରେ ପୁଣି ଚନାଚୂର ସ୍ଥାନ ପାଇଛି । ପ୍ରାୟ ପନ୍ଦର ଦିନ ପରେ ଦିନେ ଦେଖିଲି ଧପଡ଼ ସିଂ ଆସିନାହିଁ । ପୁଣି ଦେହ ଖରାପ ହୋଇଚି ନିଶ୍ଚୟ । ସାଙ୍ଗେ ସାଙ୍ଗେ ଦୌଡ଼ିଲି ତାର ଘରକୁ ।

ଧପଡ଼ ସିଂର ସ୍ତ୍ରୀ ମୋତେ ଦେଖି କାନ୍ଦି ପକାଇଲା । ଧପଡ଼ ସିଂ ବିଛଣାରେ ଶୋଇ ଯନ୍ତ୍ରଣାରେ ଛଟପଟ କରୁଚି, ପେଟରେ ହାତ ବୁଲାଉଚି । ପେଟରେ ତାର ହାତ ଦେଇ ଆଉଁସି ଦେଇ ପଚାରିଲି, କଅଣ ହେଲା ?

ଧପଡ଼ ସିଂ କ୍ଷୀଣକଣ୍ଠରେ କହିଲା, ପେଟ...

ତାର ସ୍ତ୍ରୀ କହିଲା, ବାବୁ, ଯେତେ କହିଲି ଆଉ ଚନାଚୂର ବିକନା, ଅନ୍ୟ ବେଉସା କର, ମୋ କଥା ମାନିଲା ନାହିଁ । ଚନାଚୂର ଟିଣର ନିଅଁ ସଦାଦିନେ ସଦାବେଳେ ପେଟରେ ଲାଗି ପେଟ ଯେ କଅଣ ହେଲା...

ଧପଡ଼ ସିଂ ମୋତେ ଚାହିଁଲା । ଆଖିରୁ ତାର ଦୁଇଧାର ଲୁହ ଗଡ଼ି ପଡ଼ିଲା । ଓଠ ତାର ଥରି ଉଠିଲା । ଟିକିଏ ଆଶ୍ୱସ୍ତ ହୋଇ ସେ କହିଲା, ବାବୁ, ମରେ ପଛେ ଚନାଚୂର ବିକା ମୁଁ ଛାଡ଼ିପାରିବି ନାହିଁ । ସେଥିରେ ତ ମୁଁ ଖାଲି ପଇସା ରୋଜଗାର କରେନା, ଭାରି ଆନନ୍ଦ ପାଏ । ହେଲେ ବାବୁ ମୋର ଦୁଃଖ - ମୋ ଅନ୍ତେ ମୋର ଚନାଚୂର ନାଁ ବୁଡ଼ିଯିବ । ମଣିଷ ତ ଦିନେ ମରେ, ମରିବ; ସେଥିରେ ମୋର ଦୁଃଖ ନାଇଁ । କିନ୍ତୁ ମୋର ଚନାଚୂର ଆଉ କେହି ଖାଇ ପାରିବେ ନାହିଁ ମୋ ଅନ୍ତେ । ପୁଅଟାକୁ

ଯେତେ କହିଲି ଇଲମ୍ ନେଇ ନେ ମୋ ପାଖରୁ, ଶୁଣିଲା ନାହିଁ । ଚପରାସି ହେବା ପାଇଁ ଦୌଡ଼ିଚି ।

ମୋର ଆଖି ଛଳ ଛଳ ହୋଇଆସିଲା । କିଛି ନ କହି ମୁଁ ଉଠିଗଲି ଡାକ୍ତର ଡାକିବାକୁ । ଡାକ୍ତର ଆସି ଦେଖି ମୋତେ ଡାକିନେଇ କହିଲେ, ଲିଭର ପଚି ଯାଇଚି, ଆଉ ଦୁଇ ଦିନରୁ ବେଶି ନୁହଁ ।

ଦୁଇଦିନ ବି ଗଲା ନାହିଁ । ସେଇଦିନ ରାତି ପ୍ରାୟ ଗୋଟାକବେଳେ ଧପଡ଼ ସିଂ ତାର ଗୁରୁଦେବଙ୍କ ଫଟକୁ ଅନାଇ ଶେଷ ନମସ୍କାର କରି ଶେଷ ନିଶ୍ୱାସ ପକାଇଲା ।

ପୃଥିବୀରୁ ଜଣେ କଳାକାର ଚାଲିଗଲା ।

ଧପଡ଼ ସିଂର ଦେହ ମୁଁ ଚିତା ଉପରେ ଧୀରେ ଶୁଆଇ ଦେଲି । ତାର ପୁଅ ମୁଖାଗ୍ନି ଦେଲା ପରେ ଚିତା ସଶବ୍ଦେ ଜଳି ଉଠିଲା ମଶାଣିର ଖର ପବନରେ ।

ଚିତାର ଚଡ଼ଚଡ଼ ଶବ୍ଦରେ ଶୁଣିଲି ସେଇ ମହାକାବ୍ୟ... ଚନା ବନାଏ ତର୍‌ର୍, ଇସ୍‌କୁ ଲେତେ ଯାନା ଘର୍‌ର୍‌ର୍‌ର୍ ।

# ଲେଖକଙ୍କ ସଂପର୍କରେ

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଗଳ୍ପ ସାହିତ୍ୟ କ୍ଷେତ୍ରରେ ବାମାଚରଣ ମିତ୍ର (1915-1975) ଏକ ସ୍ମରଣୀୟ ନାମ । 1950 ମସିହାରେ ପ୍ରକାଶିତ 'କାର୍ତ୍ତିଯଣ୍ୟ' ଥିଲା ବାମାଚରଣଙ୍କ ପ୍ରଥମ ପ୍ରକାଶିତ ଗଳ୍ପଗ୍ରନ୍ଥ । ମୌଳିକ ଚିନ୍ତନ ଓ କଥାବସ୍ତୁଚୟନର ଅପୂର୍ବ କଳା-କାରିଗରୀରେ ସେ 1950 ପରବର୍ତ୍ତୀ ଓଡ଼ିଆ ଗଳ୍ପ ସାହିତ୍ୟକୁ ବହୁ ଅମୂଲ୍ୟ ଗଳ୍ପରେ ସମୃଦ୍ଧ କରିଯାଇଛନ୍ତି ।

ଅବିଭକ୍ତ କଟକ ଜିଲ୍ଲାର ଯାଜପୁର ସବ୍‌ଡିଭିଜନ୍‌ର କବୀରପୁରବରୁଆ ଗ୍ରାମରେ ବାମାଚରଣ 1915 ମସିହା ଡିସେମ୍ବର 10 ତାରିଖରେ ଭୂମିଷ୍ଠ ହୋଇଥିଲେ । ବ୍ୟକ୍ତିଗତ ଜୀବନ ବଳୟରେ ଅତ୍ୟନ୍ତ ଭାବପ୍ରବଣ, ନୀତିନିଷ୍ଠ, ସ୍ୱାଭିମାନୀ ଓ ବନ୍ଧୁବତ୍ସଳ ବାମାଚରଣ ଓଡ଼ିଶା ସରକାରଙ୍କର ଉଚ୍ଚ ପ୍ରଶାସନିକ ଅଫିସର ଭାବରେ ଦାୟିତ୍ୱ ନିର୍ବାହ କରି 1971 ମସିହାରେ ଅବସର ନେଇଥିଲେ । ପରେ ପରେ ଆଇନ ବ୍ୟବସାୟରେ ସେ ନିଜକୁ ନିୟୋଜିତ କରିଥିଲେ । ବିଶ୍ୱସାହିତ୍ୟ, ସଂସ୍କୃତି, ବିଜ୍ଞାନ, ଦର୍ଶନ ବିଷୟକ ବିପୁଳ ଜ୍ଞାନର ଅଧିକାରୀ ବାମାଚରଣ ସ୍ୱକୀୟର ଚିନ୍ତନ ଓ ଉପଲବ୍‌ଧିରେ ଏକ ମାନବବାଦୀ ଦାର୍ଶନିକ ଥିଲେ । ରୋଗଗ୍ରସ୍ତ ହୋଇ ଶଯ୍ୟାଗତ ହେବା ସତ୍ତ୍ୱେ ଜ୍ଞାନ ବିଷୟକ ମନନ ଓ ଅନୁସନ୍ଧିତ୍ସା ତାଙ୍କ ସୁକୁମାର ଶିଳ୍ପୀସତ୍ତାକୁ ଶେଷପର୍ଯ୍ୟନ୍ତ କର୍ମଚଂଚଳ ଓ ସୃଷ୍ଟିଶୀଳ ରଖିଥିଲା । ଚିନ୍ତା ଚେତନାରେ ଥିଲେ ସେ ମହାଭାରତୀୟ । ଆମର ସାମାଜିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ଉତ୍‌ଥାନ ନିମନ୍ତେ ସେ ମାର୍କସ, ଗାନ୍ଧୀ ଓ ବିବେକାନନ୍ଦଙ୍କ ଆଦର୍ଶ ଓ ଆଭିମୁଖ୍ୟ ପ୍ରତି ଆସ୍ଥାଶୀଳ ଥିଲେ । ଏକ ଆଧ୍ୟାତ୍ମିକ ଭାରତ ଓ ସନ୍ତ୍ରାସମୁକ୍ତ ବିଶ୍ୱର ପରିକଳ୍ପନା ସହିତ ସେ ବ୍ୟକ୍ତିର ସଂସ୍କାର ଓ ଶୋଧନ ପ୍ରତ୍ୟାଶୀ ଥିଲେ ।

ଗଳ୍ପ ସହିତ ବାମାଚରଣ ପ୍ରବନ୍ଧ, ରମ୍ୟରଚନା ବି ଲେଖିବାରେ ସିଦ୍ଧହସ୍ତତା ପ୍ରଦର୍ଶନ କରିଛନ୍ତି । ବୌଦ୍ଧଯୁଗୀୟ ଘଟଣାକୁ ଉପଜୀବ୍ୟ କରି ରଚିତ ତାଙ୍କର ଏକମାତ୍ର ଉପନ୍ୟାସ 'ଚନ୍ଦ୍ର ଓ ଚମ୍ପା' । ଗଳ୍ପ ପୁସ୍ତକମାନଙ୍କ ମଧ୍ୟରେ ରହିଛି 'ନରଛଆଣ', 'ସ୍ୱପ୍ନସିଦ୍ଧ', 'ଅସୀମ', 'ବଟ ମହାପୁରୁଷ' ଓ 'ମହାପୁରୁଷ ବାଗ' ଆଦି ଗ୍ରନ୍ଥ । ତାତ୍ତ୍ୱିକ ଅନୁଶୀଳନରେ ସମୃଦ୍ଧ ଏକମାତ୍ର ପ୍ରବନ୍ଧ ପୁସ୍ତକ ହେଉଛି 'ଜୀବନ, ସାହିତ୍ୟ ଓ କଳା' । ରମ୍ୟରଚନା ସଂକଳନ 'ଏଣୁଷ୍ଟେଣୁଷ୍ଟ' ନିମିତ୍ତ 1973 ମସିହାରେ ସେ ଓଡ଼ିଶା ସାହିତ୍ୟ ଏକାଡେମୀ ଏବଂ ଗଳ୍ପ ଲାଗି ବିଷୁବ ପୁରସ୍କାର ଦ୍ୱାରା ସମ୍ବର୍ଦ୍ଧିତ ହୋଇଥିଲେ । ତାଙ୍କର ସମସ୍ତ ଗଳ୍ପ 'ମିତ୍ରକଳ୍ପ' (1979), ମିତ୍ରଗଳ୍ପ (1979) ଏବଂ ମିତ୍ରସ୍ୱଳ୍ପ' (1981) ସଂକଳନରେ ସଂକଳିତ । ଚଉଠ ଶତକର ସାଧନା କାଳରେ ବାମାଚରଣ ମିତ୍ର ସ୍ୱକୀୟ ଅପୂର୍ବ ବିଷୟ ବିନ୍ୟାସ, ରସନିପୁଣବିଦଗ୍‌ଧ ଶୈଳୀ, ବିମଳ ହାସ୍ୟରସ ଓ ବ୍ୟଙ୍ଗର ପ୍ରୟୋଗ ତଥା ବୈଚିତ୍ର୍ୟପୂର୍ଣ୍ଣ ଓ ମହତ୍ତମ ଭାବ-ଆବେଦନରେ ଓଡ଼ିଆ ଗଳ୍ପ ଜଗତକୁ ସମୃଦ୍ଧ କରିଯାଇଛନ୍ତି ।

---

Laser typeset at Subhadra Mudrani, Puri and printed at
Gayatri Offset works, Noida.